# ଦିବ୍ୟ ସାନ୍ନିଧ୍ୟ



## ଶାନ୍ତି ଦେବୀ

# ଦିବ୍ୟ ସାନ୍ନିଧ୍ୟ

(ଆଚାର୍ଯ୍ୟ ବିନୋଭା ଭାବେଙ୍କ
"ମହାଗୁହା ମେଁ ପ୍ରବେଶ"ର ଓଡ଼ିଆ ଅନୁବାଦ)

ଅନୁବାଦିକା
**ଶ୍ରୀମତୀ ଶାନ୍ତି ଦେବି**

ମୟୂର ପବ୍ଲିକେସନସ୍

"DIVYA SANNIDHYA"
(Oriya Translation of Acharya Vinoba Bhabe's
Original Hindi Title : MAHAGUHA MEIN PRAVESH)

Translated by **Smt. Shanti Devi.**

Published by Mayur Publications,
C / 5, Kharabelanagar, Unit - III,
Bhubaneswar - 751001.



1st. Publication : March 2003.
Cover : M.P.Mahapatra

**Price Rs.120.00**



"ଦିବ୍ୟ ସାନିଧ"
(ଆଚାର୍ଯ୍ୟ ବିନୋବା ଭାବେଙ୍କ ମୂଳ ହିନ୍ଦି ରଚନା
'ମହାଗୁହା ମେଁ ପ୍ରବେଶ'ର ଓଡ଼ିଆ ଅନୁବାଦ)

ଅନୁବାଦିକା : **ଶ୍ରୀମତୀ ଶାନ୍ତି ଦେବୀ,**

ପ୍ରକାଶକ : ମୟୂର ପବ୍ଲିକେସନସ୍,
ସି / ୫, ଖାରବେଳନଗର, ୟୁନିଟ - ୩,
ଭୁବନେଶ୍ୱର - ୭୫୧୦୦୧



ପ୍ରଥମ ପ୍ରକାଶ : ମାର୍ଚ୍ଚ ୨୦୦୩
ପ୍ରଚ୍ଛଦ : ଏମ୍.ପି.ମହାପାତ୍ର,

**ମୂଲ୍ୟ : ଟ୧୨୦:୦୦ଙ୍କା**

# ସୂଚୀପତ୍ର

***

# ଅଭିମତ

ସତ୍ୟ, ପ୍ରେମ ଓ କରୁଣାର ପରିବ୍ରାଜକାଚାର୍ଯ୍ୟ ବିନୋବା ଭାବେ ଦୀର୍ଘ ୮୦ ବର୍ଷରୁ ଉର୍ଦ୍ଧ୍ୱ ଜୀବନ କାଳ ଭିତରେ ସମଗ୍ର ଭାରତ ବର୍ଷରେ ଏକ ନୀରବ ସାଂସ୍କୃତିକ ବିପ୍ଳବର କାଣ୍ଡାରୀ ଥିଲେ। ଓଡ଼ିଶାରେ ଦୀର୍ଘ ଦିନ ଭୂଦାନ, ଗ୍ରାମଦାନ, ଶ୍ରମଦାନ, ସମ୍ପତ୍ତିଦାନ ଓ ଜୀବନଦାନର ଏକ ସୁଦୂରପ୍ରସାରୀ କାର୍ଯ୍ୟକ୍ରମ ଚଳାଇ ରଖିବାରେ ସଫଳ ହୋଇଥିଲେ। ଭାରତୀୟ ସଂସ୍କୃତିର ଅଧ୍ୟୟନ ଓ ଅନୁସନ୍ଧାନରେ ତାଙ୍କର ବାଲ୍ୟକାଳ ଅତିବାହିତ ହୋଇଥିଲା। ସେହି ଶିକ୍ଷା ଫଳରେ ସେ ସନ୍ୟାସ ନେବା ପରିବର୍ତ୍ତେ ଗାନ୍ଧିଜୀଙ୍କ ଚିନ୍ତାଧାରା ଦ୍ୱାରା ଆକୃଷ୍ଟ ହୋଇ ସତ୍ୟାଗ୍ରହକୁ ନିଜ ଜୀବନର ଦୀକ୍ଷା ଭାବରେ ଗ୍ରହଣ କରିଥିଲେ। ସ୍ୱାଧୀନତା ସଂଗ୍ରାମର ଘନ ଘଟା ମଧ୍ୟରେ ସେ ନିଜର ଜ୍ଞାନ ପିପାସା ଚରିତାର୍ଥ କରିବାପାଇଁ ବହୁ ଶାସ୍ତ୍ର, ପୁରାଣ ଓ ଜ୍ଞାନଗର୍ଭକ ଆଲୋଚନାଦି ଅନୁସନ୍ଧାନ କରିବାରୁ ନିଶ୍ଚେଷ୍ଟ ନଥିଲେ। ଏହା ତାଙ୍କର ଦୈନନ୍ଦିନ ଜୀବନଚର୍ଯ୍ୟାରେ ପରିଲକ୍ଷିତ ହେଉଥିଲା।

ଓଡ଼ିଶାରେ ତାଙ୍କ ରଚିତ 'ଗୀତା ପ୍ରବଚନ'ର ଓଡ଼ିଆ ଅନୁବାଦ ବହୁଳଭାବରେ ପ୍ରସାରିତ। ଏହା ବ୍ୟତୀତ ତାଙ୍କ ଜୀବନୀ ସଂପର୍କରେ ବହୁ ପୁସ୍ତିକା ପ୍ରକାଶିତ। ଶ୍ରୀମତୀ ଶାନ୍ତି ଦେବୀ ଭୂଦାନ କାର୍ଯ୍ୟକ୍ରମରେ ବହୁ ବର୍ଷ ଧରି ସହକର୍ମୀ ଭାବରେ ସମର୍ପିତା ଥିଲେ। ତେଣୁ ସେ ବିନୋବା ମାନସ ସହିତ ପରିଚିତା। ଶାନ୍ତି ଦେବୀଙ୍କ ସମାଜ କଲ୍ୟାଣ କାର୍ଯ୍ୟକ୍ରମର ବ୍ୟସ୍ତତା ଭିତରେ ଏହି ଅନୁବାଦ ପ୍ରସ୍ତୁତ କରିପାରିଥିବାରୁ ଧନ୍ୟବାଦର ପାତ୍ରୀ। ଆଶା କରିବା ଅସ୍ୱାଭାବିକ ହେବନାହିଁ ଯେ ଏହି ଅନୁଦିତ ଗ୍ରନ୍ଥ ଓଡ଼ିଶାବାସୀଙ୍କୁ ବିନୋବାଙ୍କ ଆଧ୍ୟାତ୍ମିକ ମନନ ସହିତ ପରିଚିତ କରାଇବାରେ ସହାୟକ ହେବ। ଏହି ଲେଖକୀୟ କୃତି ପାଇଁ ସେ ଆମର ସ୍ମରଣୀୟ ହୋଇ ରହିବେ।

**ନିତ୍ୟାନନ୍ଦ ମହାପାତ୍ର**
ପଣା ସଂକ୍ରାନ୍ତି, ୧୪.୦୪.୦୩
ଭୁବନେଶ୍ୱର - ୭୫୧୦୦୧

# ପ୍ରସ୍ତାବନା

ପୂଜ୍ୟ ବିନୋବାଜୀଙ୍କ ଜୀବନ ଗୋଟିଏ ବିଶିଷ୍ଟ ସାଧକର ଜୀବନ । ମଣିଷ ସମାଜରେ ଥିବା ମୂଳ ସମସ୍ୟା ଗୁଡିକର ସମାଧାନ ପାଇଁ ସେ ଯେତିକି ସାଧନା କରିଛନ୍ତି, ସେହିପରି ମନ ଭିତରେ ଲୁଚି ରହିଥିବା ସମସ୍ୟା ଗୁଡିକର ସମାଧାନ ପାଇଁ ମଧ ସେ ସେତିକି ସାଧନା କରିଛନ୍ତି । ମଣିଷର ଯେମିତି ଗୋଟିଏ ବାହାରର ଲକ୍ଷ ରହିଛି, ସେମିତି ଭିତରର ଲକ୍ଷ ମଧ ରହିଛି । ମଣିଷର ମାନସିକ ବିକାଶ ପାଇଁ ମନର ଯେଉଁ ଭୂମିକା ଆବଶ୍ୟକ ସେହି ତତ୍ତ୍ୱକୁ ସେ ନିଜେ ଅନ୍ୱେଷଣ କରି ବାହାର କରିଛନ୍ତି ଏବଂ ମଣିଷର ଅନ୍ତରରେ ଥିବା ଅନ୍ତରତମ ସ୍ଥାନରେ ପ୍ରବେଶ କରି, ମନର ପ୍ରଭାବରୁ ମୁକ୍ତ ହୋଇ ବଞ୍ଚିବାର ଶୈଳିକୁ ସେ ଉପସ୍ଥାପିତ କରିପାରିଛନ୍ତି । ଅର୍ଥାତ୍ ମନ ଯେଉଁଠି ନିଶ୍ଚଳ ତରଙ୍ଗହୀନ, ସେହିଠାରେ ସେ ବସବାସ କରିଛନ୍ତି । ଶରୀର ଓ ମନ ଜରିଆରେ ପରମେଶ୍ୱରଙ୍କ ସହିତ ସଂଯୋଗ ସ୍ଥାପନ କରି ବିଶ୍ୱର ସନ୍ଥ ପରମ୍ପରାକୁ ସୁଦୃଢ଼ କରିଛନ୍ତି ତଥା ଶାରୀରିକ ଆକାଂକ୍ଷା ଓ ମାନସିକ ପ୍ରଲୋଭନରୁ ମୁକ୍ତ ରହିବାକୁ ସେ ସକ୍ଷମ ହୋଇଛନ୍ତି ।

ବିଜ୍ଞାନ କ୍ଷେତ୍ରରେ ବୈଜ୍ଞାନିକ ମାନେ ଏଭଳି ପଦ୍ଧତି ସବୁ ପ୍ରୟୋଗ କରି ସଫଳତା ହାସଲ କରିଛନ୍ତି, ଯାହାଦ୍ୱାରାକି ସାଧାରଣ ମଣିଷ ବିଜ୍ଞାନର ବ୍ୟବହାର କରିପାରୁଛି । ସେହିପରି ଅନୁରୂପ ପ୍ରୟୋଗ ଆମକୁ ଆଧାତ୍ମିକ କ୍ଷେତ୍ରରେ କରିବାକୁ ହେବ ଯାହାଦ୍ୱାରା ସାଧାରଣ ମଣିଷ ଜୀବନର ମୂଲ୍ୟବୋଧ ଗୁଡିକୁ ନିଜର ଦୈନନ୍ଦିନ ଜୀବନରେ ସ୍ୱାଭାବିକ ଭାବରେ ବ୍ୟବହାର କରିପାରିବ । ଧାନ, ଉପାସନା ଓ ସାଧନା ପାଇଁ ମୁନି-ଋଷି ମାନେ ନାନା ପ୍ରକାର ପ୍ରଣାଳୀର ନିର୍ଦ୍ଦେଶ ଦେଇଛନ୍ତି । କିନ୍ତୁ ବିନୋବାଜୀ ଏ ସମ୍ପର୍କରେ କୌଣଷି ନିର୍ଦ୍ଦିଷ୍ଟ ପଦ୍ଧତିର ନିର୍ଦ୍ଦେଶ ଦେଇନାହାନ୍ତି । ଶରୀର ଶ୍ରମ ଦ୍ୱାରା କର୍ମ କରିବାକୁ ହିଁ ସେ ଧାନ ବୋଲି କହିଥାନ୍ତି । ବିନୋବାଜୀ ତାଙ୍କର ସାଧନା ଦ୍ୱାରା ସମାଜ କ୍ରାନ୍ତି ଓ ଜୀବନ କ୍ରାନ୍ତିର ଦୁଇଟି ଦିଗନ୍ତକୁ ସ୍ପର୍ଶ କରିଛନ୍ତି । ମନର ଗଭୀରତମ ପ୍ରଦେଶକୁ ଯାଇ ଜୀବନର ମୂଲ୍ୟବୋଧ ଗୁଡିକର ସହଜ ଉପଲବ୍ଧି ପାଇଁ ସେ ଯେଉଁ ସାଧନା କରିଛନ୍ତି, ଏହି ସଂକଳନ ତାହାରି ଏକ ନିଦର୍ଶନ । ଏହି ପୁସ୍ତକ "ଦିବ୍ୟ ସାନ୍ନିଧ" ବିନେବାଜୀଙ୍କର "ମହାଗୁହା ମେଁ ପ୍ରବେଶ" ଶୀର୍ଷକ ସଂକଳନରୁ ଅନୁବାଦ କରାଯାଇଛି । ମୋର ଆଶା ଓ ବିଶ୍ୱାସ ଏହି ପୁସ୍ତକଟି ମୂଲ୍ୟବୋଧ ଭିତ୍ତିକ ଜୀବନ ଓ ସ୍ୱଚ୍ଛ ମଣିଷ ସମାଜ ଗଠନ କରିବାରେ ସହାୟକ ହେବ ।

ଭାରତର ସ୍ୱାଧୀନତା ଆନ୍ଦୋଳନର ଅନ୍ୟତମ ସାରଥୀ ତଥା ଲବ୍ଧପ୍ରତିଷ୍ଠ ସାହିତ୍ୟିକ ପୂଜ୍ୟ ଶ୍ରୀ ନିତ୍ୟାନନ୍ଦ ମହାପାତ୍ର ବହିଟିର ନାମକରଣ କରି ମୁଖବନ୍ଧ ଲେଖିଥିବାରୁ ଏବଂ ବହିଟିର ପ୍ରକାଶନରେ ଆଚାର୍ଯ୍ୟ ଭାବାନନ୍ଦ (ଡଃ. ଭାବଗ୍ରାହୀ ମିଶ୍ର) ସବୁପ୍ରକାର କଷ୍ଟ ସ୍ୱୀକାର କରିଥିବାରୁ ସେମାନଙ୍କୁ କୃତଜ୍ଞତା ଜଣାଉଛି ।

ଶାନ୍ତି ଦେବୀ

୦୩.୦୨.୨୦୦୩

# ସଶ୍ରଦ୍ଧ କୃତାଞ୍ଜଳି

ବିନୋବାଜୀ ଧ୍ୟାନନିଷ୍ଠ ବ୍ୟକ୍ତି ଥିଲେ । ସେ ସର୍ବଦା ଅନ୍ତରର ଗଭୀରତମ ପ୍ରଦେଶରେ ବୁଡ଼ି ରହୁଥିଲେ । ଏହି ଗଭୀରତା ତାଙ୍କୁ ସମାଜ-ବିମୁଖୀ କରିନାହିଁ । ସାମାଜିକ ସମସ୍ୟାର ସମାଧାନ ସହିତ ସବୁବେଳେ ତାଙ୍କର ଅନୁସନ୍ଧାନରେ ସମନ୍ୱୟର ଦୃଷ୍ଟିଭଙ୍ଗୀ ପ୍ରକାଶ ପାଉଥିଲା । ଏହି ସବୁ ସମସ୍ୟାର ସମାଧାନ ପାଇଁ ତାଙ୍କର କରୁଣାମୂଳକ ଦୃଷ୍ଟିର ଏକାନ୍ତ ପ୍ରୟୋଜନ ଥିଲା । ବିଶ୍ରାମହୀନ ଯୋର କର୍ମଯୋଗରେ ଯୁକ୍ତ ରହି ସୁଦ୍ଧା ନିଜର ଅନ୍ତରତମ ସହିତ ସାକ୍ଷାତକାର କରିବାରେ ଟିକିଏ ହେଲେ ଅସାବଧାନ ହୋଇ ନାହାନ୍ତି । ମହାଗୁହା ଥିଲା ତାଙ୍କର ପ୍ରତିଦିନର ଆବାସସ୍ଥଳ । ଏହା ଥିଲା ତାଙ୍କର ଆତ୍ମସ୍ୱରୂପ । କରୁଣା-ପ୍ରେରିତ ହୋଇ ସେ ସମୟ ସମୟରେ ଏହି ଗୁହାରୁ ବାହାରି ଆସୁଥିଲେ ଏବଂ କାମ ଶେଷ ହେବା ମାତ୍ରେ ଅନ୍ତରର ଗଭୀରରେ ପୁନରାୟ ବୁଡ଼ି ଯାଉଥିଲେ । ଉତ୍ସମୂଳରେ ଅନୁସନ୍ଧାନ ଏବଂ ତା ସହିତ ମିଳିତ ହୋଇ ରହିବାଠାରୁ ସେ କେବେ ବିରତ ହୋଇ ନାହାନ୍ତି । ଏଥିପାଇଁ ଛୋଟ ବଡ, ବ୍ୟକ୍ତିଗତ, ସାମାଜିକ ସବୁ ପ୍ରକାରର ସମସ୍ୟାକୁ ସେ ଗୋଟିଏ ବିଶେଷ ଭୂମିକାକୁ ସ୍ପର୍ଶ କରୁଥିଲେ ।

ବିନୋବାଜୀଙ୍କର ଦ୍ୱିତୀୟ ପୁଣ୍ୟତିଥି (ତିରୋଧାନ ଦିବସ) ଉପଲକ୍ଷେ ୧୯୮୪ ନଭେମ୍ବର ମାସରେ ବିନୋବାଜୀଙ୍କ ପ୍ରତିଷ୍ଠିତ ପରମଧାମ ଆଶ୍ରମର ମାସିକ ପତ୍ରିକା 'ମୈତ୍ରୀ' ର ବିଶେଷ ସଂଖ୍ୟାରେ ଧ୍ୟାନ ସଂପର୍କରେ ତାଙ୍କର ମୂଳସ୍ପର୍ଶୀ ସୁଦୂରଗାମୀ ମୌଳିକ ଜୀବନ ବିଚାର ଗଢ଼ିବାର ପ୍ରଚେଷ୍ଟା କରାଯାଇଛି । ଏହା ପରମାର୍ଥ ପଥରେ ସାଧନା କରୁଥିବା ବ୍ୟକ୍ତି ମାନଙ୍କର ମନକୁ ସ୍ପର୍ଶ କରିଛି ଏବଂ ତିରୋଧାନର ପରବର୍ତ୍ତୀ ବର୍ଷବ୍ୟାପୀ ଅନେକ ବ୍ୟକ୍ତି ତାହା ଦେଖିବା ପାଇଁ ଇଚ୍ଛା ପ୍ରକାଶ କରିଥିଲେ । ଏହି ସବୁ ଜିଜ୍ଞାସୁ ସାଧକ ମାନଙ୍କର ସଦ୍‌ଭାବନାର ଫଳ ସ୍ୱରୂପ ବିନୋବାଜୀଙ୍କର ପଞ୍ଚମ ପୁଣ୍ୟତିଥି ଅନୁଷ୍ଠାନର ସମୟରେ 'ମୈତ୍ରୀ'ର ବିଶେଷ ସଂଖ୍ୟାରେ ଏହି ବିଷୟଟି ସଂଶୋଧିତ ଓ ପରିବର୍ଦ୍ଧିତ ହୋଇ ପୁସ୍ତକ ଆକାରରେ ପ୍ରକାଶିତ ହୋଇଅଛି ।

ଚିତ୍ତଶୁଦ୍ଧିକୁ ଗୁହା ପ୍ରବେଶର ରାଜପଥ ବୋଲି କୁହାଯାଇଅଛି । ବିନୋବାଜୀ ଆମ ହାତ ଧରି ଏହି ରାଜପଥ ଦେଇ ଆମକୁ ନେଇ ଯିବାକୁ ଚାହାନ୍ତି, ଯାହାଦ୍ୱାରା କି ଆମର ଗୁହା ପ୍ରବେଶର ପଥ ସୁଗମ ହେବ । ଏଥିପାଇଁ ଚିତ୍ତଶୁଦ୍ଧି ବିଷୟରେ ସେ ବାରଂବାର ଧ୍ରୁପଦ ଗାଡି

ଅନୁଯାୟୀ ପୁନରାବୃତ୍ତି କରିଛନ୍ତି । ଧ୍ୟାନର ବିଭିନ୍ନ ଦିଗ ଗୁଡ଼ିକୁ ସେ ଏହି କେନ୍ଦ୍ରର ଆଖପାଖରେ ଭିନ୍ନ ଭିନ୍ନ ଭାବରେ ପ୍ରକାଶ କରି ଯାଇଛନ୍ତି । ବିନୋବାଜୀଙ୍କର ବିଶାଳ ବାଂଗ୍ମୟ ସୃଷ୍ଟି ମଧ୍ୟରେ ବିସ୍ତାରିତ ହୋଇ ରହିଥିବା ଏହି ବିଚିତ୍ର ଦିଗ ଗୁଡ଼ିକୁ ଗୋଟିଏ ସୂତାଖିଅରେ ବାନ୍ଧି ନେବାର ଏହା ଗୋଟିଏ ସାମାନ୍ୟ ପ୍ରୟାସ ମାତ୍ର ।

ବିନୋବାଜୀ କହୁଥିଲେ, ସମୁଦ୍ରରେ ରହିବାକୁ ହେଲେ ସମୁଦ୍ରପରି ଶକ୍ତିର ପ୍ରୟୋଜନ । ଏହି ସମୁଦ୍ରର ସାମାନ୍ୟ କିଛି ଢେଉ, ତାଙ୍କରି ଶବ୍ଦ ସମ୍ଭାରରେ ପ୍ରସ୍ତୁତ କରିବାର ପ୍ରଚେଷ୍ଟା ଏଠାରେ କରାହୋଇଛି । ବାକିତକ ନିଜେ ଯାଇ ମହାଗୁହାରେ ପ୍ରବେଶ କଲେ ଜଣା ପଡ଼ିବ । ଧ୍ୟାନର ମହାସାଗରେ ପ୍ଲାବିତ ଏହି ସବୁ ତରଂଗ ଆମକୁ ଯେତେ ଗଭୀରକୁ ଆକର୍ଷଣ କରିବ, ଏହି ରଚନା ସଂଗ୍ରହର ସାର୍ଥକତା ସେତେ ବେଶୀ ହେବ ।

ଏମିତିରେ ସମୁଦ୍ର ପାଣିରେ ସମୁଦ୍ରକୁ ଅଂଜଳି ଦେବାର ଏହି ପ୍ରଚେଷ୍ଟା ଆତ୍ମଶୁଦ୍ଧିର ପ୍ରୟାସ । ଯେଉଁ ବ୍ୟକ୍ତି ପ୍ରେମପୂର୍ବକ ଏହି ଜଳରେ ଆଚମନ କରିବେ, ତାହାଙ୍କୁ ଏହି ପବିତ୍ରତା ସ୍ପର୍ଶ କରିବ । ମହାଗୁହା ନିବାସୀ ଏହି ଅଭିନବ ଯୋଗୀ ପୁରୁଷଙ୍କର ଚରଣ ବନ୍ଦନା କରି କୃତଜ୍ଞ ଚିତ୍ତରେ ଏହି ଆଶୀର୍ବାଦ ମୁଁ ପ୍ରାର୍ଥନା କରିବି ଯେ, ସେ ଯେପରି ଆମର ଗୁହା ପ୍ରବେଶର ସହଜ ସରଳ ବାଟକୁ ନିଷ୍ଠାର ସହିତ ଧରି ରଖିବା କାର୍ଯ୍ୟରେ ସହାୟତା କରିବେ ।

ବ୍ରହ୍ମ ବିଦ୍ୟା ମନ୍ଦିର
ପଓନାର - ୱାର୍ଦ୍ଧା

ଉଷା

# ଦିବ୍ୟ ସାନ୍ନିଧ
## ("ମହାଗୁହାମେଁ ପ୍ରବେଶ"ର ଅନୁବାଦ)

ଆମେ ପ୍ରତ୍ୟେକ ଅନ୍ତରର ଗଭୀରତମ ପ୍ରଦେଶକୁ ଯାଇ ଚିନ୍ତନର ଅଭ୍ୟାସ କରିବା ଦରକାର । ଆମର ନିଜ ନିଜ କାର୍ଯ୍ୟରୁ, ମୁଁ କାରର ଅହଂକାର ଠାରୁ ଏବଂ ନିଜର ଆପଣାର ପ୍ରିୟତମ ଭାବନା ବା ଚିନ୍ତା ଠାରୁ ମଧ ନିଜକୁ କିଛି ଅଂଶରେ ପୃଥକ୍ କରି ରଖିବା ପ୍ରୟୋଜନ । ଏହାପରେ କର୍ମରୁ, ସ୍ମୃତିରୁ, ଆଖ ପାଖର ସମାଜରୁ, ନିଜର ମନଠାରୁ, ଅହଂକାର ବୋଧଠାରୁ, ନିଜର ଅନୁଭୂତିଠାରୁ ପୃଥକ୍ ପୃଥକ୍ ହେବାର ଅଭ୍ୟାସ ଯଦି ଆମେ କରିପାରିବା ତେବେ ଏହି ବିଶ୍ୱ ବ୍ରହ୍ମାଣ୍ଡର ସୃଷ୍ଟିର ଆଦିସ୍ଥଳରେ ପହଞ୍ଚି ପାରିବା । ସେଠାରେ ବ୍ରହ୍ମାଣ୍ଡ ନଥିଲା, ଦେହ ନଥିଲା ଏବଂ ଚିତ୍ତ ମଧ ନଥିଲା । କିନ୍ତୁ କୌଣସି ଗୋଟିଏ ଅବଶେଷ ମାତ୍ର ରହିଥିଲା – ତାହା ହିଁ ଅସ୍ତିତ୍ୱ । ସେହି ଅସ୍ତିତ୍ୱକୁ କେହି କହନ୍ତି 'ସତ୍', କେହି କହନ୍ତି 'ଅସତ୍'; ପୁଣି ଆଉ କେହି ତାଙ୍କୁ 'ପରମାତ୍ମା' ବୋଲି ଆଖ୍ୟା ଦେଇ ଥାଆନ୍ତି । ଭିନ୍ନ ଭିନ୍ନ ବ୍ୟକ୍ତି ନିଜ ନିଜର ବୁଦ୍ଧି ଅନୁଯାୟୀ ତାଙ୍କଠାରୁ ଗୁଣ ଗ୍ରହଣ କରିଥାଆନ୍ତି । କିନ୍ତୁ ସେଇ ଗୋଟିକ ହେଉଛି ମୂଳ ସ୍ରୋତ । ଯଦି ଆମେ ସେହି ସ୍ଥାନରେ ପହଂଚି ପାରିବା, ତାହାହେଲେ ଆମ ମନରେ ସୁଗଭୀର ଶାନ୍ତି ଓ ପ୍ରସନ୍ନତା ଲାଭ ସମ୍ଭବ ହୋଇ ପାରିବ । ଏହା ଅନୁଭବର ବିଷୟ, କାଳ୍ପନିକ କଥା ନୁହେଁ । ଜାଗ୍ରତ ଅବସ୍ଥା ପରି ଏହି ଅନୁଭବ ମଧ 'ଅବ୍‌ଜେକ୍‌ଟିଭ' – ବସ୍ତୁ ନିଷ୍ଠ ।

ଗୋଟିଏ ପ୍ରକାରର ଦୃଷ୍ଟିଭଂଗୀରୁ ଏହି ଅନୁଭବକୁ ଅନେକଟା ବାସ୍ତବ ବୋଲି ସ୍ୱୀକାର କରାଯାଇ ପାରେ । ଆମେ ଯେତେବେଳେ ମୂଳ ସ୍ରୋତ ନିକଟରେ ପହଂଚି ଯାଉ ସେତେବେଳେ ସେହି ଚିତ୍ତ ସଂଯୋଗ ଠାରୁ ବିଚ୍ଛିନ୍ନ ହୋଇଯାଉ ।

## ୧. ଧ୍ୟାନର ସ୍ୱରୂପ ଓ ପୃଷ୍ଠଭୂମି

୧. ଚଞ୍ଚଳଂ ହି ମନଃ – ମନ ସ୍ୱଭାବତଃ ହିଁ ଚଞ୍ଚଳ ।

୨. ଚିତ୍ତଶୁଦ୍ଧି ଧ୍ୟାନର ଅନିବାର୍ଯ୍ୟ ଅଂଶ ।

୩. ଏକାଗ୍ରତା କିପରି ଭାବରେ ଅର୍ଜନ କରିବାକୁ ହେବ ।

୪. ଏକାଗ୍ରତା ଲାଭର ପୂର୍ବଭାଗ ହେଉଛି ଚିତ୍ତଶୁଦ୍ଧି ଓ ପ୍ରସନ୍ନତା ।

୫. କୌଣସି ରଂଗ ଯେପରି ନ ଲାଗେ ।

୬. ଚିତ୍ତଶୁଦ୍ଧିର ଉପାୟ କଣ ?

୭. ଧ୍ୟାନ ଏବଂ ଅଧ୍ୟାତ୍ମ ।

କ). ଚଞ୍ଚଳଂ ହି ମନଃ :

୧. ଚଞ୍ଚଳତା ହିଁ ମନର ସ୍ୱଭାବିକ ଧର୍ମ ।

* ଚିତ୍ତଚାଞ୍ଚଲ୍ୟର ପରୀକ୍ଷା ପାଇଁ ଧ୍ୟାନର ଉପଯୋଗୀତା ।

* ଧ୍ୟାନ ପରି ସ୍ୱପ୍ନ ମଧ୍ୟ ଚିତ୍ତ ପରୀକ୍ଷାର ଉପାୟ ।

* ମନ ଆମର ଭୃତ୍ୟ ।

ନିର୍ଲିପ୍ତ ଭାବରେ ତାହାକୁ ଆଖି ଆଗରେ ରଖିବାକୁ ହେବ ।

ମଣିଷ ଯେଉଁ କାମ କରେ, ତାହା ମନ ଦ୍ୱାରା ହିଁ ସଂପାଦିତ ହୁଏ । ତେଣୁ ଯାହାଦ୍ୱାରା ସବୁ କାମ କରାଯାଏ ସେହି ଯନ୍ତ୍ର ଯଦି ଖରାପ (ଏଜେନ୍ସି) ହୋଇ ଯିବ ତାହା ହେଲେ ସବୁ କାମ ନଷ୍ଟ ହୋଇଯିବ । ଆଖି ଯଦି ସ୍ୱଚ୍ଛ ଥିବ ଏବଂ ମନ ଯଦି ଅସ୍ୱଚ୍ଛ ଥିବ ତାହାହେଲେ ଦେଖିବା କାମ ଠିକ୍ ଭାବରେ ହେବ ନାହିଁ । ଏହି ପରି କାର୍ଯ୍ୟ ଯଦିବା କର୍ମେନ୍ଦ୍ରିୟ ଦ୍ୱାରା ସଂପାଦିତ ହୋଇଥାଏ ତଥାପି କାର୍ଯ୍ୟଟି ଭଲ ହେବକି ମନ୍ଦ ହେବ ତାହା ମନ ଉପରେ ନିର୍ଭର କରେ। ଏଥିପାଇଁ ଆମ ମନଟା କଣ ? ତାହା ଦେଖିବା, ତାହାକୁ ପରୀକ୍ଷା କରିବା ଖୁବ୍ ଜରୁରୀ କାର୍ଯ୍ୟ ।

ଧ୍ୟାନ ହେଉଛି ଚିତ୍ତର ଏକାଗ୍ରତାର କଷଟି ପଥର । ଭଲ ଗୀତ ଶୁଣିଲେ ଭଜନ-କୀର୍ତ୍ତନ କଲେ, ଚିତ୍ତ ଏକାଗ୍ର ହୁଏ । କାରଣ ସେଥିରେ ଅନୁଭୂତି ଲାଭ ହୁଏ । ଏଥିପାଇଁ ସଂଗୀତ ଶୁଣିବା କିମ୍ବା ସଂକୀର୍ତ୍ତନ କରିବା ଏକାଗ୍ର-ଚିତ୍ତ-ତାର ପରୀକ୍ଷା ନୁହେଁ, ଧ୍ୟାନ ହିଁ ହେଉଛି ତାର କଷଟି ପଥର । ସବୁ କାମ ଛାଡ଼ି ଧ୍ୟାନ କରିବା ପାଇଁ ଯେତେବେଳେ ଶାନ୍ତ ଭାବରେ ବସୁ ସେତେବେଳେ ଚିତ୍ତର କ'ଣ ଅବସ୍ଥା ତାହା ଆମେ ବୁଝିପାରୁ । ମନର ଚଞ୍ଚଳତା ପରୀକ୍ଷା କରିବା ଦିଗରେ ଧ୍ୟାନ ଯେତେ ଉପଯୁକ୍ତ ଅନ୍ୟ କୌଣସି ପଦ୍ଧତି ସେତେ ଉପଯୋଗୀ ନୁହେଁ ।

ପ୍ରକୃତରେ ଧ୍ୟାନ ସମୟରେ ମନରେ ଏକାଗ୍ରତା ଆସେ ନାହିଁ । ଏହାର କାରଣ ହେଉଛି, ମନ ଉପରେ ସେତେବେଳେ ଗୋଟିଏ ନିର୍ଦ୍ଦେଶ ଜାରୀ ହୋଇଥାଏ — 'ସ୍ଥିର ହୋଇ ବସ' । 'ସ୍ଥିର ହୋଇ ବସ' ଏହି ନିର୍ଦ୍ଦେଶ ମିଳିବା ମାତ୍ରେ ମନ ସଂଗେ ସଂଗେ ଦୌଡ଼ିବା ଆରମ୍ଭ କରିଦିଏ । ଇଚ୍ଛା ହେଲେ ମନ କାଶୀକୁ ଯାଇ ପାରେ ପୁଣି ଶୌଚାଗାର ଆଡ଼କୁ ଦୌଡ଼ିପାରେ । କାଶୀ ଗଲେ ତ ଉତ୍ତମ ସ୍ଥାନକୁ ଗଲା ବୋଲି ମନେ କରାହେବ, ଶୌଚାଗାରକୁ ଗଲା ତ ଅପରିଚ୍ଛନ୍ନ ସ୍ଥାନକୁ ଗଲା ବୋଲି ଧରା ହେବ । କିନ୍ତୁ ଉଭୟ କ୍ଷେତ୍ରରେ ମନ ଉପରେ ନିୟନ୍ତ୍ରଣ ନଥିଲା, ଧ୍ୟାନରେ ବାଧା ପଡ଼ିଲା । ମନ 'ଉପରେ ଅଂକୁଶ ଅଛି କି ନାହିଁ ତାହା ଦେଖିବା ପାଇଁ ସାଧକ ନିକଟରେ ଧ୍ୟାନ ହିଁ ଏକମାତ୍ର ବିଚାରର ମାନଦଣ୍ଡ । ଅନ୍ୟ କୌଣସି ବିକଳ୍ପ ସାଧନ ନାହିଁ ।

କେତେବେଳେ ଯଦି ନିର୍ଜନରେ ଧ୍ୟାନ ପାଇଁ ବସିବାକୁ ହୁଏ, ସେତେବେଳେ ଦେଖାଯାଏ ମନ ୟାଡ଼େ ସିଆଡ଼େ ଦଉଡ଼ିବାରେ ଲାଗିଛି, ଧ୍ୟାନ ହେଉ ନାହିଁ । କିନ୍ତୁ ଏତିକି ଲାଭ ହୁଏ ଯେ ମନ କୁଆଡ଼କୁ କୁଆଡ଼କୁ ଯାଇଥିଲା ତାହା ବୁଝି ହୁଏ । କୌଣସି କାର୍ଯ୍ୟରେ ଯଦି ମନ ତନ୍ମୟ ହୋଇ ଲାଗିଯାଏ ତେବେ ମନ ଇତସ୍ତତଃ ଦୌଡ଼ା ଦୌଡ଼ି କରେ ନାହିଁ । କିନ୍ତୁ ତାହାଦ୍ୱାରା ମନର, ଚିତ୍ତର

ପରିଚୟ ମିଳେ ନାହିଁ, ଧ୍ୟାନ ମାଧ୍ୟମରେ ମନକୁ ପରୀକ୍ଷା କରିବାର ସୁଯୋଗ ମିଳିଥାଏ । ଚିନ୍ତା କରି ଦେଖନ୍ତୁ । ସକାଳେ ଯେତେବେଳେ ପ୍ରାର୍ଥନାରେ ବସିଥିଲେ ସେତେବେଳେ ମନ ପ୍ରାର୍ଥନାରେ ନିବିଷ୍ଟ ନଥିଲା । ସେ ସମୟରେ ଗୋଟିଏ ଚଢ଼େଇ ଚିତ୍କାର କରି ଡାକି ଉଠିଥିଲା । ଏହାପରେ ବାର ବର୍ଷ ପୂର୍ବରୁ ଦିଲ୍ଲୀରେ ଯେଉଁ ଭଦ୍ରଲୋକଙ୍କ ଘରକୁ ଯାଇଥିଲି ତାଙ୍କ କଥା ମନେ ପଡିଲା । କଥା ପ୍ରସଙ୍ଗରେ ସେ କହିଥିଲେ ଯେ ରେଳରେ ଭ୍ରମଣ କରିବା ବେଳେ ତାଙ୍କର ପୁତ୍ରର ମୃତ୍ୟୁ ହୋଇଥିଲା । ଏହାପରେ ହିଁ ଭ୍ରମଣ କଥା ମନେ ପଡ଼ିଲା – ମନେ ପଡ଼ିଲା ବମ୍ବେ – ନାଗପୁର ଇତ୍ୟାଦି କେଉଁ କେଉଁ ସ୍ଥାନକୁ ଯାଇଥିଲି । ମନ ଯେ ଇତସ୍ତତଃ ଘୁରି ବୁଲେ ତାର କେତେ ଗୁଡ଼ିଏ ସଂଯୋଗ ସୂତ୍ର ଅଛି । ଏହି ପରି ଦଶ କୋଡ଼ିଏ ଥର ସବୁଯାକ ମନରେ ଥିବା ସବୁ ଯାକ ଚିତ୍ର, ଯାହା ମନେ ପଡୁଥିଲା ସେ ଗୁଡ଼ିକୁ ଲେଖି ରଖିବା ପ୍ରୟୋଜନ । ତାପରେ ଯେପରି ଅନ୍ୟ କାହାରି ଚରିତ୍ର ପଢ଼ା ହୁଏ ସେହି ପରି ନିଜର ଲିଖିତ ବିଷୟ ପଢ଼ିବା ଉଚିତ । ତାହା ଆପଣଙ୍କର ନୁହେଁ, ଆପଣଙ୍କର ମନର ବିଷୟ । ଏହି ଲେଖା ଦେଖିଲେ ମନର ବିଶେଷ ଆସକ୍ତି ସ୍ଥାନ କେଉଁଟା ତାହା ଜଣା ପଡ଼ିବ । ଏହି ଆସକ୍ତିର ପରିଚୟ ପାଇବା ପରେ ମନ ଯେପରି ସେଆଡ଼କୁ ଯିବାକୁ ସୁଯୋଗ ନପାଇବ ସେଥିପାଇଁ ଚେଷ୍ଟା କରିବାକୁ ହେବ ।

କେବେ କେବେ ଏପରି ହୁଏ ଯେ କୌଣସି ଇଚ୍ଛା ମନକୁ ଆସିଲା ପୁଣି ଦ୍ୱିତୀୟଥର ଚିନ୍ତା କଲା ବେଳେ ତାହା ଠିକ ନୁହେଁ ବୋଲି ମନେ ହେଲା । ଅର୍ଥାତ୍ ଦ୍ୱିତୀୟ ଏଜେନ୍ସି ବୋଲି କିଛି ଅଛି ଯାହା ମନକୁ ବାଧା ଦେଉଛି । ଆଉ ଏହି ଏଜେନ୍ସିର ନାମ ବିବେକବୁଦ୍ଧି । ବିବେକଠାରୁ ମନ ଯେ ଅଲଗା ଏକଥା ଜାଣିବାକୁ ହେବ । ଏଥିପାଇଁ ସବୁବେଳେ ନିଜ ଇଚ୍ଛା ଅନୁସାରେ ଚାଲିବା ଠିକ ନୁହେଁ ଏବଂ ଏକାଥରେ ତା ବିରୁଦ୍ଧରେ ଚାଲିବା ମଧ୍ୟ ଠିକ୍ ନୁହେଁ । ନିରପେକ୍ଷ ଦୃଷ୍ଟିରେ ନିର୍ଲିପ୍ତ ଭାବରେ ଦେଖିବା ଏବଂ ଚିହ୍ନିବା ଦରକାର । ମନ ଯେ ଆମର ଭୃତ୍ୟ ସ୍ୱରୂପ ଏକଥା ଆମେ ବୁଝି ପାରୁ ନାହୁଁ । ବ୍ୟବସାୟୀ ଯଦି ତାର ସମସ୍ତ ବ୍ୟବସାୟ କର୍ମଚାରୀମାନଙ୍କ ହାତରେ ସମର୍ପଣ କରିଦେବ ତାହାହେଲେ ତାର କ୍ଷତି ହେବ । ଆମେ ଯେତେବେଳେ ଆମର ସବୁ କିଛି ମନକୁ ସମର୍ପଣ କରି ଦେଉ ଏବଂ ମନ ଉପରେ କୌଣସି ନିୟନ୍ତ୍ରଣ ରଖୁନାହୁଁ, ସେତେବେଳେ ଆମର ଅବସ୍ଥା ସେହିପରି ହୁଏ । ବହୁବାର ମନେ ହୁଏ ଯେ, ଆମକୁ ଆଘାତ କରା ହେଉଛି । ବାସ୍ତବିକ୍ କ୍ଷେତ୍ରରେ ଏହି ଆଘାତ ଆମ ଉପରେ ହୁଏ ନାହିଁ, ଏ ଆଘାତ ଅଥବା ଅପବାଦ ଆମ ମନର ଇଚ୍ଛା ଉପରେ ହୋଇଥାଏ । ଅର୍ଥାତ୍ ସେ ଯଦିଓ ଆମର ଭୃତ୍ୟ ସ୍ୱରୂପ ତଥାପି ତା ସହିତ ଆମେ ଏତେ ଏକାତ୍ମତା ଅନୁଭବ କରୁଯେ, ଆମର ମନେ ହୁଏ ଆଘାତଟା ଯେପରି ଆମ ଉପରେ ହୋଇଛି । କିନ୍ତୁ ଆମେ ଯଦି ନିର୍ଲିପ୍ତ ରହିବା ଏବଂ ସେତେବେଳେ ଆମର ଭୃତ୍ୟ ଉପରେ ଦୋଷାରୋପ କରାହେବ ତାହାହେଲେ ଭୃତ୍ୟର କୌଣସି ଦୋଷ ହୋଇଛି ବା ହୋଇନି ବୋଲି ଆମେ ଭାବିବା । ଏବଂ ଯଦି ଦୋଷ ହୋଇଥାଏ ତେବେ ତାକୁ ଗାଳି ଦେବା । ମନକୁ ଏହିପରି ଭାବରେ ନିୟନ୍ତ୍ରଣ କରିବାର ସାମର୍ଥ୍ୟ ରହିବା କଥା । କିନ୍ତୁ ଆମେ ପ୍ରଭୁ ହେବାର ଯୋଗ୍ୟତାହିଁ ହରାଇଛୁ । ମନ ସହିତ ଏକାତ୍ମ ହୋଇ ଯିବା ଫଳରେ ତାକୁ ନିୟନ୍ତ୍ରଣ କରିବାର ସାମର୍ଥ୍ୟ ଆମର ରହେ ନାହିଁ ।

ଉପନିଷଦ୍‌ରେ ବର୍ଣ୍ଣନା କରାହୋଇଛି – ଯ ଇହ ମନୁଷ୍ୟାଣାଂ ମହତ୍ତାଂ ପ୍ରାପ୍ନୁବନ୍ତି ଧ୍ୟାନୋପାଦାଂଶାଂ ଇବୈବ ତେ ଭବନ୍ତି – ଯେଉଁ ସବୁ ମଣିଷମାନେ ଯେଉଁ ସବୁ ବିଷୟରେ ଯଶ ଲାଭ କରିଛନ୍ତି, ତାହା ଧ୍ୟାନ ପାଇଁ ସଂଭବ ହୋଇଛି । ବଡ଼ ବଡ଼ ବୈଜ୍ଞାନିକମାନେ ଯେଉଁ ସବୁ ବିଷୟରେ ଗବେଷଣା କରନ୍ତି ସେଥିରେ ସେମାନଙ୍କର ମନ ନିବିଷ୍ଟ ଥାଏ, ତାହାକୁ ଧ୍ୟାନ କୁହାଯାଏ । କିନ୍ତୁ ଏହି ଶ୍ରେଣୀର ମଗ୍ନତା ସାଲମ୍ବନ ଧ୍ୟାନର ଅନ୍ତର୍ଭୁକ୍ତ । ତାହା ବୈଜ୍ଞାନିକ ଚିନ୍ତାର ଅବଲମ୍ବନ ଭିତ୍ତି ସ୍ୱରୂପ । କେବଳମାତ୍ର ଶାନ୍ତ ହୋଇ ବସି ରହିଲେ ମନରେ ଏକାଗ୍ରତା ଆସେ ନାହିଁ, ସେଥିପାଇଁ କୌଣସି ଗୋଟିଏ ଅବଲମ୍ବନ ଦରକାର ।

ଆମେ ଯେଉଁ ପ୍ରକାର ଧ୍ୟାନ ବିଷୟରେ ଆଲୋଚନା କରୁଛୁ ତାହା କୌଣସି ଅବଲମ୍ବନର ଅପେକ୍ଷା କରେ ନାହିଁ, ବୈଜ୍ଞାନିକ ମାନଙ୍କର ଧ୍ୟାନ କରିବାର ବିଷୟ ବସ୍ତୁ ଉତ୍ତମ । ବ୍ୟଭିଚାରୀମାନେ ମଧ୍ୟ ଧ୍ୟାନ କରିଥାନ୍ତି, ତେବେ ତାଙ୍କର ଧ୍ୟାନର ବିଷୟବସ୍ତୁ ମନ୍ଦ । କିନ୍ତୁ ଉଭୟ ପ୍ରକାର ଧ୍ୟାନ ହେଉଛି ବିଷୟବସ୍ତୁ ଭିତ୍ତିକ । ଉଭୟ ଧ୍ୟାନ ଅବଲମ୍ବନକୁ ନିର୍ଭର କରୁଛି । ଅବଲମ୍ବନହୀନ ଧ୍ୟାନ ମଧ୍ୟ ଦେଇ ମନର ପରୀକ୍ଷା ହୋଇଥାଏ ।

ଧ୍ୟାନର ଗତି ଓ ନିଦ୍ରାର ଗତି ଏକ ପ୍ରକାର । ନିଦରେ ଶୋଇଲେ ସ୍ୱପ୍ନ ଆସେ । ନିଦ ସମୟରେ ମଧ୍ୟ ମନ ଇତସ୍ତତ ଚଲାବୁଲା କରେ । କାରଣ ଚିତ୍ତ ବିକାରଗ୍ରସ୍ତ । ସାଧାରଣ ଅବସ୍ଥାରେ ତାହା ନିଷ୍କ୍ରିୟ ଭାବରେ ପଡ଼ି ରହେ, ନିଦ୍ରା ସମୟରେ ତାହା ସତେଜ ହୋଇ ଉଠେ । ସ୍ୱପ୍ନର ମଧ୍ୟ ପରୀକ୍ଷା କରିବା ପ୍ରୟୋଜନ । ତାହାକୁ ମଧ୍ୟ ନିଜ ଆୟତ୍ତରେ ରଖିବା କଥା ।

ଧ୍ୟାନ ଦ୍ୱାରା ମନ ନିଜ ଅଧିନରେ ରହିବ । ମନ ନିଜ ଅଧିନରେ ରହିଲେ ସ୍ୱପ୍ନ ମଧ୍ୟ ଦେଖିବା ଯେ ବନ୍ଦ ହୋଇଯିବ ତାହା ନୁହେଁ, ସ୍ୱପ୍ନ ଦେଖିବାର ଆହୁରି ଅନେକ କାରଣ ଅଛି, ତା' ଉପରେ ନିୟନ୍ତ୍ରଣ ଆସିଯିବ ।

ସ୍ୱପ୍ନରେ ମନ କେଉଁ କେଉଁ ଆଡ଼କୁ ଯାଏ ଏବଂ ଧ୍ୟାନ ସମୟରେ ଚିତ୍ତର ଗତିବିଧି କୁଆଡ଼େ ତାହାଦେଖି ବିଚଳିତ ହେବାର କିଛି ନାହିଁ । ଏସବୁ ମନର ବ୍ୟାପାର, ନିଜର କିଛି ନାହିଁ । ଯେଉଁ ଲୋକ ମନକୁ ନିଜ ସହିତ ସଂଯୋଗ କରି ଦେଖିବ ସେ ମନର ପରୀକ୍ଷା କରିବାକୁ ଭୟ କରିବ । ମୋ ମନରେ ଯେଉଁ ସବୁ ଭଲମନ୍ଦ ଚିନ୍ତା ଆସିବ ସେଥିପାଇଁ ମୁଁ ନିଜେ ଦାୟୀ ନୁହେଁ, ଠିକ୍ ସେହିପରି ଆପଣଙ୍କ ମନରେ ଯେଉଁ ସବୁ ଭଲ ମନ୍ଦ ଚିନ୍ତା ଯା ଆସ କରିବ ତାର ଦାୟିତ୍ୱ ମଧ୍ୟ ଆପଣଙ୍କ ନିଜ ଉପରେ ନିର୍ଭର କରେ ନାହିଁ, କାରଣ ମନ ମଧ୍ୟରେ ଏହି ଯେ ସବୁ ଚିନ୍ତା ଯିବା ଆସିବା କରୁଛି ତାହା ଚାଲୁଥିବ । ମନ ଅନେକ ପ୍ରକାରର ଭାବନା ଚିନ୍ତା କରିପାରେ ସେଥିପାଇଁ ଆପଣଙ୍କ ଉପରେ କୌଣସି ନାଲିସ୍ କରାଯାଇ ପାରିବ ନାହିଁ । କିନ୍ତୁ ମନ ଭିତରେ ଯେଉଁ କଥା ଥାଏ ଆପଣ ଯଦି ସେହି ଅନୁସାରେ କାମ କରିବେ ତେବେ ଆପଣଙ୍କ ଉପରେ କେସ୍ କରାଯିବ । ଆପଣ ଯଦି ମନଠାରୁ ଅଲଗା ରହିବେ ତେବେ କେହି ଆପଣଙ୍କୁ ଶାସ୍ତି ଦେଇ ପାରିବ ନାହିଁ । ଆପଣଙ୍କ ଦେହରେ ବଥ ବାହାରିଲା ତଥାପି ଆପଣ ହସି ପାରୁଛନ୍ତି । ଏହାର ଅର୍ଥ ହେଲା, ଦେହ ଠାରୁ ନିଜକୁ ଅଲଗା କରିଦେବାର ଶକ୍ତି ଆପଣଙ୍କର ଆସି ଯାଇଛି । ଦେହଠାରୁ

ଅଲଗା ହେବା ସହଜ କାମ କିନ୍ତୁ ମନଠାରୁ ନିଜକୁ ଅଲଗା ରଖିବା ଏତେ ସହଜ ନୁହେଁ । କାରଣ ଆମେ ଯେ ମନଠାରୁ ଅଲଗା ସେ ସଂପର୍କରେ ଆମର କୌଣସି ଧାରଣା ନାହିଁ । ଆମେ ମନର ଗୋଲାମୀ କରିଥାଉ, ଅର୍ଥାତ ମନେକରୁ ମୁଁ ହେଉଛି ମନ ।

ଦୁଇ ପ୍ରକାରର ବକ୍ତବ୍ୟ ରଖାଗଲା । ଗୋଟିଏ ଧ୍ୟାନ, ବସ୍ତୁ ଇତ୍ୟାଦିର ମାଧ୍ୟମରେ ମନର ପରୀକ୍ଷା କରିବା ଦରକାର । ଦ୍ୱିତୀୟରେ, ସବୁ ଅବସ୍ଥାରେ ଆମେ ଯେ ମନଠାରୁ ଅଲଗା ଏ ଧାରଣା ମନରେ ସ୍ଥିତି ଲାଭ କରୁ ।

ଖ) ଚିତ୍ତ ଶୁଦ୍ଧି : ଧ୍ୟାନ ପାଇଁ ଏକାନ୍ତ ଆବଶ୍ୟକ :

* ଧ୍ୟାନ ପାଇଁ ପ୍ରଥମେ ମନର ସ୍ନାନ ହେବା ପ୍ରୟୋଜନ ।
* ଏକ ଚିତ୍ତଶୁଦ୍ଧି ଛଡ଼ା ଧ୍ୟାନର ସାଧନ ସଂଭବ ନୁହେଁ ।
* ଦୁଇ, ଦୃଢ଼ ସଂକଳ୍ପ ଶକ୍ତିର ସାହାଯ୍ୟରେ ଯଦି କେହି ଧ୍ୟାନ କରେ ତାହାହେଲେ ଯେଉଁ ବ୍ୟକ୍ତି ସାଧନା କରେ ତାହାର ଏବଂ ଦୁନିଆର – ଦୁଇଟିର କ୍ଷତି ହେବ ।

ଅନେକ ଲୋକ ମନର ମଇଳା ଦୂର କରିବା ପୂର୍ବରୁ ଧ୍ୟାନରେ ଏକାଗ୍ର ହେବା ପାଇଁ ଚେଷ୍ଟା କରନ୍ତି, ସେମାନଙ୍କର ମନ ଦୌଡ଼ି ବୁଲେ । ଆମେ ଯେପରି ଭଗବାନଙ୍କୁ ପୂଜା କରିବା ପୂର୍ବରୁ ସ୍ନାନ କରୁ, ସ୍ନାନ ନ କରି ବସୁ ନାହିଁ, ଠିକ୍ ସେହିପରି ଧ୍ୟାନ ପାଇଁ ଚିତ୍ତକୁ ସ୍ନାନ କରାଇ ନେବାକୁ ହେବ । ଚିତ୍ତର ମଇଳା ପରିଷ୍କାର କରି ନେଇ ତାପରେ ଧ୍ୟାନର ସାଧନା । ସେତେବେଳେ ଯାଇ ଧ୍ୟାନ ସିଦ୍ଧି ଲାଭ କରିବ ।

କେତେବେଳେ କେତେବେଳେ ମଧ୍ୟ ଧ୍ୟାନର ସୁବିଧା ପାଇଁ ଦୀପ, ଜଳର ଧାରା ଇତ୍ୟାଦିର ବ୍ୟବହାର କରାଯାଏ । ଏସବୁ ହେଲା ଆଲଂବନ (ସହାୟକ ବସ୍ତୁ) ।

ପରମାତ୍ମାଙ୍କ ଅବସ୍ଥାନ ଆମ ବାହାରେ ନୁହେଁ । ପ୍ରକୃତ ପକ୍ଷେ ପରମାତ୍ମାଙ୍କ ଅଧିଷ୍ଠାନ ମଣିଷର ଅନ୍ତର ମଧ୍ୟରେ, ତାର ହୃଦୟରେ । ତା ଉପରେ ରହିଛି ବୁଦ୍ଧିର ଆବରଣ, ରହିଛି ହୃଦୟର ଆବରଣ । ଉପରର ଏହି ଆବରଣ ଭିତରକୁ ଢାଂକି ରଖିଛି । ଭିତର ମହଲ ଜ୍ୟୋତିର୍ମୟ । କିନ୍ତୁ ଉପରେ ଯେଉଁ ଆଚ୍ଛାଦନ ରହିଛି, ତାହା ମଳିନତାପୂର୍ଣ୍ଣ । ଏହାକୁ ଗୋଟିଏ ଲଣ୍ଠନ ସହିତ ତୁଳନା କରାଯାଇପାରେ । ଲଣ୍ଠନ ଭିତରେ ଆଲୁଅ ଆଉ ତା ଉପରେ କାଚର ଆବରଣ । କାଚ ଯଦି ମଇଳା ଦ୍ୱାରା ଆବୃତ୍ତ ଥାଏ ତେବେ ଭିତରର ଆଲୁଅ ପରିଷ୍କାର ଦେଖାଯାଏ ନାହିଁ । ମଇଳା ପରିଷ୍କାର କରି ଦିଆଗଲେ ଆଲୁଅ ପରିଷ୍କାର ଦେଖାଯାଏ । ସେହିପରି ଆମର ବୁଦ୍ଧି ଅପରିଚ୍ଛନ୍ନ ବୋଲି ଅନ୍ତର ଭିତରେ ପରମାତ୍ମାଙ୍କର ଯେଉଁ ଜ୍ୟୋତି ରହିଛି ତାହା ଦୃଷ୍ଟିଗୋଚର ହୁଏ ନାହିଁ । ମଇଳା ଗୁଡ଼ିକ ଯଦି ପରିଷ୍କାର କରି ଦିଆ ଯାଏ ତାହାହେଲେ ପରମାତ୍ମାଙ୍କୁ ସିଧାସଳଖ ଦେଖି ହେବ, ପରମାତ୍ମାଙ୍କର ପ୍ରତ୍ୟକ୍ଷ ଦର୍ଶନ ମିଳିବ ।

ଏହା ହେଲା ଧ୍ୟାନର ମୁଖ୍ୟ ପ୍ରକ୍ରିୟା (ପ୍ରଧାନ ପଦ୍ଧତି) । କାରଣ କ'ଣ ? କାରଣ ମନ ମଇଳାରେ ଆବୃତ୍ତ ହୋଇ ରହିଛି । ଏଥିପାଇଁ ଧ୍ୟାନ ସାଧନର ପ୍ରକୃଷ୍ଟ ଉପାୟ ହେଲା ପ୍ରଥମେ ହିଁ ଚିତ୍ତର ମଇଳା ଗୁଡ଼ିକୁ ପରିଷ୍କାର କରିବା, ସେଥିପାଇଁ ଏହାକୁ ଚିତ୍ତଶୁଦ୍ଧିର ସାଧନା ବୋଲି କୁହାଯାଏ । ଚିତ୍ତଶୁଦ୍ଧି ହୋଇଗଲେ ଧ୍ୟାନରେ ଏକାଗ୍ରତା ଆସିବ । ଯେ ପର୍ଯ୍ୟନ୍ତ ଚିତ୍ତଶୁଦ୍ଧି ନ ହୋଇଛି ସେ ପର୍ଯ୍ୟନ୍ତ ଧ୍ୟାନ ସାଧିତ ହେବ ନାହିଁ । ଏଥିପାଇଁ ଦଶ-ପନ୍ଦର ମିନିଟ ପାଇଁ ଧ୍ୟାନରେ ବସିବାକୁ ହୁଏ । କିନ୍ତୁ ଦିବା ରାତି ଧ୍ୟାନ ଚାଲୁଥିବ । ଘଣ୍ଟା ଘଣ୍ଟା ଧରି ଧ୍ୟାନ କରାଯାଉଥିବ, ଧ୍ୟାନ ଛଡ଼ା ମନ ଭିତରେ କୌଣସି ବୃତ୍ତି ଜାଗ୍ରତ ହୋଇ ରହୁ ନ ଥିବ, କାମ କରୁ କରୁ ଧ୍ୟାନ ମଧ୍ୟ ଚାଲିଥିବ, ମନ ଭିତରେ ଆଉ କିଛି ନାହିଁ – ଏହିପରି ଅବସ୍ଥା ପାଇଁ ଦୋଷ ଗୁଡ଼ିକୁ ସଂଶୋଧନ କରିବା ଏକାନ୍ତ ଆବଶ୍ୟକ ।

ମନ ନିର୍ମଳ ହେଲେ ଯାଇ ତହିଁରେ ସ୍ଥିରତା ଆସିବ । ଯେ ପର୍ଯ୍ୟନ୍ତ ମନର ମଇଳା ଧୋଇ ନ ଯାଇଛି ସେ ପର୍ଯ୍ୟନ୍ତ ମନ ଅଶାନ୍ତ ରହିବ । ସୁତରାଂ ଏହିପରି ଭାବରେ ମନ କେତେବେଳେ ଏ ଦିଗକୁ କେତେବେଳେ ସେ ଦିଗକୁ ଯିବା ଆସିବା କରିବ । ୟାଡ଼େ ସିଆଡ଼େ ଦୌଡ଼ି ବୁଲିବ । ମଣିଷ ଗୋଟିଏ ପରିସ୍ଥିତିରେ ରହି ଯଦି ସମାଧାନ ଖୋଜି ବାହାର କରି ନପାରିବ ତେବେ ଅନ୍ୟ କୌଣସି ପରିସ୍ଥିତିକୁ ଯିବାର ଚେଷ୍ଟା କରିବ । ସେଠାରେ ମଧ୍ୟ ସମାଧାନ ନ ମିଳିଲେ ତୃତୀୟ ଅବସ୍ଥାକୁ ଯିବାକୁ ଯତ୍ନ କରିବ । ଏହି ପ୍ରକାର ସମାଧାନ ସେ ବାହାରେ ଖୋଜିବାକୁ ଲାଗିବ । ଚିତ୍ତର ମଳିନତା ହେଉଛି ଦୁଃଖର ପ୍ରକୃତ କାରଣ ତାହା ସେ ଚିହ୍ନି ପାରେ ନାହିଁ, ସେଥିପାଇଁ ସେ ବାହାରେ ଖୋଜିବୁଲେ । କିନ୍ତୁ ଚିତ୍ତର ସମାଧାନର କାରଣ ପରିସ୍ଥିତି ଭିତରେ ନାହିଁ । ତା ପାଇଁ ମନର ପ୍ରସନ୍ନତାର ପ୍ରୟୋଜନ । ମନ ପ୍ରସନ୍ନ ରହିଲେ ସ୍ୱଭାବିକ ଭାବରେ ମନରେ ଶାନ୍ତି ଅନୁଭବ ହେବ । ଗୀତାରେ କୁହାଯାଇଛି – "ପ୍ରସନ୍ନ ଚେତସୋ ହ୍ୟାସୁ ବୁଦ୍ଧିଃ ପର୍ଯ୍ୟବତିଷ୍ଠିତେ" – ଚିତ୍ତ ଯଦି ନିର୍ମଳ ହୁଏ ତାହାହେଲେ ତାହା ସହଜରେ ସ୍ଥିରତା ଲାଭ କରେ । ମନ ସମାଧାନର ଏହି ମୂଳସୂତ୍ର ଅନୁଯାୟୀ କାର୍ଯ୍ୟ ନକରି ଅନ୍ୟ କୌଣସି ଉପାୟରେ ତାକୁ ସ୍ଥିର କରିବାର ଚେଷ୍ଟା ଯଦି ଆମେ କରୁ ତାହାଲେ ଚିତ୍ତର ଚଞ୍ଚଳତା ଆହୁରି ବଢ଼ିଯିବ । କାରଣ 'ପ୍ରେସର୍' (pressure)ବା ଚାପ ଦେଇ ମନକୁ ନିୟନ୍ତ୍ରଣ କରିବା ପାଇଁ ଯେତେ ବେଶୀ ଚେଷ୍ଟା କରାଯିବ ତାର ପ୍ରତିକ୍ରିୟା ଆହୁରି ବେଶୀ ପ୍ରକଟିତ ହେବ । ସାର କଥା ହେଉଛି, ମଣିଷର ସମସ୍ୟା ହେଉଛି ନିର୍ମଳତା ଅର୍ଜନ କରିବାର ସମସ୍ୟା ।

ପ୍ରଥମତଃ ଚିତ୍ତଶୁଦ୍ଧି ଛଡ଼ା ଧ୍ୟାନରେ ସଫଳତା ଆସେ ନାହିଁ ।

ଦ୍ୱିତୀୟତଃ ଯଦିବା ଧ୍ୟାନ ସିଦ୍ଧି ଲାଭ କରେ ତଥାପି ନିଜର ଅଥବା ଯିଏ ସାଧନା କଲେ ତାଙ୍କର ଏବଂ ଦୁନିଆର କ୍ଷତି ହେବ । ଚିତ୍ତ ଶୁଦ୍ଧି ନ ହୋଇ ମଧ୍ୟ ରାବଣର ଧ୍ୟାନରେ ସିଦ୍ଧି ଲାଭ ହୋଇଥିଲା । ତାର ଏକାଗ୍ରତା ଆସିଯାଇଥିଲା । ଫଳରେ ଭଗବାନ ପ୍ରସନ୍ନ ହେଲେ । ଭଗବାନ୍ ରାବଣକୁ ବର ପ୍ରାର୍ଥନା କରିବାକୁ କହିଲେ । ରାବଣ ସଂହାର ଶକ୍ତି ପାଇଁ ବର ପ୍ରାର୍ଥନା କଲେ । ଭଗବାନ ତାହାଙ୍କୁ ସଂହାର ଶକ୍ତି ଲାଭର ବର ଦେଇ ଦେଲେ । ପରିଣାମରେ କଣ ହେଲା ? ରାବଣ ସଂହାରରେ ପରିଣତ ହେଲେ । ତାଫଳରେ ସେ ନିଜେ ମଧ୍ୟ ଧ୍ୱଂସ ହେଲେ । ଚିତ୍ତ ଶୁଦ୍ଧି ଅର୍ଜନ ନ କରି ଧ୍ୟାନର ସାଧନା କରିବା ଫଳରେ ଏହା ହିଁ ହୋଇଥିଲା ।

ଯଦି ସଂକଳ୍ପ ଶକ୍ତି ତୀବ୍ର ଥାଏ ତେବେ ଚିତ୍ତ ଶୁଦ୍ଧି ତୀବ୍ର ଥାଏ। ତେବେ ଚିତ୍ତ ଶୁଦ୍ଧି ନ ହେଲେ ମଧ୍ୟ ଧ୍ୟାନ ସିଦ୍ଧ ହୋଇଥାଏ । ଆଧୁନିକ ଯୁଗର ଗୋଟିଏ ଉଦାହରଣ ବ୍ୟବହାର କରୁଛି । ଯିଏ ଆଣବିକ ଅସ୍ତ୍ରର ସୂକ୍ଷ୍ମରୁ ସୂକ୍ଷ୍ମତର ଅନୁସନ୍ଧାନ କରିଥିଲେ ସେ ତାହା ଅତ୍ୟନ୍ତ ଏକାଗ୍ରତାର ସହିତ କରିଥିଲେ, ଏହି ବିଷୟରେ ତାଙ୍କର ସଂପୂର୍ଣ୍ଣ ମନଧ୍ୟାନ ପୁରି ରହିଥିଲା । ତାହା ନ ହୋଇଥିଲେ ଏତେ ସୂକ୍ଷ୍ମ ଅନ୍ତରର ଗବେଷଣା କାର୍ଯ୍ୟ ସଂଭବ ହୋଇ ନଥା'ନ୍ତା । ଏ କ୍ଷେତ୍ରରେ ସଂକଳ୍ପ ଥିଲା ବଳବାନ୍ ଏବଂ ବଳବାନ୍ ସଂକଳ୍ପ ହେତୁ ଚିତ୍ତ ଶୁଦ୍ଧି ଛଡ଼ା ଏକାଗ୍ରତା ଆସିଯାଇଥିଲା । କିନ୍ତୁ ଏ ଅସ୍ତ୍ରର ପ୍ରୟୋଗ ଫଳରେ ପୃଥିବୀ ଧ୍ୱଂସ ହେବ ଏବଂ ଆବିଷ୍କାରକ ନିଜେ ମଧ୍ୟ ଧ୍ୱଂସ ହେବେ । ରାବଣଙ୍କର ଦୃଷ୍ଟାନ୍ତ, ପୌରାଣିକ ଘଟଣା ହୋଇଥିବାରୁ ତାହା କାଳ୍ପନିକ ହୋଇପାରେ ବୋଲି ଆଧୁନିକ ଲୋକଙ୍କର ଏପରି ବିଶ୍ୱାସ ଆସିପାରେ । ଏଥିପାଇଁ ଅଣୁଶକ୍ତି ଗବେଷଣାକାରୀର ଏହି ଆଧୁନିକ ଉଦାହରଣ ଏଠାରେ ଦିଆଗଲା । ଏଥିରୁ ମନକୁ ଏକଥା ଆସେ ଯେ, ଚିତ୍ତ ଶୁଦ୍ଧି ଛଡ଼ା ମଧ୍ୟ ଦୃଢ଼ ସଂକଳ୍ପ ଶକ୍ତିର ସାହାଯ୍ୟରେ ଧ୍ୟାନ କର୍ମ କରାଯାଇ ପାରେ ତେବେ ଏହି ଜାତୀୟ ସାଧନାରେ ଲାଭ ହୁଏ ନାହିଁ କ୍ଷତି ହିଁ ହୁଏ ।

ଗ). ଏକାଗ୍ରତା ସାଧନ କିପରି ସଂଭବ ?

* ଭିତରେ ଅସ୍ଥିରତାର ଚକ୍ର ବନ୍ଦ କରନ୍ତୁ ।
* କ୍ଷୁଦ୍ର ବିଷୟରେ ଚିନ୍ତା ଶକ୍ତିର ଅପବ୍ୟୟ କରିବେ ନାହିଁ ।
* ଜୀବନକୁ ନିୟମ-ବଦ୍ଧ କରନ୍ତୁ ।
* ସର୍ବତ୍ର କଲ୍ୟାଣ (ମଂଗଳ) ଦର୍ଶନ କରନ୍ତୁ ।

ଧ୍ୟାନ ଯୋଗରେ ତିନୋଟି ବିଷୟ ପ୍ରଧାନ ।

୧. ଚିତ୍ତର ଏକାଗ୍ରତା ।

୨. ଚିତ୍ତର ଏକାଗ୍ରତା ପାଇଁ (ଉପଯୁକ୍ତ ଜୀବନ ସଂଯମ) ସଂଯତ ଜୀବନ ଯାପନ ।

୩. ସାମ୍ୟଦଶା ବା ସମଦୃଷ୍ଟି ।

ଏହି ତିନୋଟି ବଷୟ ଛଡ଼ା ଯଥାର୍ଥ ସାଧନା ହୋଇ ପାରେ ନାହିଁ । ଚିତ୍ତର ଏକାଗ୍ରତାର ଅର୍ଥ ଚିତ୍ତ ଚାଞ୍ଚଲ୍ୟ ଉପରେ ଅଂକୁଶ ଜାରୀ କରିବା । ଜୀବନର ପରିମିତତାର ଅର୍ଥ ହେଉଛି ସବୁ କାମ ମାପି ଚୁପି କରିବା । ସମଦୃଷ୍ଟିର ଅର୍ଥ ହେଉଛି ବିଶ୍ୱକୁ ଉଦାର ଦୃଷ୍ଟିରେ ଦେଖିବା । ଏହି ତିନୋଟି ବିଷୟ ଧ୍ୟାନ ଯୋଗର ଉପାଦାନ ।

ଯେ କୌଣସି କାର୍ଯ୍ୟରେ ଏକାଗ୍ରତା ଆବଶ୍ୟକ । ତାହା ସାଂସାରିକ କାର୍ଯ୍ୟ ହେଉ ବା ପାରମାର୍ଥିକ କାର୍ଯ୍ୟ ହେଉ । ଚିତ୍ତର ଏକାଗ୍ରତା ନ ଥିଲେ ସଫଳତା ଅର୍ଜନ କରିବା କଷ୍ଟ କର ।

ଏକାଗ୍ରତାର ପ୍ରୟୋଜନ ତ ରହିଛି । କିନ୍ତୁ ତାହା ଆସିବ କିପରି ? ସେଥିପାଇଁ କ'ଣ କରିବାକୁ ହେବ ? ଭଗବାନ ଗୀତାରେ କହିଛନ୍ତି ମନକୁ ଆତ୍ମାରେ ସ୍ଥିର ରଖ, ଅନ୍ୟ କିଛି ଚିନ୍ତା କର ନାହିଁ – ନ କିଞ୍ଚିଦପି ଚିନ୍ତୟେତ୍ ।

କିନ୍ତୁ ଏ ପ୍ରକାର ସ୍ଥିରତା କିପରି ଭାବରେ ଲାଭ କରିହେବ ? ବାହ୍ୟ ଜଗତ – ଯାହାଦ୍ୱାରା ଆମ ମନ ସର୍ବତୋଭାବେ ଆଛନ୍ନ ହୋଇ ରହିଛି ତାକୁ ସଂଯତ କରିବା ଛଡ଼ା ଏକାଗ୍ରତାର ସାଧନା କରିବା ଅସମ୍ଭବ । ନିଜ ଆତ୍ମାର ଅନନ୍ତ ଜ୍ଞାନ ଶକ୍ତିକୁ ଆମେ ବାହ୍ୟିକ କ୍ଷୁଦ୍ର କ୍ଷୁଦ୍ର ବସ୍ତୁରେ ଖର୍ଚ୍ଚ କରୁ, କିନ୍ତୁ ତାହା ହେବା କଥା ନୁହେଁ । ମନ ସବୁବେଳେ ବାହାର ବିଷୟ ଆଡ଼କୁ ଧାଇଁ ବୁଲେ; ଫଳରେ ମଣିଷର ସବୁ ପ୍ରକାର ଶକ୍ତିର କ୍ଷୟ ଘଟେ । କୌଣସି ପ୍ରକାରର ବ୍ୟବସ୍ଥା, ନିୟନ୍ତ୍ରଣ କରିବାର କ୍ଷମତା ଆଉ ମଣିଷ ମଧ୍ୟରେ ନ ଥାଏ ।

ମନର ଗନ୍ତାଘରର ପରିବର୍ତ୍ତନ ନ ହେଲେ ଏକାଗ୍ରତା ଆସି ପାରିବ ନାହିଁ । ମନର ଗନ୍ତାଘର ଶୁଦ୍ଧ ହେବା ଦରକାର । କେବଳ ଆସନ ପକାଇ ବସି ପଡ଼ିଲେ ତାହା ମିଳିବ ନାହିଁ । ଏଥିପାଇଁ ଆମର ସବୁ ପ୍ରକାର ଆଚରଣ ଶୁଦ୍ଧ ହେବା ଦରକାର । ଆଚରଣ ଶୁଦ୍ଧ କରିବା ପାଇଁ ତାର ଆଚରଣ ବଦଳାଇବାକୁ ହେବ । ବ୍ୟକ୍ତିଗତ ଲାଭ, ଭାବନା ତୃପ୍ତି ଅଥବା ବାହ୍ୟିକ କଥାବାର୍ତ୍ତା ପାଇଁ ଆଚରଣ କରିବା ଉଚିତ ନୁହେଁ । ଏକାଗ୍ରତା ପାଇଁ ଏ ପ୍ରକାରର ଜୀବନ ଶୁଦ୍ଧିର ପ୍ରୟୋଜନ ।

ଏହାଛଡ଼ା ଜୀବନର ପରିମିତତା ହେଉଛି ଚିତ୍ତର ଏକାଗ୍ରତା ଆଣିବାର ସହାୟକ । ଆମର ସବୁ କାମ ମାପିଚୁପି ହେବା ଦରକାର । ଔଷଧର ବ୍ୟବହାର ପରି ପରିମିତ ଗଣିତ ଶାସ୍ତ୍ରର ରହସ୍ୟ ଆମ ଜୀବନର ସବୁ କାମରେ ପ୍ରୟୋଗ କରିବା ଉଚିତ । ଔଷଧ ଯେପରି ପରିମାଣ ମୁତାବକ ବ୍ୟବହାର କରାଯାଏ ସେହିପରି ଆହାର ନିଦ୍ରା ମଧ୍ୟ ପରିମାଣ ମୁତାବକ ହେବା ଉଚିତ । ସବୁ କ୍ଷେତ୍ରରେ ପରିମାପର ପ୍ରୟୋଜନ । ପ୍ରତ୍ୟେକ ଇନ୍ଦ୍ରିୟ ପାଇଁ ପ୍ରହରୀ ନିଯୁକ୍ତ କରିବା ଆବଶ୍ୟକ । ବେଶୀ ଖାଇଲି ନାହିଁ, ବେଶୀ ସମୟ ଶୋଇ ପଡ଼ିଲି ନାହିଁ ତ ? ସବୁବେଳେ ଏହିପରି ସୂକ୍ଷ୍ମ ବିଚାର କରିବାକୁ ହେବ ।

ଜୀବନରେ ନିୟମବଦ୍ଧତା ଓ ସଂଯମ ଯେପରି ପାଳନ କରାଯାଇପାରିବ ତାହା ଦେଖନ୍ତୁ । ମନ୍ଦ ଜିନିଷ ଦେଖିବେ ନାହିଁ, ମନ୍ଦ ପୁସ୍ତକ ପଢ଼ିବେ ନାହିଁ । ନିନ୍ଦା ବା ପ୍ରଶଂସାରେ କାନ ଦେବେ ନାହିଁ । ଦୋଷଯୁକ୍ତ ବସ୍ତୁତ ଦୂରର କଥା, ନିର୍ଦ୍ଦୋଷ ବସ୍ତୁ ମଧ୍ୟ ଆବଶ୍ୟକତାରୁ ଅଧିକ ଉପଭୋଗ କରିବେ ନାହିଁ । ଫଳାହାର ଶୁଦ୍ଧ ଆହାର । କିନ୍ତୁ ତାହା ମଧ୍ୟ ଯେତେ ଇଚ୍ଛା ସେତେ ଭୋଜନ କରିବା ଉଚିତ ନୁହେଁ । ରସନାର ସ୍ୱେଚ୍ଛାଚାର ଅନ୍ତରର ମାଲିକ ସହ୍ୟ କରିବେ ନାହିଁ । ଇନ୍ଦ୍ରିୟମାନଙ୍କର ଏହି ଭୟ ରହିବା ଉଚିତ ଯେ, ଆମେ ଯଦି ଉଚ୍ଛୃଙ୍ଖଳ ହେବା ତେବେ ଅନ୍ତରର ମାଲିକ ଆମକୁ ନିଶ୍ଚୟ ଶାସ୍ତି ଦେବେ । ଜୀବନର ପରିମିତତାର ଅର୍ଥ ନିୟମିତ ଓ ସଂଯତ ଆଚରଣକୁ ହିଁ ବୁଝାଏ ।

ବହୁତ ଗ୍ରନ୍ଥ ପଢ଼ିବାଠାରୁ ପରିମିତ ଜୀବନ ଯାପନର ଗୁରୁତ୍ୱ ଅନେକ ବେଶୀ । କାରଣ ଏହାଦ୍ୱାରା ଇନ୍ଦ୍ରିୟ ଗୁଡ଼ିକର ଅଭ୍ୟାସ ତିଆରି ହୁଏ । ଇନ୍ଦ୍ରିୟ ମାଧ୍ୟମରେ ଆତ୍ମା ବାହାରେ ପ୍ରକାଶ

ଲାଭ କରେ । ଘର ପାଇଁ କବାଟ ଯେତିକି ଗୁରୁତ୍ୱପୂର୍ଣ୍ଣ, ଦେହ ପାଇଁ ଇନ୍ଦ୍ରିୟ ସମୂହର ଗୁରୁତ୍ୱ ସେତିକି ଗୁରୁତ୍ୱପୂର୍ଣ୍ଣ । ସେଥିପାଇଁ ଇନ୍ଦ୍ରିୟମାନଙ୍କର ପ୍ରତ୍ୟେକଟି ଦୁଆରେ ପ୍ରହରୀ ନ ରହିଲେ ଆତ୍ମା ନଷ୍ଟ ଭ୍ରଷ୍ଟ ହୋଇ ବିପଥଗାମୀ ହେବ, ଧର୍ମଚ୍ୟୁତ ହେବ । ଇନ୍ଦ୍ରିୟ ସମୂହର ପରିସ୍ଥିତି ଏପରି ହେବା ଉଚିତ ଯେ, ଆଖି ଯେପରି ମନ୍ଦ ଜିନିଷ ନ ଦେଖିବ, କାନ ଯେପରି ମନ୍ଦ କଥା ଶୁଣିବାରୁ ବିରତ ହେବ, ଏବଂ ଜିହ୍ୱା ଯେପରି ମନ୍ଦ କଥା କହିବାକୁ ବିରତ ହେବ । ଯେତେବେଳେ ପ୍ରତିଦିନ ଇନ୍ଦ୍ରିୟ ଗୁଡ଼ିକୁ ଏହିପରି ଅନୁଶୀଳନ କରାଯାଏ ସେତେବେଳେ ଯାଇ ଏଇ ଅବସ୍ଥା ଲାଭ କରିବା ସଂଭବ । ହାତ, ଗୋଡ଼, ମନ, କାନ, କଥା, ଆଖି ସବୁ କିଛି ଉପରେ ନିୟନ୍ତ୍ରଣ ରଖନ୍ତୁ । ନିୟନ୍ତ୍ରଣର ଅର୍ଥ ହେଲା, ଏମାନଙ୍କୁ ମନ୍ଦ କାମରୁ ବିରତ କରିବା ଏବଂ ଉତ୍ତମ କାର୍ଯ୍ୟରେ ନିୟୋଜିତ କରିବା । ଏହାରି ନାମ ବୈରାଗ୍ୟ ଏବଂ ବିବେକ । ଗୀତାର ଭାଷାରେ କହିବାକୁ ଗଲେ ଏହାର ନାମ ଅଭ୍ୟାସ ଓ ବୈରାଗ୍ୟ । ଏସବୁ ହେଲା ମନକୁ ଜୟ କରିବାର ସାଧନ ।

ତୃତୀୟତଃ, ସମଦୃଷ୍ଟି ସଂପନ୍ନ ହେବାକୁ ହେବ । ସମଦୃଷ୍ଟିର ଅର୍ଥ ହେଲା ଶୁଭ ଦୃଷ୍ଟି । କଲ୍ୟାଣମୟ ଦୃଷ୍ଟି ଅର୍ଜନ ନ କରିବା ପର୍ଯ୍ୟନ୍ତ ଚିତ୍ତ ଏକାଗ୍ର ହୋଇ ପାରେ ନାହିଁ । ସମଗ୍ର ସୃଷ୍ଟି ମଙ୍ଗଳମୟ ବୋଲି ମନେ ହେବା ଉଚିତ । ମୋ ନିଜ ଉପରେ ଯେପରି ମୋର ବିଶ୍ୱାସ ଅଛି ଠିକ୍ ସେହିପରି ସାରା ସୃଷ୍ଟି ଉପରେ ମୋର ବିଶ୍ୱାସ ଥିବା ଦରକାର । ଏଥିରେ ଭୟର ବିଷୟ ବା କ'ଣ ଅଛି ? ସବୁକିଛି ଶୁଦ୍ଧ ଏବଂ ପବିତ୍ର ।

ବିଶ୍ୱଂ ତଦ୍ ଭଦ୍ରଂ ଯଦବନ୍ତି ଦେବାଃ । ଏହି ବିଶ୍ୱ ମଂଗଳମୟ, କାରଣ ପରମେଶ୍ୱର ସଂପୂର୍ଣ୍ଣ ଭାବରେ ଏହାର ଦେଖାଶୁଣା କରନ୍ତି । ଇଂରେଜ କବି ବ୍ରାଉନିଂ ମଧ ଏହିପରି କଥା କହିଛନ୍ତି ଯେ, 'ଈଶ୍ୱର ଆକାଶରେ ବିରାଜମାନ ହୋଇଛନ୍ତି ବୋଲି ସମଗ୍ର ବିଶ୍ୱ ଠିକ୍ ଠିକ୍ ଭାବରେ ଚାଲିଛି' ।

ବିଶ୍ୱର କେଉଁଠି କିଛି ବିକୃତି ନାହିଁ । ବିକୃତି ଯଦି କେଉଁଠି ରହିଥାଏ ତ ତାହା ଆମର ଦୃଷ୍ଟି ଭିତରେ ଅଛି । ଆମର ଦୃଷ୍ଟି ଯେପରି ହେବ ସୃଷ୍ଟି ମଧ ଆମଠାରେ ସେହିପରି ଭାବରେ ପ୍ରତିଭାତ ହେବ । ମୁଁ ଯଦି ଲାଲ ରଂଗର ଚଷମା ପିନ୍ଧିବା ଆରମ୍ଭ କରିବି, ତେବେ ସମଗ୍ର ସୃଷ୍ଟି ମୋ ନିକଟରେ ଲାଲ ହୋଇ ଦେଖାଯିବ ।

ଏହି ସୃଷ୍ଟି ଶୁଭ, ଏହି ସୃଷ୍ଟି ମଂଗଳ ଜନକ, ଏକଥା ଯଦି ଆମ ମନ ନିଶ୍ଚିତ ଭାବରେ ଗ୍ରହଣ ନ କରେ ତାହାହେଲେ ଚିତ୍ତ ଏକାଗ୍ରତା ଅର୍ଜନ କରିବାରେ ସକ୍ଷମ ହେବ ନାହିଁ । ଯେ ପର୍ଯ୍ୟନ୍ତ ମୋ ମନରେ ଏହି ମନ୍ଦ ଧାରଣା ଥିବ ଯେ ଏହି ସୃଷ୍ଟି କ୍ଷତିକାରକ, ସେ ପର୍ଯ୍ୟନ୍ତ ମୁଁ ଶଙ୍କିତ ଦୃଷ୍ଟିରେ ଚାରିଆଡ଼କୁ ଅନାଉଥିବି । ଯେ ପର୍ଯ୍ୟନ୍ତ ମନ ଭିତରୁ 'ଏକା ମୁଁ ମୋର ରକ୍ଷକ, ବାକି ସବୁ ଭକ୍ଷକ', ଏଇ ଧାରଣା ବାହାରି ନ ଯିବ, ସେ ପର୍ଯ୍ୟନ୍ତ ଏକାଗ୍ରତାର ସାଧନା ସଂଭବ ହେବ ନାହିଁ । ସବୁବେଳେ ସମଦୃଷ୍ଟି ଭାବନା ରକ୍ଷା କରିବା ଏକାଗ୍ରତା ଲାଭର ଉତ୍ତମ ବାଟ । ସବୁ କିଛି ହିଁ ମଂଗଳମୟ, ସବୁ କିଛି ଶୁଭଙ୍କର, ଏ ଭାବରେ ସବୁବେଳେ ଭାବୁଥିଲେ ଚିତ୍ତ ଆପେ ଆପେ ଶାନ୍ତ ହୋଇଯିବ ।

ଘ). ଚିତ୍ତ ଶୁଦ୍ଧି ଓ ଏକାଗ୍ରତା ଲାଭର ପୂର୍ବଭାଗ ହେଉଛି ଏକାଗ୍ରତା । ? ? ?

* ସତ୍ତ୍ୱ ଗୁଣର ବିକାଶ ହେଲେ ମନରେ ପ୍ରସନ୍ନତା ଆସେ ।

* ପ୍ରସନ୍ନ ଚିତ୍ତ ଶୀଘ୍ର ଏକାଗ୍ର ହୁଏ ।

* ବହୁବିଧ ସଂସ୍କାର ଯେପରି ଚିତ୍ତକୁ ମଳିନ ନ କରେ ସ୍ମୃତି-ସଂକର *(ବିଭିନ୍ନ ଜାତିର ମିଶ୍ରଣରେ ଜାତ ହୋଇଥିବା ପ୍ରାଣୀ ଯେପରି ଜାତି ବା ବର୍ଣ୍ଣ ସଂକର ହୁଏ ସେହିପରି ବିଭିନ୍ନ ଭାବନା ଓ କାମନାର ମିଶ୍ରଣରେ ଯେଉଁ ଚିତ୍ତ, ତାହା ସ୍ମୃତି-ସଂକର ହୁଏ) ଯେପରି ହେବାକୁ ନ ଦିଏ ।

ପତଞ୍ଜଳୀ ତାଙ୍କର ଯୋଗସୂତ୍ରରେ ଶୁଚିତାର ଆଭ୍ୟନ୍ତରୀଣ ଅର୍ଥ ବ୍ୟାଖ୍ୟା କରିବାକୁ ଯାଇ ପାଞ୍ଚଟି ଗୁଣର ଉଲ୍ଲେଖ କରିଛନ୍ତି – ସତ୍ତ୍ୱ ଶୁଦ୍ଧି, ସୌମନସ୍ୟ, ଏକାଗ୍ରତା, ଇନ୍ଦ୍ରିୟ ଜୟ, ଆତ୍ମ ଦର୍ଶନ ।

'ସତ୍ତ୍ୱ ଶୁଦ୍ଧି' ର ଅର୍ଥ ହେଉଛି ଆଭ୍ୟନ୍ତରୀଣ ପବିତ୍ରତା । 'ସୌମନସ୍ୟ' ଶବ୍ଦର ଅର୍ଥ ଚିତ୍ତର ପ୍ରସନ୍ନତା । ଶୁଦ୍ଧ ସତ୍ତ୍ୱ ମଣିଷ ହିଁ ଅବଶେଷରେ ଚିତ୍ତର ପ୍ରସନ୍ନତା ଲାଭ କରନ୍ତି । ଯେତେବେଳେ ମନ ଭିତରେ ସତ୍ତ୍ୱ ଗୁଣର ବିକାଶ ହୁଏ, ସେତେବେଳେ ଚିତ୍ତରେ ପ୍ରସନ୍ନତା ଆସେ । ରଜଃ-ତମ ଗୁଣ ଦୁର୍ବଳ ହୋଇ କ୍ଷୀଣ ହୋଇଯାଏ ଏବଂ ପ୍ରାଣ ସାତ୍ତ୍ୱିକ ଭାବନାରେ ପୂର୍ଣ୍ଣ ହୁଏ । (ଏହି ପରି ଭାବରେ) ସେତେବେଳେ ଚିତ୍ତର ଭିତର-ବାହାର ଉଭୟ ଧୌତ ହୋଇଯାଏ ଏବଂ ଚିତ୍ତର ପ୍ରସନ୍ନତା ଲାଭ ହୁଏ ।

ପ୍ରସନ୍ନତାରୁ ଚିତ୍ତର ସମାଧାନ ହୋଇ ନିର୍ମଳତା ଓ ସ୍ୱଚ୍ଛତାର ବିକାଶ ଘଟେ । ଚିତ୍ତରେ ଆଉ କୌଣସି ଆକାଂକ୍ଷା ନ ରହିବା ଫଳରେ ମନୁଷ୍ୟ ନିରାକାଂକ୍ଷ ହୁଏ । ପ୍ରସ୍ଫୁଟିତ ଫୁଲପରି ଚିତ୍ତ ସର୍ବଦା ପ୍ରସନ୍ନତାରେ ପୂର୍ଣ୍ଣ ହୋଇଥାଏ । ନିର୍ମଳତା, ପ୍ରସନ୍ନତା, ସ୍ୱଚ୍ଛତା ଏବଂ ଆଭ୍ୟନ୍ତରୀଣ ଚିତ୍ତ ସମାଧାନ – ଏସବୁ ଗୁଡ଼ିକ ଶୁଚିତାର ଅପରିହାର୍ଯ୍ୟ ଅଂଗ ।

ତାହାହେଲେ ଯେତେ ଦୂର ପର୍ଯ୍ୟନ୍ତ ମଣିଷର ବ୍ୟକ୍ତିଗତ ମାନସିକ ତତ୍ତ୍ୱର ଆଲୋଚନା କରାଯାଏ ସେଥିରେ 'ସୌମନସ୍ୟ'ର ଅର୍ଥ ହେଉଛି ଚିତ୍ତ ପ୍ରସନ୍ନତା । ଆଉ ତାର ବାହ୍ୟିକ ରୂପ ହେଉଛି ସମସ୍ତଙ୍କ ସହିତ ପ୍ରେମ ଓ ସୌଜନ୍ୟପୂର୍ଣ୍ଣ ଆଚରଣ ।

'ଏକାଗ୍ର୍ୟ' ଅର୍ଥାତ 'ଏକାଗ୍ରତା' ଶବ୍ଦଟି ତାପରେ ଆସୁଛି, ଏକଥା ଭାବିବାର କଥା ଯେ, ଶାସ୍ତ୍ରକାର ଶୁଚିତା ବିଷୟରେ ଆଲୋଚନା କରିବାକୁ ଯାଇ ଏକାଗ୍ରତାର ଶକ୍ତି ଯେ କ'ଣ ତାହା ବ୍ୟାଖ୍ୟା କରିଛନ୍ତି । ଆମର ଅନୁଭୂତି ହେଉଛି ସ୍ଥୂଳ। ସେଥିପାଇଁ ଏହା ହୋଇପାରେ ଯେ ଆମେ ପରିଷ୍କାର ପରିଚ୍ଛନ୍ନ ସ୍ଥାନ ଦେଖି, ସବୁଜ ଘାସରେ ଭରା ଖୋଲା ପଡ଼ିଆ ସାମ୍ନାରେ ଥିଲେ ତାକୁ ଦେଖି ଅଥବା କେଉଁଠି ଆବର୍ଜନାହୀନ ନଦୀ ଦେଖି ତାହା ତୀରରେ ଯାଇ ରହୁ । ଏସବୁ ସ୍ଥାନରେ ବସିବା ପରେ ସ୍ୱାଭାବିକ ଭାବରେ ଚିତ୍ତ ଅନ୍ତର୍ମୁଖୀ ହୋଇଯାଏ । ଏମିତିରେ ଚିତ୍ତ ତ ବାହ୍ୟ ବସ୍ତୁ,

କିନ୍ତୁ ବୃତ୍ତି ଅନ୍ତର୍ମୁଖୀ ହୁଏ ଏବଂ ସେଥିରୁ ଏକାଗ୍ରତା ସହଜରେ ସାଧିତ ହୁଏ । ଏହା ଅନୁଭୂତିର ବିଷୟ । ସେଥିପାଇଁ ଧ୍ୟାନ କରିବା ସକାଶେ କେଉଁ ପ୍ରକାରର ସ୍ଥାନ ହେବା ଉଚିତ ଶାସ୍ତ୍ରରେ ତାହା ବର୍ଣ୍ଣନା କରା ହୋଇଛି । ନଦୀ କୂଳ, କୌଣସି ପବିତ୍ର ସ୍ଥାନ – ଏସବୁ ସ୍ଥାନ ଏକାଗ୍ରତା ଲାଭ ପାଇଁ ଅତ୍ୟନ୍ତ ଅନୁକୂଳ । ଏପ୍ରକାର ଅନୁଭୂତିରୁ କୁହାଯାଇଛି –

"ଉପହ୍ୱରେ ଗିରିଣାଂ ସଂଗଥେ ଚ
ନଦୀନାଂ ଧିୟା ବିପ୍ରୋ ଅଜାୟତ ।

ଅନୁଭବ ସିଦ୍ଧ ଜ୍ଞାନରୁ କୁହାଯାଏ ଯେ, ଯେଉଁଠାରେ ନଦୀର ସଂଗମସ୍ଥଳ, ପାହାଡ଼ର ଅଙ୍କାବଙ୍କା ଦୁର୍ଗମ ପଥ, ସେ ସବୁ ସ୍ଥାନରେ ସହଜରେ ଧ୍ୟାନ ପାଇଁ ପ୍ରେରଣା ମିଳିଥାଏ ।

ସାଧାରଣ ଅଭିଜ୍ଞତା ହେଉଛି ଯେ, ନିର୍ମଳତା ସ୍ୱାଭାବିକ ଭାବରେ ଏକାଗ୍ରତା ଆଡ଼କୁ ନେଇଯାଏ । କିନ୍ତୁ ଏହା ହେଲା ସ୍ଥୂଳ ନିର୍ମଳତା ଓ ସ୍ଥୂଳ ଅନୁଭୂତି ।

ଯେଉଁଠାରେ 'ସୌମନସ୍ୟ' ବା ଚିତ୍ତ ପ୍ରସନ୍ନତା ଅଛି ସେହିଠାରେ ଏକାଗ୍ରତା ଆସେ । ଏଥିପାଇଁ ଗୀତାରେ କୁହାଯାଇଛି – ପ୍ରସନ୍ନ ଚେତସୋ ହ୍ୟାସୁ ବୁଦ୍ଧି ପର୍ଯ୍ୟବତିଷ୍ଠତେ ।

ଯାହାର ଚିତ୍ତ ପ୍ରସନ୍ନ ତାର ବୁଦ୍ଧି ଶୀଘ୍ର ସ୍ଥିର ହୁଏ, ଚିତ୍ତ ପ୍ରସନ୍ନ ଥିବା ହେତୁ ଏ କାର୍ଯ୍ୟ ବେଶୀ ସମୟ ଲାଗେ ନାହିଁ ।

ଅନେକାଗ୍ରତା ଆସେ । ଚିତ୍ତରେ ଅନେକ ପ୍ରକାରର ଆକର୍ଷଣ ପାଇଁ, ଯେଉଁଠାରେ ଚିତ୍ତ ବିଭିନ୍ନ ପ୍ରକାରର ସଂସ୍କାର-ଜାଲରେ ବାନ୍ଧି ହୋଇଛି ସେଠାରେ ଏହି ସବୁ ସଂସ୍କାର ଚିତ୍ତରେ ମଳିନତା ଭରି ଦିଏ । କିଛି ଦର୍ଶନ, ଶ୍ରବଣ, ସଂଗଲାଭ, ଗ୍ରନ୍ଥପାଠ, ପୂର୍ବଜନ୍ମ ବା ବଂଶାନୁକ୍ରମିକ ଅସଂଖ୍ୟ ପ୍ରକାରର ସଂସ୍କାର ମନ ଉପରେ କିଛି ନା କିଛି ମଳିନତା ବିସ୍ତାର କରେ । ଏହି ସବୁ ସଂସ୍କାରର ପ୍ରଭାବ ସେହି ମୁହୂର୍ତ୍ତରେ ତ ପଡ଼େ, ଦୀର୍ଘଦିନ ପରେ ମଧ୍ୟ ତାହା ସ୍ମୃତି ମଧ୍ୟରେ ରହିଯାଏ । ମଣିଷ ଯେଉଁ ପ୍ରକାରର ସ୍ୱପ୍ନ ରାତିରେ ଦେଖେ ତାହା ମଧ୍ୟ ଏପ୍ରକାର ସ୍ମୃତି । ଆଉ ଜାଗ୍ରତ ଅବସ୍ଥାରେ ଯେଉଁ ସବୁ ଅତୀତ ଘଟଣାର କଥା ସ୍ମରଣ ହୁଏ ତାକୁ ମଧ୍ୟ ଗୋଟିଏ ପ୍ରକାରର ଜାଗ୍ରତ ଅବସ୍ଥାର ସ୍ୱପ୍ନ ବୋଲି ଆଖ୍ୟା ଦିଆଯାଏ । ଏହି ଯେଉଁ ସଂସ୍କାର ପୂର୍ଣ୍ଣ ମନ ତାର ପ୍ରଭାବରେ ମନ ଚାରିଆଡ଼େ ଘୁରି ବୁଲେ ।

ମଣିଷ ଏକାଗ୍ରତାଠାରୁ ବିଚ୍ଛିନ୍ନ ହୋଇଯାଏ । ଏହାର କାରଣ ହେଉଛି, ମନ ଉପରେ ନାନା ପ୍ରକାରର ସ୍ମୃତିର ଲେପ ଦିଆ ହୋଇଥାଏ । କିଛି ତ ପୂର୍ବଜନ୍ମର ସ୍ମୃତି ଥାଏ – ଯାହାର ସଂଶୋଧନ କରିବା ଆମ ପକ୍ଷରେ ଅସମ୍ଭବ । ବିଭିନ୍ନ ପ୍ରକାର ସଂଯୋଗ ହେତୁ ମନ ଭିତରେ ଯେଉଁ ସବୁ ସଂସ୍କାର ଜନ୍ମ ନିଏ ତା ପାଇଁ ମନ ଚାରିଆଡ଼େ ଦୌଡ଼ା ଦଉଡ଼ି କରେ । ଚିତ୍ତ ବହୁବିଧ ସ୍ମୃତିର ଆଶ୍ରୟସ୍ଥଳ । ମନରେ ସ୍ମୃତି-ସଂକର (ବର୍ଣ୍ଣ-ସଂକର ପରି) ଜାତ ହୁଏ । ଏଥିପାଇଁ ଅଶୁଚି-ମନ ପରିଷ୍କାର ରହେ ନାହିଁ । ଏହି ସବୁ ସଂସ୍କାରକୁ ଯଦି ଆମେ ମନରୁ ଧୋଇ ଦେବାକୁ ସମର୍ଥ ହେବା ତେବେ ଚିତ୍ତ ଏକାଗ୍ର ହେବାକୁ ବେଶୀ ସମୟ ଲାଗିବ ନାହିଁ ।

## ୬). କୌଣସି ରୂପ ରଂଗ ଯେପରି ନ ଲାଗେ

* ପୁଣ୍ୟ କର୍ମର ପ୍ରଭାବରେ ଏବଂ କୌଣସି ବସ୍ତୁର ଅଭାବରୁ ଚିତ୍ତ ନିର୍ଲିପ୍ତ ରହିବା ।
* ମନରେ କୌଣସି ମଇଳା ନାହିଁ କିମ୍ବା କୌଣସି ରଂଗ ମଧ୍ୟ ନାହିଁ ।

ମନରେ ଅନେକ ପ୍ରକାରର ମଇଳା ଥାଏ । ଏପରି ନୁହେଁ ଯେ, ଧଳା ରଂଗର ଲୁଗା ଉପରେ କଳା ରଂଗର ଦାଗ ଲାଗିଲେ ଯାଇ ତାକୁ ମଇଳା କୁହାଯିବ । ନାଲି ହଳଦୀ ଦାଗକୁ ମଧ୍ୟ ମଇଳା କୁହାଯାଏ । କେହି କେହି ଲୋକ ଯେପରି ନାଲି-ହଳଦୀ ରଂଗର ଲୁଗା ପସନ୍ଦ କରନ୍ତି, ସେହିପରି ନିଜ ମନ ଉପରେ ମଧ୍ୟ କିଛି ରଂଗ ଲଗାଇବାକୁ କେହି କେହି ଭଲ ପାଆନ୍ତି । ଏହି ରଂଗ ଦେଖି ସେମାନେ ଖୁସୀ ହୁଅନ୍ତି । କିନ୍ତୁ ଏହି ପ୍ରଫୁଲ୍ଲତା ଯେ ମଳିନତା, ଏକଥା ବୁଝିବାକୁ ହେବ । ପିଲାମାନେ ପରୀକ୍ଷାରେ ଉତ୍ତୀର୍ଣ୍ଣ ହେଲେ ଆନନ୍ଦିତ ହୁଅନ୍ତି । ତାହା ମଧ୍ୟ ମଇଳା । କାରଣ ତାର ଅର୍ଥ ହେଉଛି ଯେ ଯଦି ପରୀକ୍ଷରେ ସଫଳ ନ ହୋଇଥାନ୍ତା ତେବେ ଦୁଃଖୀ ହୋଇଥାନ୍ତା । ଅସଲ କଥା ହେଉଛି ଯେ, ମନରେ ଯେତେବେଳେ ରଂଗ ଲାଗିଥାଏ ସେତେବେଳେ ତାକୁ ରଂଗମୟ ଓ ଖୁସୀ ମନେ ହୁଏ । କିନ୍ତୁ ରଂଗ ଯଦି ଟିକିଏ କମି ଯାଏ ତାହାହେଲେ ମନରେ ଖୁସି ରହେ ନାହିଁ । ସେଥିପାଇଁ ଆମ ମନରେ ମଇଳା ଯେପରି ନ ଜମେ ଏବଂ ରଂଗ ମଧ୍ୟ ଯେପରି ନ ଲାଗେ ।

ମୁଁ ପ୍ରାୟ ସୁଗନ୍ଧ ଓ ଦୁର୍ଗନ୍ଧର ଉଦାହରଣ ଦେଇଥାଏ, ବାସ୍ତବରେ ଦୁଇଟି ଗନ୍ଧ ହିଁ କ୍ଷତିକାରକ, କିନ୍ତୁ ମଣିଷର ଘ୍ରାଣେନ୍ଦ୍ରିୟ ପକ୍ଷରେ ସୁଗନ୍ଧ ବିରୁଦ୍ଧରେ କୌଣସି ଅଭିଯୋଗ ନାହିଁ । କେବଳ ଦୁର୍ଗନ୍ଧ ବିରୁଦ୍ଧରେ ଅଭିଯୋଗ ଥାଏ । କିନ୍ତୁ ମୋର ନାକ ଏପରି ଭାବରେ ତିଆରି ହୋଇଛି ଯେ ସୁଗନ୍ଧ ବିରୁଦ୍ଧରେ ମଧ୍ୟ ଅଭିଯୋଗ ହୁଏ । ନାକରେ ଯେତେବେଳେ ସୁଗନ୍ଧ ପ୍ରବେଶ କରେ ସେତେବେଳେ ତାର ପ୍ରଭାବରୁ ମସ୍ତିଷ୍କ ଶୂନ୍ୟ ହୋଇଯାଏ । କ୍ଲୋରଫର୍ମ କି ଜିନିଷ ? ଏହା ଗୋଟିଏ ପ୍ରକାରର ଗନ୍ଧ ଯାହା ମସ୍ତିଷ୍କକୁ ଶୂନ୍ୟ (ଖାଲି) କରି ଦିଏ । ତେଣୁ ସୁଗନ୍ଧ ଗୋଟିଏ ପ୍ରକାରର ହାଲୁକା କ୍ଲୋରଫର୍ମ । କୌଣସି ପ୍ରକାରର ଗନ୍ଧ ମସ୍ତିଷ୍କର ଚିନ୍ତା କରିବାର–କ୍ଷମତା କମେଇ ଦିଏ । ଏଥିପାଇଁ ସୁଗନ୍ଧ ବା ଦୁର୍ଗନ୍ଧ କୌଣସିଟିର ପ୍ରୟୋଜନ ନାହିଁ । ଏକଦମ୍ ପରିଷ୍କାର ପବନ ଦରକାର । ସଂପୂର୍ଣ୍ଣ ପରିଚ୍ଛନ୍ନ ପରିବେଶ ହେଲେ ଯାଇ ବୁଦ୍ଧି ସତେଜ ହୁଏ ।

ମଇଳା-ଶୂନ୍ୟ ମନ ହେବା କଠିନ ବ୍ୟାପାର । କାମ-କ୍ରୋଧ ଇତ୍ୟାଦିର ବିକାର ମନରେ ଆସିବ ନାହିଁ – ଏ ପ୍ରକାର ଅବସ୍ଥାରେ ପହଂଚିବା କଠିନ ସାଧନାର ବ୍ୟାପାର । କିନ୍ତୁ ଏ ପ୍ରକାର ସାଧନା ହେବା ଉପଯୁକ୍ତ କାମ । ଯେଉଁ କାମ କରିବା କଠିନ ତାହା ସଂପାଦନ କରିବାରେ ମଣିଷ ଜନ୍ମର ସାର୍ଥକତା ରହିଛି । ଚିତ୍ତ ଉପରେ କୌଣସି ପୁଣ୍ୟକାମ, ସତ୍‌କାର୍ଯ୍ୟ, ଧର୍ମ କାର୍ଯ୍ୟର ମଧ୍ୟ ପ୍ରଭାବ ଯେପରି ନ ପଡ଼େ ଏବଂ କୌଣସି ବସ୍ତୁର ଅଭାବରେ ଚିତ୍ତ ଯେପରି ଦୁଃଖିତ ମଧ୍ୟ ହେବ ନାହିଁ, ଏହା ହେଲା ରଂଗ ବିହୀନ ଅବସ୍ଥାର ସ୍ଥିତି । ପୁଣ୍ୟ କାର୍ଯ୍ୟର ପ୍ରଭାବରୁ ଚିତ୍ତକୁ ମୁକ୍ତ

ରଖିବା ଖୁବ୍ କଠିନ ଅବସ୍ଥା । ଯାହା ହେଉ, ଚିତ୍ତ ଉପରେ ଏପ୍ରକାର ରଂଗ ଥିଲେ ଆମେ ଯେପରି ସଂଗେ ସଂଗେ ତାକୁ ଦୂର କରି ଦେବା । ସାର କଥା ହେଉଛି ଯେ — ସ୍ଥିରତା, ସ୍ଥିରତା ବୋଲି ଭାବିଲେ ଚିତ୍ତର ସ୍ଥିରତା ଆମ ଅଧୀନକୁ ଆସିବ ନାହିଁ, ଯେତେବେଳ ପର୍ଯ୍ୟନ୍ତ ଚିତ୍ତ ସ୍ୱଚ୍ଛ ନ ହୋଇଛି ସେତେ ପର୍ଯ୍ୟନ୍ତ ଚିତ୍ତର ସ୍ଥିରତା ଆସିବ ନାହିଁ, ଚିତ୍ତ ନିର୍ମଳ ହେବା ପରେ ଯାଇ ଭିତରୁ ଶାନ୍ତି ଲାଭ ହେବ । ସେତେବେଳେ ଆଉ ମନ ଚାରିଆଡ଼କୁ ଦୌଡ଼ିବାକୁ ଇଚ୍ଛା କରିବ ନାହିଁ ।

ଚ). ଚିତ୍ତ ଶୁଦ୍ଧ କରିବାର ପଦ୍ଧତି କଣ ?

* ଯେଉଁଠାରେ ଦ୍ୱେଷ ଭାବ ବଢ଼ିବ ସେଠାରେ ପ୍ରେମଭାବ ବଢ଼ାଇବା ।
* ସୁଖୀ ଲୋକ ପ୍ରତି ମୈତ୍ରୀ, ଦୁଃଖି ଲୋକ ପ୍ରତି କରୁଣା, ପୁଣ୍ୟ କାମରେ, ଆନନ୍ଦ, ପାପ କାର୍ଯ୍ୟରେ ଉପେକ୍ଷା ।
* ନିଜର ଗୁଣ ବଢ଼ାଇବା ।
* ଯେଉଁ ଯେଉଁ ସ୍ଥାନରେ ବାସନା ଭ୍ରମଣ କରେ ସେହି ସେହି ସ୍ଥାନରେ ନାରାୟଣଙ୍କୁ ଦର୍ଶନ କରିବା ।
* ସର୍ବଦା ନାମ ସ୍ମରଣ କରିବା ।

ଚିତ୍ତ ଶୁଦ୍ଧି ପାଇଁ ଧର୍ମଶାସ୍ତ୍ରରେ ଗୋଟିଏ ଉପାୟ ଉଲ୍ଲେଖ କରାଯାଇଅଛି ଯାହାକୁ କି ପ୍ରତିପକ୍ଷ ଭାବନା କୁହାଯାଏ । ଏହାକୁ ନେଇ ମୁଁ ନିଜେ ଅନେକ ଚିନ୍ତା କରିଛି, ଏବଂ ଆଚରଣରେ ପ୍ରୟୋଗ କରିବା ପାଇଁ ମଧ ଚେଷ୍ଟା କରିଛି । କ୍ରୋଧର ପ୍ରତିପକ୍ଷ ଭାବନା କଣ ? ଯାହା ଉପରେ ମନରେ କ୍ରୋଧ ଆସୁଛି, ତା ପାଖକୁ ଯିବା, ତା ପାଖରେ କ୍ଷମା ମାଗିଲେ କ୍ରୋଧ କମିଯାଇ ପାରେ । ମନେ ମନେ କାହାକୁ ମାରିବାର ଇଚ୍ଛା ହୋଇଛି ସେତେବେଳେ ତା ପାଖକୁ ଯିବା ଉଚିତ, ମନର ଶ୍ରଦ୍ଧା ଦ୍ୱାରା ତାକୁ କିଛି ସାହାଯ୍ୟ କରିବା । ଏହା ହେଲା ଗୋଟିଏ ପଦ୍ଧତି । ତାର ଫଳ ମଧ ମିଳେ । କିନ୍ତୁ ମୋର ନିଜର ଅନୁଭୂତିରୁ ମୁଁ ଜାଣିଛି — ଏହାର ପରିଣାମ — 'ନେଗେଟିଭ୍' — ନକାରାତ୍ମକ ଭାବରେ ଆସିଥାଏ । ଏଥିରେ ଦ୍ୱେଷାତ୍ମକ ଚିନ୍ତାର ଅବସାନ ଘଟିବ । ମୋର କାହାରି ସହିତ ବିରୋଧ ଭାବ ନାହିଁ, କିନ୍ତୁ ମୋର ହୃଦୟ ପ୍ରେମରେ ପରିପୂର୍ଣ୍ଣ ହୋଇଯାଇଛି — ଏପ୍ରକାର 'ପଜିଟିଭ୍' ଭାବାତ୍ମକ ଉପଲବ୍ଧି ମନକୁ ଆସିବ ନାହିଁ । ମନରେ ଯେଉଁ ଦୋଷ ଥିଲା ତାହା ବାହାରି ଯିବାର ଅନୁଭବ ହୁଏତ ମନକୁ ଆସିପାରେ । କିନ୍ତୁ ହୃଦୟ ପ୍ରେମରେ ପୂରିଗଲା ଏ ପ୍ରକାର ଅନୁଭୂତି ଆସିବ ନାହିଁ । ଏକଥା ମୋ ନିଜର ଅନୁଭୂତିରୁ କହୁଛି । ପ୍ରତ୍ୟେକର ଅନୁଭୂତି ସମାନ ହେବ, ଏପରି କିଛି କଥା ନାହିଁ । ମୋର ନିଜର ବ୍ୟକ୍ତିଗତ ଅନୁଭବରୁ ଏକଥା କୁହା ଯାଇପାରେ ଯେ, ତାର ପରିଣାମ ଅଭାବାତ୍ମକ ହେବ । କୌଣସି କୌଣସି ବ୍ୟକ୍ତି ଏପରି କହିଥାନ୍ତି ଯେ, ଆମର କାହାରି ସହିତ ବିରୋଧ ନାହିଁ । ଏ କଥାରୁ କ'ଣ ଜଣାଗଲା ? ବିରୋଧ ନାହିଁ କିନ୍ତୁ ମନ କ'ଣ ପ୍ରେମରେ ପରିପୂର୍ଣ୍ଣ ? କାହାକୁ ମାରିବା ପାଇଁ ଯିବା ନାହିଁ କିନ୍ତୁ

କାହାକୁ ସାହାଯ୍ୟ କରିବାକୁ ଯିବା ମନରେ କ'ଣ ଏପ୍ରକାର ଭାବନା ଅଛି କି ?

ପୁଣି ଶାସ୍ତ୍ରକାର ମାନେ ଆଉ ଗୋଟିଏ ଉପାୟ କହିଛନ୍ତି । ବାବା (ବିନୋବା) ମଧ୍ୟ ତା ଉପରେ ଅନୁଶୀଳନ କରିଛନ୍ତି । ଚାରିପ୍ରକାର ଭାବନା ରହିଛି । ତାହା ହେଲା – ମୈତ୍ରୀ, କରୁଣା, ଆନନ୍ଦ ଓ ଉପେକ୍ଷା । ଯେଉଁ ଲୋକମାନେ ସୁଖୀ ତାଙ୍କ ସହିତ ମୈତ୍ରୀ ବଜାୟ ରଖିବାକୁ ହେବ । ଦୁଃଖି ଲୋକ ସହିତ କରୁଣାର ସଂପର୍କ ରଖିବାକୁ ହେବ । ଯଦି କେହି ପୁଣ୍ୟ କାମ କରିଥାଏ ତେବେ ସେଥିରେ ଆନନ୍ଦ ପ୍ରକାଶ କରିବାକୁ ହେବ । ପାପକାମ କଲେ ସେଥିପ୍ରତି ମନ ନ ଦେଇ ତାହାକୁ ଉପେକ୍ଷା କରିବାକୁ ହେବ । କାହାରି ସୁଖ ଦେଖିଲେ ତା ପ୍ରତି ମୈତ୍ରୀ ଭାବନା, ଦୁଃଖ ଦେଖିଲେ କରୁଣା, ପୁଣ୍ୟ କାମ ହେଲେ ଆନନ୍ଦ ଓ ପାପ ଦେଖିଲେ ଉପେକ୍ଷା କରିବା ଉଚିତ ।

ବାବାଙ୍କ ଜୀବନରେ ଏହାର ମଧ୍ୟ ପ୍ରୟୋଗ ହୋଇଛି । ଏହାଦ୍ୱାରା ସାଧାରଣ ଭାବରେ ଚିତ୍ତଶୁଦ୍ଧି ହୋଇଥାଏ । ଅଭାବାତ୍ମକ (ନେଗେଟିଭ୍) ଠାରୁ ସଦର୍ଥକ (ପଜିଟିଭ୍) । କିନ୍ତୁ ଧ୍ୟାନ ପାଇଁ ଆମର ଯେଉଁ ସବୁ ବ୍ୟକ୍ତିଗତ ଅସୁବିଧା ଅଛି ସେଗୁଡ଼ିକର ଉତ୍ତର ଏଥିରୁ ମିଳିବ ନାହିଁ । ଧ୍ୟାନ ବାବଦରେ ସମସ୍ତଙ୍କ କ୍ଷେତ୍ରରେ ଯେଉଁ ସବୁ ଅସୁବିଧା ହୋଇଥାଏ, ଯାହା ମୋର ମଧ୍ୟ ହୋଇଛି ତାର ଉତ୍ତର ମିଳିବ । କିନ୍ତୁ ମୋର କେତେଗୁଡ଼ିଏ ନିଜସ୍ୱ ଅସୁବିଧା ଅଛି ଯେଉଁଥି ପାଇଁ ଧ୍ୟାନରେ ବାଧା ଜନ୍ମି ଥାଏ । ମୋର ନିଜସ୍ୱ ବ୍ୟକ୍ତିଗତ ଯେଉଁ ସବୁ ସମସ୍ୟା ରହିଛି ତାହା ଦୂର ହୁଏ ନାହିଁ । ବିରୁଦ୍ଧ ଭାବନାର ଯେଉଁ ପରିଣାମ ତାହା ହେଉଛି ଅଭାବାତ୍ମକ (ନେଗେଟିଭ୍) । ଏହାର ପରିଣାମ ଅଭାବାତ୍ମକ ନୁହେଁ (ପଜିଟିଭ୍) । କିନ୍ତୁ ଏହା ସମସ୍ତଙ୍କ ପକ୍ଷରେ ଏକାପ୍ରକାରର, ମୋ ପାଇଁ ବିଶେଷ କିଛି ନୁହେଁ । ମୋର ନିଜସ୍ୱ ସମସ୍ୟା ଗୁଡ଼ିକୁ ବିଶେଷ ସମସ୍ୟା ରୂପେ କୁହାଯାଏ, ସେଥିପାଇଁ କ'ଣ କରିବାକୁ ହେବ ?

ମୁଁ ନିଜେ ଗୋଟିଏ ଅନୁସନ୍ଧାନ ପ୍ରଣାଳୀ ଉଦ୍ଭାବନ କରିଛି । ମୋ ବିଚାରରେ ଅନ୍ୟର ଦୋଷ ଦେଖିବା ଉଚିତ ନୁହେଁ । ନିଜର ଦୋଷ ମଧ୍ୟ ଦେଖିବା କଥା ନୁହେଁ । ଦୋଷର ତ ଶେଷ ନାହିଁ । କିନ୍ତୁ ଗୋଟିଏ ଅଧେ ଗୁଣ ତ ଅଛି । ପରମେଶ୍ୱର ଏପରି ଗୋଟିଏ ମଣିଷ ତିଆରି କରି ନାହାନ୍ତି, ଯାହାଙ୍କ ମଧ୍ୟରେ ଗୋଟିଏ ଅଧେ ଭଲ ଗୁଣ ନାହିଁ । ପରମେଶ୍ୱରଙ୍କ ଅଂଶ ସ୍ୱରୂପ ପ୍ରତ୍ୟେକଙ୍କ ମଧ୍ୟରେ ଗୁଣ ଅଛି । କାହା ମଧ୍ୟରେ ଦୟା, କାହା ମଧ୍ୟରେ ପ୍ରେମ, କାହା ମଧ୍ୟରେ ଶୌର୍ଯ୍ୟ, କାହା ମଧ୍ୟରେ ସାହସ, କାହା ମଧ୍ୟରେ ଉତ୍ସାହ ଇତ୍ୟାଦି ଇତ୍ୟାଦି । ସେଥିପାଇଁ ମୁଁ ସ୍ଥିର କରିଛି ଯେ ନିଜର ଗୁଣ ମଧ୍ୟ ଦେଖିବି, ଅନ୍ୟର ଗୁଣ ବି ଦେଖିବି । ମୋ ଭିତରେ କେଉଁ ଧରଣର ଗୁଣ ଅଛି । ମୁଁ ଦେଖୁଛି ମୋ ମଧ୍ୟରେ କରୁଣା ଗୁଣ ଅଛି । ଏହି କରୁଣାକୁ ବଢ଼େଇ ଯିବାକୁ ହେବ । ପ୍ରତିଦିନ ଏପରି ସାଧନା କରିବାକୁ ହେବ ଯେପରି କାଲିର କରୁଣା ଠାରୁ ଆଜି ମୋ ମନରେ ଅଧିକ କରୁଣା ବୃଦ୍ଧି ପାଇବ ।

ହୋମିଓପ୍ୟାଥି ଔଷଧକୁ ଯେପରି ହଲାଇବା ପରେ ବ୍ୟବହାର କରନ୍ତି, ଆଉ ଏଇ ହଲାଇବା ଫଳରେ ଔଷଧର ଗୁଣ ବଢ଼ି ଯାଏ ସେହିପରି ଆମର ନିଜ ଗୁଣକୁ ମଧ୍ୟ ବଢ଼େଇ ଯିବା

ଦରକାର । କେତେ ପର୍ଯ୍ୟନ୍ତ ବଢ଼େଇବା ? ଈଶ୍ୱରଙ୍କର କରୁଣା ଯେତେ ପର୍ଯ୍ୟନ୍ତ ଅଛି ସେତେ ପର୍ଯ୍ୟନ୍ତ । ଈଶ୍ୱରଙ୍କ କରୁଣା ହେଉଛି ଚରମ ପର୍ଯ୍ୟାୟର । ମୋର କରୁଣାର ସ୍ତର ହେଉଛି ପ୍ରାଥମିକ । କିନ୍ତୁ ମୋର ନିଜ ବାଟଟି କିପରି ? ମୋର କ୍ଷୁଦ୍ର କରୁଣା ଠାରୁ ଈଶ୍ୱରଙ୍କର ମହାନ୍ କରୁଣା ପର୍ଯ୍ୟନ୍ତ ଲମ୍ବା ରାସ୍ତା ଯାଇଛି । ଏଠାରେ ମୋର କରୁଣା ବିନ୍ଦୁ ଆଉ ସେପଟେ ରହିଛି ପାହାଡ଼ ପ୍ରମାଣ ଈଶ୍ୱରଙ୍କ କରୁଣା । ଏହି ବିନ୍ଦୁରୁ – ସେହି ପାହାଡ଼ ପର୍ଯ୍ୟନ୍ତ ମୋର ଯାତ୍ରା ପଥ । ଗୋଟିଏ ଗାର ଟଣା ହୋଇ ଯାଉ, ଏହା ହିଁ ହେଲା ମୋର ନିଜ ବାଟ । ଏହି ବାଟ ଦେଇ ଯିବା ଆସିବା କରିବାକୁ ହେବ । କି ପ୍ରକାର ଅନୁଭବ ହେବ ? ଦିନକୁ ଦିନ ଗୁଣ ବଢ଼ି ଚାଲିବ ଏବଂ ପରମେଶ୍ୱରଙ୍କ ନିକଟରେ ପହଂଚି ଯାଉଛି ଏହି ଅନୁଭୂତି ମିଳିବ । ଏସବୁ କ୍ଷେତ୍ରରେ କେହି ଆଗେଇ ଯିବେ, କେହି ବା କ୍ରମଶଃ ଉପରକୁ ଉଠିଯିବେ । ମୁଁ ତାଙ୍କର ପାଖେ ପାଖେ ଚାଲିଛି । ଏହାକୁ ପର୍ବତାରୋହଣ କୁହାଯାଏ । ପର୍ବତର ବିଭିନ୍ନ ଅଂଶ ଅଛି । ଅନେକ ଢ଼ାଲୁ ଅଂଶ ଦେଖାଯିବ । ଗୋଟିଏ ଢ଼ାଲୁ ପାର ହୋଇଗଲେ ସମ୍ମୁଖରେ ଆଉ ଗୋଟିଏ ଶିଖର ଦେଖାଯିବ । ଏ ଶିଖର ପାରିହେଲେ ଆଉ ଗୋଟିଏ ଶିଖର । ଏପରି ପାଂଚ, ସାତ, ଦଶ ଦଶ ଶିଖର ଦେଖାଯିବ । ଅବଶେଷରେ ଶିଖରରେ ପହଂଚିବାକୁ ହେବ । ଏପରି ଭାବରେ ମଣିଷ ପାହାଚ ପାହାଚ ଅତିକ୍ରମ କରି ପ୍ରଗତି ପଥରେ ଆଗେଇ ଯିବ । ଭଗବାନ ଏହିପରି କୌଣସି ପାହାଡ଼ ନୁହନ୍ତି ଯେ ତାଙ୍କୁ ଗୋଟିଏ ସୀମା ରେଖାରେ ଆବଦ୍ଧ କରାଯାଇ ପାରିବ । ତାଙ୍କର କୌଣସି ସୀମା ନାହିଁ, ସୀମା ଉପରେ ତାଙ୍କ ସ୍ଥାନ । ଏଥି ପାଇଁ ନିରନ୍ତର ସାଧନା କରିଯିବା ଦରକାର । ଏହା ଫଳରେ ଚିର ପୁଷ୍ଟି ଲାଭ କରିବ ତାଛଡ଼ା ଧ୍ୟାନ ସମୟରେ ଯେଉଁ ସବୁ କଷ୍ଟ ଅନୁଭୂତ ହେବ, ତାହା ଆଉ ରହିବ ନାହିଁ । ଏକାଗ୍ରତା ଆସିଯିବ ।

ତାହା ହେଲେ, ତିନୋଟି ବକ୍ତବ୍ୟ ହେଉଛି –

୧. (ନେଗେଟିଭ୍) ଅଭାବାତ୍ମକ ପରିଣାମଯୁକ୍ତ ସାଧନା ।

୨. (ପଜିଟିଭ୍) ଭାବାତ୍ମକ ବା ସଦର୍ଥକ କିନ୍ତୁ ନିଜ ପାଇଁ ନୁହେଁ ସାଧାରଣ ଭାବରେ ଫଳପ୍ରଦ ସାଧନା ।

୩. ନିଜ ପାଇଁ ବିଶେଷ ସାଧନା ।

ଚିତ୍ତ ଶୁଦ୍ଧିର ପ୍ରଚେଷ୍ଟା ଦୁଇ ପ୍ରକାରର ହୋଇପାରେ । ପ୍ରଥମ ଶ୍ରେଣୀର ସାଧନାରେ ଚିତ୍ତରେ ଯେଉଁ ଆବର୍ଜନା ଜମା ହୋଇଛି ତାହାକୁ ଧୋଇଦେବ । ଥରେ ଧୋଇ ଦେଲା ପରେ ମଧ୍ୟ ଯଦି ପୁଣି ଦେଖାଯାଏ ତାହାହେଲେ ଦ୍ୱିତୀୟ ଥର ପାଇଁ ଧୋଇ ଦେବାକୁ ହେବ । ତୃତୀୟ ଥର ଦେଖାଦେଲେ ତୃତୀୟ ଥର ପାଇଁ ମଧ୍ୟ ଧୋଇବାକୁ ହେବ । ମନରେ କେଉଁ କେଉଁ ପ୍ରକାରର ମଇଳା ଜମିଛି ତାହାକୁ ଭଲ ଭାବରେ ପର୍ଯ୍ୟବେକ୍ଷଣ କରି ଗୋଟି ଗୋଟି କରି ଧୋଇ ଦିଅ । ଦ୍ୱିତୀୟ ପ୍ରକାର ହେଉଛି ଚିତ୍ତକୁ ବିଚ୍ଛିନ୍ନ (ବିଦୀର୍ଣ୍ଣ) କରିଦିଅ । ଲୁଗା ଗୋଟିଏ ଜାଗାରେ ଫାଟିଗଲେ ତାକୁ ସିଲାଇ କରାଗଲା, ଅନ୍ୟ ଜାଗାରେ ବି ଯଦି ଛିଣ୍ଡି ଗଲା ତାହାହେଲେ ତାକୁ ମଧ୍ୟ ସିଲେଇ କରାଗଲା, ଏହା ଗୋଟିଏ ବାଟ । ଅନ୍ୟ ରାସ୍ତା ହେଉଛି ଏହି ଲୁଗାକୁ ଫୋପାଡ଼ି ଦେବା । ଗୋଟିଏ ହେଲା ଯୋଗ ଅନ୍ୟଟି ହେଲା ସନ୍ୟାସ ।

ଆମର ପୂର୍ବଜନ୍ମର କଥା ମନେ ପଡ଼େ ନାହିଁ, ଏହା ଈଶ୍ୱରଙ୍କର ଆମ ପ୍ରତି ଏକ ବଡ଼ ଉପକାର, କିନ୍ତୁ ମନେ କରନ୍ତୁ ଆମର ଅତୀତର ଦଶ-କୋଡ଼ିଏ ଜନ୍ମର କଥା ମନେ ରହିଲା ଏବଂ ପ୍ରତି ଜନ୍ମରେ ମନ ଯେଉଁ ସବୁ ଦୋଷଯୁକ୍ତ କାମ କରିଛି ତାହା ଆଖି ଆଗରେ ଭାସି ଉଠିଲା, ତାହା ହେଲେ ସେଟା କି ଭୟଙ୍କର ଦୃଶ୍ୟ ହେବ ? ସେଥିପାଇଁ ବର୍ତ୍ତମାନ ପର୍ଯ୍ୟନ୍ତ ଆମର ଭଲ, ମନ୍ଦ ଯେପରି ହେଉ କରି ଦେଇ ପାରିଲେ ହିଁ ସବୁ ଶେଷ, ସ୍ମୃତିଠାରୁ ଦୂର ହୋଇଗଲା । ଗୋଟିଏ ଗୋଟିଏ କଥା ମନେକର । ଆଉ ତାହାକୁ ଗୋଟି ଗୋଟି କରି ଧୋଇ ଦିଅ ଏବଂ ତା ଭିତରେ ଯଦି ଅନ୍ୟ କୌଣସି ବିଷୟ ମନକୁ ଆସେ ତାହା ମଧ୍ୟ ଧୋଇ ଦେବାକୁ ହେବ । ଏସବୁ ନ କରି ଯଦି ମନକୁ ବିଚ୍ଛିନ୍ନ କରି ଦେବ ତେବେ ସବୁ ସମସ୍ୟା ସମାଧାନ ହୋଇଯିବ ।

ଏକନାଥ ମହାରାଜ ଟିକିଏ ଅଲଗା କରି କହିଛନ୍ତି – ଜେଥେଁ ଜେଥେଁ ଜାଇଲ ବାସନା, ତେଥେଁ ତେଥେଁ ଫିରବାରେ ନାରାୟଣା – ଯେଉଁ ଯେଉଁ ସ୍ଥାନକୁ ମନର ବାସନା ଦଉଡ଼ିବ ସେହି ସବୁ ସ୍ଥାନରେ ନାରାୟଣଙ୍କୁ ସ୍ଥାପନ କର । କ୍ଷେତରେ ଟମାଟୋ ଦେଖି ଖାଇବାର ଇଚ୍ଛା ହେଲା ତ (ଭଗବାନଙ୍କୁ ଚିନ୍ତାକର) ଈଶ୍ୱରଙ୍କୁ ସ୍ମରଣ କରି ଖାଇ ଦିଅ । ଯାହା ଆଖି ଆଗକୁ ଆସିବ ସବୁ ଭଗବାନ୍ । ପଥର ଥିଲା, କିନ୍ତୁ ଭାବନା ଦ୍ୱାରା ତାହା ଭଗବାନ୍‌ରେ ରୂପାନ୍ତରିତ ହୋଇଗଲା । ମନ ଉପରେ ଜଗୁଆଳି ରଖ । ମନ ଏହାକୁ ସାକ୍ଷୀ ବୋଲି ମନେ କରିବ ଏବଂ ତାହା ଦ୍ୱାରା ମନ ଚୁପ୍ ହୋଇଯିବ । ଏକନାଥ ମହାରାଜ କହିଛନ୍ତି, ଯେଉଁ ଯେଉଁ ସ୍ଥାନକୁ ମନ ଯିବ, ସେହି ସେହି ସ୍ଥାନ ମାନଙ୍କରେ ଭଗବାନଙ୍କୁ ପ୍ରତିଷ୍ଠିତ କର ।

ଚିତ୍ତ ଶୁଦ୍ଧି ପାଇଁ ବହୁ ପ୍ରକାରର ସାଧନ ପ୍ରକ୍ରିୟା ରହିଛି । ନାମ-ସ୍ମରଣ ଗୋଟିଏ ମହା ଗୁରୁତ୍ୱପୂର୍ଣ୍ଣ ସାଧନ ପଦ୍ଧତି । ଈଶ୍ୱରଙ୍କର ଯେ କୌଣସି ନାମ ମଣିଷ ଯଦି ଶ୍ରଦ୍ଧା ଓ ଭକ୍ତିର ସହିତ ଉଚ୍ଚାରଣ କରେ ତାହା ମଣିଷକୁ ପରିତ୍ରାଣ କରିବ । ଶ୍ରଦ୍ଧା ଦ୍ୱାରା ନାମ ସ୍ମରଣର ପ୍ରଭାବ ପଡ଼ିବ । ଶ୍ରଦ୍ଧାହିଁ ନାମ ସ୍ମରଣର ଆଧାର ।

ଛ). ଧ୍ୟାନ ଏବଂ ଆଧ୍ୟାତ୍ମ

* ଆଧ୍ୟାତ୍ମିକ ଶକ୍ତିର ଅପବ୍ୟବହାର ହୋଇ ପାରେ ନାହିଁ ।
* ଧ୍ୟାନ ହେଉଛି କର୍ମ ପରି ଏକ ପ୍ରକାର ଶକ୍ତି, ଯାହାର କି ସଦ୍‌ବ୍ୟବହାର ଓ ଅସଦ୍‌ବ୍ୟବହାର ଦୁଇଟି ଯାକ ହୋଇ ପାରିବ ।
* ଈଶ୍ୱରଙ୍କ ପାଇଁ ଈଶ୍ୱରମୟ, ଈଶ୍ୱର ସମର୍ପିତ ଧ୍ୟାନ, ଆଧ୍ୟାତ୍ମିକ ।
* ଆଧ୍ୟାତ୍ମିକତା ସହିତ ଚିତ୍ତ ଶୁଦ୍ଧିର କୌଣସି ସଂବନ୍ଧ ନାହିଁ ।

ଅନେକ ମନେ କରନ୍ତି ଯେ ଯଦି ସେମାନେ ନିର୍ଜନରେ ବସି ଧ୍ୟାନ କରନ୍ତି ତେବେ ତାହାହିଁ ହେବ ଆଧ୍ୟାତ୍ମିକ ସାଧନା । ଏକଥା ସତ୍ୟ ନୁହେଁ । ଏହି ଭାବନା ତ୍ରୁଟି ପୂର୍ଣ୍ଣ । ଏ ପ୍ରକାର ସାଧନା ଆଧ୍ୟାତ୍ମିକ ହୋଇପାରେ ନ ହୋଇ ପାରେ ମଧ୍ୟ । କର୍ମ ଯେପରି ଗୋଟିଏ ପ୍ରକାରର ଶକ୍ତି

ଧ୍ୟାନ ମଧ୍ୟ ସେହିପରି ଗୋଟିଏ ପ୍ରକାରର ଶକ୍ତି । ଆଉ ଏହି ଦୁଇଟି ଶକ୍ତି ହେଉଛି ନନ୍ ମରାଲ୍ (Non normal) ବା ଭୌତିକ·ଶକ୍ତି । ସତ୍ ଉଦ୍ଦେଶ୍ୟ ନେଇ କାର୍ଯ୍ୟ କଲେ କଲ୍ୟାଣ ହୁଏ ଏବଂ ମନ୍ଦ ଉଦ୍ଦେଶ୍ୟ ନେଇ କାର୍ଯ୍ୟ କଲେ ଅକଲ୍ୟାଣ ହୁଏ । ଏହାର ସଦ୍ ବ୍ୟବହାର ଓ ଅସଦ୍ ବ୍ୟବହାର ଦୁଇଟି ଯାକ ହେବା ସଂଭବ । ଧ୍ୟାନ କ୍ଷେତ୍ରରେ ମଧ୍ୟ ଏହାହିଁ ପ୍ରଯୁଜ୍ୟ । ଧ୍ୟାନ ସାହାଯ୍ୟରେ ମଣିଷ କାହାର ମଂଗଳ ବି କରିପାରେ ପୁଣି କାହାର କଲ୍ୟାଣ ମଧ୍ୟ କରିପାରେ । ଅର୍ଥାତ୍ କାହାରି ଅନିଷ୍ଟ ଅଥବା ମଂଗଳ ଉଦ୍ଦେଶ୍ୟରେ ଧ୍ୟାନ କରାଯାଇପାରେ । ସୁତରାଂ କର୍ମ ବା ଧ୍ୟାନର ଶୁଭ ପ୍ରୟୋଗ ବି ହୋଇ ପାରିବ, ଅଶୁଭ ପ୍ରୟୋଗ ମଧ୍ୟ ହୋଇପାରିବ । ସେଥିପାଇଁ ଏହି ସବୁ ଶକ୍ତିକୁ 'ନନ୍‌ନର୍‌ମାଲ୍' ଭୌତିକ (Material) କୁହାଯାଏ ।

ଆଧ୍ୟାତ୍ମିକ ଶକ୍ତି ତାହାକୁ ହିଁ କୁହାଯାଏ ଯାହାକୁ ଅନିଷ୍ଟକର କାର୍ଯ୍ୟରେ ବ୍ୟବହାର କରାଯାଏ ନାହିଁ, ଯାହାକୁ ସତ୍‌କର୍ମରେ ଓ ଦୁଷ୍କର୍ମରେ ଉଭୟ କ୍ଷେତ୍ରରେ ବ୍ୟବହାର କରାଯାଏ ତାହାହେଲା ଭୌତିକ (ଗବସ୍ବରଵ୍ସବକ୍ଷ) ଶକ୍ତି । ଯେପରି ନିଆଁ । ତା ସାହାଯ୍ୟରେ ରନ୍ଧନ କାର୍ଯ୍ୟ ମଧ୍ୟ କରାଯାଇପାରେ, ପୁଣି ଘରେ ନିଆଁ ଲଗାଇ ଦିଆଯାଇପାରେ। ଧ୍ୟାନ ଓ କର୍ମ ସଂବଧରେ ମଧ୍ୟ ଏହି ବିଚାର ରହିଛି ।

ପରମାତ୍ମାଙ୍କ ସହିତ ଯେତେବେଳେ ଧ୍ୟାନଯୁକ୍ତ ହେବ ସେତେବେଳେ ତାହା ଆଧ୍ୟାତ୍ମିକ ଗୁଣ ସଂପନ୍ନ ହେବ । ଆଉ ଧ୍ୟାନ ଯଦି ଭୌତିକ (Material) ବସ୍ତୁ ସହିତ ମିଶି ଯାଏ ସେତେବେଳେ ତାହାକୁ ବୈଜ୍ଞାନିକ ଆଖ୍ୟା ଦିଆଯାଏ । ଏହା ଅନ୍ୟ କୌଣସି ବିକଳ୍ପ ବସ୍ତୁ ସହିତ ଯୁକ୍ତ ହେଲେ ତାହାକୁ ମାନସିକ କୁହାଯାଏ । କିନ୍ତୁ ଯେ କୌଣସି ପ୍ରକାରର ଧ୍ୟାନକୁ ଆଧ୍ୟାତ୍ମିକ ବିଷୟ ବୋଲି ମାନିବାକୁ ହେଲେ ତାହାକୁ ଈଶ୍ୱରଙ୍କ ସହିତ ଯୋଡ଼ି ଦେବାକୁ ହେବ । ଈଶ୍ୱରଙ୍କ ସହିତ ହେଉ, ବା ଈଶ୍ୱରଙ୍କ ପାଇଁ କରାଯାଉ, ବା ଈଶ୍ୱରମୟ ହେଉ, ବା ଈଶ୍ୱର-ସମର୍ପିତ ହେଉ, ଏହି ସବୁ ପ୍ରକାର ଧ୍ୟାନକୁ ଆଧ୍ୟାତ୍ମିକ କୁହାଯିବ । ଏପ୍ରକାର ବିଶ୍ଳେଷଣ କର୍ମ ବିଷୟରେ ମଧ୍ୟ ପ୍ରଯୁଜ୍ୟ । କର୍ମ ସାଂସାରିକ ହୋଇପାରେ, ବିନାଶକାରୀ ହୋଇପାରେ, ସେବା ମୂଳକ ହୋଇପାରେ, ଆତ୍ମନିଯୁକ୍ତ ହୋଇପାରେ ଏବଂ ଆଧ୍ୟାତ୍ମିକ ମଧ୍ୟ ହୋଇପାରେ । କର୍ମ ଯଦି ଈଶ୍ୱରଙ୍କ ସହିତ ଯୁକ୍ତ ହୁଏ, ଯଦି ଈଶ୍ୱରମୁଖୀ ହୁଏ, ଈଶ୍ୱରମୟ ହୁଏ ବା ଈଶ୍ୱର ସମର୍ପିତ ହୁଏ ତାହାହେଲେ ତାହାକୁ ଆଧ୍ୟାତ୍ମିକ କର୍ମ କୁହାଯାଏ । ଯେଉଁ କଥା କର୍ମ ସଂବନ୍ଧରେ କୁହାଯାଇଛି, ଧ୍ୟାନ, ଜପ ଓ ତନ୍ତ୍ର ସଂବନ୍ଧରେ ମଧ୍ୟ ସେଇ କଥା ଠିକ୍ । ଏସବୁ ଠାରୁ ଆଧ୍ୟାତ୍ମିକ କ୍ଷେତ୍ର ଭିନ୍ନ । ତାହା ଏପରି କ୍ଷେତ୍ର ଯେଉଁଠାରେ ମଣିଷର ଚିତ୍ତ ଶୁଦ୍ଧ ହୋଇ ବିଶ୍ୱାନୁଭୂତିରେ ଜାଗୃତ ହୋଇ ପାରେ । ଚିତ୍ତ ସ୍ୱଚ୍ଛ ହୋଇ ଉଠେ । ମଣିଷ ମନରୁ ରାଗ-ଦ୍ୱେଷ ସଂପୂର୍ଣ୍ଣ ରୂପେ ଦୂରୀଭୂତ ହୁଏ । ଚିତ୍ତ ଅତ୍ୟନ୍ତ ପ୍ରସନ୍ନତା ଲାଭ କରି ନିର୍ମଳ ଓ ସ୍ୱଚ୍ଛ ହୁଏ । ଯେଉଁ ନିର୍ମଳତା ଆତ୍ମା ମଧ୍ୟରେ ବିରାଜିତ, ତାହାରି ସ୍ୱଗୁଣ ଦର୍ଶନ, ତାହାରି ଚିତ୍ତ ଦ୍ୱାରା ନିର୍ମଳ ହୋଇଥିବା ଚିତ୍ତ ମଣିଷର ହୋଇଥାଏ । ଏହାହିଁ ଆଧ୍ୟାତ୍ମ ବିଦ୍ୟାର ସ୍ୱରୂପ ।

ମନ ହେଉଛି ଅନେକ ପ୍ରକାର ଶକ୍ତିର ଆଧାର । ଆମ୍ଭମାନଙ୍କୁ ଏହି ସବୁ ମାନସିକ ଶକ୍ତି ଅତିକ୍ରମ କରି ଆଗେଇ ଯିବାକୁ ହେବ । ସବୁଠାରୁ ବଡ଼ ଆଧାତ୍ମିକ ବସ୍ତୁ ବୋଲି ଆମେ ଯାହାକୁ ବୁଝୁ ତାହା ହେଉଛି ଯେପରି ଆମେ ସମୟ ନିରୂପକ ଯନ୍ତ (ଘଡ଼ି) ଠାରୁ ଭିନ୍ନ ସେହିପରି ଆମେ ଚିତ୍ତସ୍ଥିତ ଶକ୍ତି ଠାରୁ ମଧ ସଂପୂର୍ଣ୍ଣ ଭିନ୍ନ -- ଏହା ଉପଲବ୍ଧି କରିବାକୁ ହେବ । ଚିତ୍ତ ଠାରୁ ଆମେ ଯେ ଅଲଗା ତାହା ଆମକୁ ଅନୁଭବ କରିବାକୁ ହେବ । କାମ କରୁ କରୁ ସବୁ କାମରୁ ମନକୁ ଅଲଗା କରିବାର ଅଭ୍ୟାସ କରିବାକୁ ହେବ । ସେଥିପାଇଁ ଚିତ୍ତକୁ ନିର୍ଲିପ୍ତ ରଖିବାର ଚେଷ୍ଟା କରିବାକୁ ହେବ । ସର୍ବଦା ତାହାକୁ ଜାଗ୍ରତ ରଖିବାକୁ ହେବ । ସେଥିପାଇଁ ଯେପରି ସ୍ୱାଭାବିକ ଭାବରେ ହେବ । ଯେଉଁଠାରେ କ୍ରିୟାଶୀଳତା ରହିବ ସେଠାରେ ବୃତ୍ତି ଆସିବ । ବୃତ୍ତି ନୁହେଁ, ସ୍ଥିତି ହେଉଛି ଆମର କାମନା । 'ମୁଁ ଜଣେ ମଣିଷ' ଏହା ଆମକୁ ଜାଣିବାକୁ ହୁଏ ନାହିଁ । ଏହା ସ୍ୱାଭାବିକ ଭାବରେ ମନରେ ଥାଏ । ଏପରି ଭାବରେ ଚିତ୍ତକୁ ଶରୀର ଠାରୁ ବିଚ୍ଛିନ୍ନ ରଖିବାର ଅବସ୍ଥା ସୃଷ୍ଟି କରିବାକୁ ହେବ । ଏହି ଭାବ ଆୟତ୍ତ ହେଲେ ଚିତ୍ତ ମଧରେ ପ୍ରସନ୍ନତାର ଝରଣା ବହିବାକୁ ଆରମ୍ଭ ହେବ ଏବଂ ସବୁକିଛି କେବଳ ଆନନ୍ଦମୟ ମନେ ହେବ ପୁଣି ବୁଦ୍ଧି ସମତ୍ୱ ଲାଭ କରିବ ।

ଭାରତରେ ଆଧାତ୍ମ ବିଷୟରେ ଅନେକଙ୍କର ଭୁଲ ଧାରଣା ରହିଛି । ଶୁଣାଯାଏ ଅମୁକ ବ୍ୟକ୍ତି ଜ୍ଞାନୀ, ତାର ପ୍ରମାଣ କଣ ? ପଚାରିଲେ କୁହାଯାଏ ଯେ ତାର କୌଣସି ବାହ୍ୟିକ ଜ୍ଞାନ ନାହିଁ । କିନ୍ତୁ ଯେତେବେଳେ ମୋ ସାମ୍ନାରେ ଏହି ପ୍ରକାରର କଥା ହୁଏ ଯେ, ଅମୁକ ବ୍ୟକ୍ତି ଜ୍ଞାନୀ, ତାର ମଳ-ମୂତ୍ର ତ୍ୟାଗ କରିବାର କୌଣସି ସ୍ଥାନର ବାଛ ବିଚାର ନାହିଁ । ତାର ଖାଇବା ପିଇବା ସଂପର୍କରେ କୌଣସି ବିଧି ନିଷେଧ ନାହିଁ । ମୁଁ କୁହେ, ଭାଇ, ଆଧାତ୍ମିକ ବିଚାର ଅନୁସାରେ ତାକୁ ଜ୍ଞାନୀ ବୋଲି ମାନିବା ଉଚିତ ନୁହେଁ । ତାହାକୁ ହୁଏତ ମୂଢ଼, ନ ହେଲେ ଭ୍ରାନ୍ତ ଅବା କପଟ ବୋଲି କୁହାଯାଏ । ତା ସଂପର୍କରେ ସର୍ବଶ୍ରେଷ୍ଠ କଲ୍ୟାଣ ଯାହା କରାଯାଇପାରେ ତାହାହେଲା -- ଏହି ବ୍ୟକ୍ତି ଧ୍ୟାନରେ ମଗ୍ନ ରହିଥିବା ହେତୁ ସବୁକିଛି ଭୁଲି ଯାଇଛି । ଏହି ପ୍ରକାର ଧ୍ୟାନୀ, ଭ୍ରାନ୍ତ ବା କପଟ ତିନି ପ୍ରକାରର ବ୍ୟକ୍ତିତ୍ୱ ତା ଭିତରେ ଥାଇ ପାରେ ।

ଧ୍ୟାନ ମଧ ସତ୍ତ୍ୱ, ରଜଃ ବା ତମୋଗୁଣ ବିଶିଷ୍ଟ -- ଏହି ତିନି ପ୍ରକାରର ହୋଇପାରେ । କେହି ଧ୍ୟାନମଗ୍ନ ଅଛନ୍ତି, ସେଥିପାଇଁ ତାଙ୍କ ମଧରେ ବାସ୍ତବ ଜ୍ଞାନ ଥାଇ ନପାରେ । ଏହା ସଂଭବ ବାଲ୍ୟାବସ୍ଥାରେ ମୁଁ ଧ୍ୟାନମଗ୍ନ ରହୁଥିଲି । ମା ଖାଇବାକୁ ଦେଉଥିଲେ । କେତେବେଳେ ରୋଷେଇ କଲାବେଳେ ଲୁଣ ଦ୍ୱିଗୁଣ ପରିମାଣରେ ଦେଉଥିଲେ । କିନ୍ତୁ ମୁଁ କିଛି ବୁଝିପାରୁନଥିଲି । କିନ୍ତୁ ଏପରି ଅବସ୍ଥା ଜ୍ଞାନାବସ୍ଥାରେ ହେଉ ନଥିଲା ଧ୍ୟାନାବସ୍ଥିତ ମଣିଷର ଧ୍ୟାନ ଆଧାତ୍ମିକ ହେବ ଏପରି କଥା ନୁହେଁ । ଧ୍ୟାନର ସଦ୍‌ବ୍ୟବହାର, ଅସଦ୍‌ବ୍ୟବହାର ଦୁଇଟି ହେବା ସଂଭବ ।

## ୨ . ଧ୍ୟାନର ପ୍ରକ୍ରିୟା ଓ ପ୍ରକାର ଭେଦ

୧. ଧ୍ୟାନର ପ୍ରକ୍ରିୟା ।

୨. ଧ୍ୟାନ ଓ କର୍ମ ।

୩.	ଧ୍ୟାନ ପ୍ରବୃତ୍ତି-ଅପ୍ରବୃତ୍ତିର ଦୁଇଟି ଭିନ୍ନ ।

୪.	ଉପାଧି ବିହୀନ ନିର୍ଲିପ୍ତ ଧ୍ୟାନ ।

୫.	ମନଠାରୁ ପୃଥକ୍, ଭବମନ ଓ ଶୂନ୍ୟମନ ।

୬.	ଅତି ମାନସ - ବିଜ୍ଞାନ ଯୁଗର ଦାବି ।

କ). ଧ୍ୟାନର ପ୍ରକ୍ରିୟା

* ଚିତ୍ତ-ଗତିର ସାକ୍ଷିତ୍ୱ ।
* ମୂର୍ତ୍ତି, ଚିତ୍ର, ଅର୍ଥ ଚିନ୍ତନ, ନାମ ସ୍ମରଣ ଇତ୍ୟାଦି ଅବଲମ୍ବନ ।
* ଧ୍ୟାନ-ଶକ୍ତି  ଅର୍ଥାତ୍ ଗୁଣ ଆକର୍ଷଣର ଶକ୍ତି ।
* ଦୁଇ ବିକଳ୍ପର ମଧ୍ୟବର୍ତ୍ତୀ ସମୟର ବିସ୍ତାର ।
* ବଳବାନ୍ ବାସନା ଉପରେ ଚିତ୍ତ ଏକାଗ୍ର ହେବା ପରେ ତାହା ପରିତ୍ୟାଗ ।
* ବାହ୍ୟ-ସାଧନ ନିରପେକ୍ଷ ଏକାଗ୍ରତାର ଗୁରୁତ୍ୱ ।
* ଧ୍ୟାନ 'ସାକାରିନ୍'  ପରି ।

ପ୍ରତିଦିନ ଧ୍ୟାନ ପାଇଁ ଆମକୁ କିଛି ସମୟ ବାହାର କରିବାକୁ ହେବ । ଧ୍ୟାନ ସମୟରେ ଆରମ୍ଭରୁ ଚିତ୍ତର ଗତି ଲକ୍ଷ୍ୟ କରିବାକୁ ହେବ । ଚିତ୍ତ କେଉଁଠି କେଉଁଠି ଭ୍ରମଣ କରୁଛି ଏହାକୁ ଲକ୍ଷ ରଖି ତା ପରେ ସେଗୁଡ଼ିକ ଲେଖି ନେବା ଉଚିତ । ଏପରି ଭାବରେ ଦଶ ପନ୍ଦର ଦିନ ପର୍ଯ୍ୟନ୍ତ ଚିତ୍ତର ଗତିବିଧିର ସାକ୍ଷୀ ପ୍ରମାଣ ତିଆରି କରିବାକୁ ହେବ । ଚିତ୍ତ କୁଆଡ଼କୁ ଯାଏ ଏବଂ କାହିଁକି ଯାଏ ଏହା ଦେଖିବାପରେ ଜଣାଯିବ ଯେ, ସାଧାରଣତଃ ବଳଦ ଯେପରି ନିଜର ନିର୍ଦ୍ଧାରିତ ରାସ୍ତାରେ ଯାଏ ସେହିପରି ମନର ମଧ୍ୟ କେତେଗୁଡ଼ିଏ ଧରାବନ୍ଧା ରାସ୍ତା ଅଛି । ମନ ପ୍ରାୟ ଏସବୁ ରାସ୍ତାରେ ଘୁରିବୁଲେ ବା କେତେକ ରାସ୍ତାକୁ ଯୋଡ଼ି ଦିଏ -- ଏପ୍ରକାର ଅନୁଭୂତି ହୋଇଥାଏ । ପ୍ରତିଦିନ ମନକୁ ଅନୁସରଣ କଲେ ଏବଂ ସୂକ୍ଷ୍ମ ଭାବରେ ଏହାର ବିଶ୍ଳେଷଣ କରିବାକୁ ଲାଗିଲେ ମନ କ୍ଲାନ୍ତ ହୋଇ ପଡ଼ିବ ଏବଂ ବୁଝିପାରିବ ଯେ ଏହି ବ୍ୟକ୍ତି ନିଜକୁ ମୋ ଠାରୁ ପୃଥକ ବୋଲି ଜାଣିପାରିଛି । ଫଳ ସ୍ୱରୂପ ୟାଡ଼େ ସିଆଡ଼େ ଦୌଡ଼ିବାରୁ ସେ ବିରତ ହେବ । ସେ ଦେଖିବ ଯେ, ଏହି ବ୍ୟକ୍ତି ମୋର ଛବି ଉଠେଇ ନେଉଛି । ସୁତରାଂ ସେ ପରାଜୟ ସ୍ୱୀକାର କରିବ ।

କିଛି ଦିନ ପରେ ଚିତ୍ତକୁ କହିବାକୁ ହେବ - 'ଏ ପର୍ଯ୍ୟନ୍ତ ତୁ ଅନେକ ବୁଲିଛୁ ବର୍ତ୍ତମାନ ଟିକିଏ ବସ' । ଏହାକୁ କୁହାଯାଏ ନିରୋଧ ପଦ୍ଧତି ଯାହା ସାକ୍ଷିତ୍ୱ ପରେ ଆସେ । ମନ କେଉଁଠି କେଉଁଠି ଭ୍ରମଣ କରେ ତାର ଚିତ୍ର ବା ଭୂଗୋଳ ଜଣା ପଡ଼ିଗଲେ ନିରୋଧ ନିଜ ଆୟତ୍ତକୁ ଆସିବ । ତାପରେ ଚିତ୍ତକୁ କୁଆଡ଼କୁ ଘୁରିବୁଲିବାକୁ ନଦେଇ ମୂଳ ବିଷୟ ପ୍ରତି ସ୍ଥିର ରଖିବାକୁ ହେବ । କୌଣସି ଗୋଟିଏ ବିଷୟ ପ୍ରତି, କୌଣସି ପ୍ରିୟ ମନ୍ତ୍ର ପ୍ରତି ଅଥବା ପ୍ରିୟ ରୂପ ପ୍ରତି, ଯାହାପ୍ରତି

ଚିତ୍ତର ଶ୍ରଦ୍ଧା ଅଛି ତା ଉପରେ ଚିତ୍ତକୁ ସ୍ଥିର ରଖିବାକୁ ହେବ । କିଛି ଦିନ ପର୍ଯ୍ୟନ୍ତ ଏହିପରି ଅବଲମ୍ବନର ପ୍ରୟୋଜନ ରହିଛି । ତାପରେ ଏପରି ଅନୁଭବ ହେବ ଯେ କୌଣସି ଆଶ୍ରୟ ଛଡ଼ା ଚିତ୍ତ ନିଜ ସ୍ଥାନରେ ସ୍ଥିର ରହିବ ଏବଂ ଚିତ୍ତ ଶାନ୍ତ ରହିବ ।

ଏହିପରି ଭାବରେ ଚିତ୍ତ-ଗତିର ସାକ୍ଷିତ୍ୱ ଏବଂ ଚିତ୍ତ ଚାଞ୍ଚଲ୍ୟ ନିରୋଧ କରିବାର ପ୍ରୟାସ ପରେ ତା ପାଇଁ ସଗୁଣ ଆଶ୍ରୟ ପ୍ରଭୃତି ଅବଲମ୍ବନ ଏବଂ ପରିଶେଷରେ ଆଶ୍ରୟହୀନ ଶାନ୍ତି, ସ୍ଥିରତାର ପ୍ରକ୍ରିୟା ଧାରଣ କରିବାକୁ ହେବ ।

ପ୍ରତିଦିନ ଆତ୍ମ ବିଶ୍ଳେଷଣ କରିବାକୁ ହେବ ଏବଂ ମନରେ ଯେଉଁ ସବୁ ଦୋଷ ଦେଖାଯିବ ତାହାକୁ ଧରି ଫୋପାଡ଼ି ଦେବାକୁ ହେବ । ଯାହା ଯୋଗ୍ୟ ହେବ ତାହାକୁ ପ୍ରକାଶ କରିବାକୁ ହେବ । ଏପରି ଭାବରେ ପ୍ରତିଦିନ ଆମର ପରୀକ୍ଷା ଚଳାଇ ଯିବାକୁ ହେବ । ଆମେ ଯେପରି ଭାବରେ ପ୍ରତିଦିନ ଆମର ନିଜର ବାହ୍ୟିକ ଆଚରଣର ହିସାବ ରଖୁ ସେହିପରି ମନର କ୍ରିୟାର ମଧ ହିସାବ ରଖିବା ଦରକାର । ଦରଜା ଖୋଲା ରଖିବା ଏବଂ ବନ୍ଦ କରିବା ଆମ ହାତରେ ଅଛି କି ନାହିଁ ତାହା ଦେଖିବାକୁ ହେବ । ଏହା କୌଣସି କଠିନ କାର୍ଯ୍ୟ ନୁହେଁ । ଯେଉଁମାନଙ୍କର ଆକାଶଚୁମ୍ବୀ ଅହଂକାର ଏବଂ ସୀମାହୀନ ଉଚ୍ଚାକାଂକ୍ଷା ସେମାନଙ୍କ କଥା ଅଲଗା । କିନ୍ତୁ ଯେଉଁମାନଙ୍କ ପକ୍ଷରେ କେବଳ କାମ କରି ଅଲଗା ରହିବାକୁ ହେବ ସେମାନଙ୍କ ପକ୍ଷରେ ଏହା ଅତ୍ୟନ୍ତ ସହଜ କାମ ।

ଧ୍ୟାନ ସମୟରେ କିପରି ଏକାଗ୍ରତା ଅଣାଯାଇପାରେ, ସେ ବିଷୟରେ ବିଭିନ୍ନ ସାଧକ ନାନା ପ୍ରକାର ଉପାୟ କହିଛନ୍ତି । ଯାହାକୁ ଯେଉଁ ପ୍ରକାର ଉପାୟ ଭଲ ଲାଗିବ ସେମାନେ ସେହି ପ୍ରକାର କରନ୍ତୁ । ଗୋଟିଏ ପଦ୍ଧତି ହେଉଛି, କୌଣସି ଶ୍ଳୋକ ଅଥବା ବାକ୍ୟର ଅର୍ଥ ଚିନ୍ତା କରିବା । କିଛି ଦିନ ଗୋଟିଏ ବାକ୍ୟ, ଆଉ କିଛି ଦିନ ଆଉ ଗୋଟିଏ ବାକ୍ୟ; ଏହିପରି ଭାବରେ ଭିନ୍ନ ଭିନ୍ନ ବାକ୍ୟ ଘେନି ମଧ ଚିତ୍ତକୁ ଏକାଗ୍ର ରଖିହେବ । ଖ୍ରୀଷ୍ଟାନ୍ ମାନଙ୍କ ମଧରେ ଏହି ପଦ୍ଧତି ପ୍ରଚଳିତ । ହିନ୍ଦୁମାନଙ୍କ ମଧରେ ମୂର୍ତ୍ତି ଏହି କାମ କରେ । ମୂର୍ତ୍ତିକୁ ଚିତ୍ତର ସମ୍ମୁଖକୁ ଆଣି ମନେ ମନେ ତାର ଚିନ୍ତା କରିବା ।

ତୃତୀୟ ଉପାୟ ହେଲା ନାମ ସ୍ମରଣ। ଏହି ବାଟ କିଛିଟା ଭିନ୍ନ ଧରଣର । ନାମ ସ୍ମରଣରେ ମଣିଷ ଶବ୍ଦ ହିଁ ଉଚ୍ଚାରଣ କରିଥାଏ । ନିର୍ଗୁଣ ପନ୍ଥୀ, ସହଜିୟା ପନ୍ଥୀ ମାନେ ପ୍ରତି ନିଶ୍ୱାସରେ ନାମ ସ୍ମରଣ କଥା କହନ୍ତି । ସୋହମ୍ । 'ସଃ' ଅର୍ଥାତ୍ 'ଅହଂକାର' । ଯେଉଁ ଶ୍ୱାସ ବାହାରକୁ ଛଡ଼ାଯାଏ ତାହା ବିଷାକ୍ତ ବୋଲି ତାହା ହେଉଛି ଅହଂକାର । ତାହାକୁ ଛାଡ଼ି ଦେବାକୁ ହେବ । ଯେଉଁ ଶ୍ୱାସ ଦ୍ୱାରା ଭିତରକୁ ବିଶୁଦ୍ଧ ବାୟୁ ଗ୍ରହଣ କରାଯାଏ ତାହା ବ୍ରହ୍ମ । ତାହାକୁ ଭିତରକୁ ନେବାକୁ ହେବ । ଏହା ପ୍ରାଚୀନ ପଦ୍ଧତି ।

ଚତୁର୍ଥ ଉପାୟ ହେଲା ଗୁଣ ସ୍ମରଣ । ଭିନ୍ନ ଭିନ୍ନ ମଣିଷମାନଙ୍କ ମଧରେ ଭିନ୍ନ ଭିନ୍ନ ଗୁଣର ମାହାତ୍ମ୍ୟ ଦେଖାଯାଏ । ଏହି ସବୁ ଗୁଣର ଚିନ୍ତନ କରାଯିବ ଏବଂ ସେହି ପରିମାଣରେ ଗୁଣ ଗ୍ରହଣ କରାଯାଏ । ଭଗବାନ କୃଷ୍ଣଙ୍କ ମଧରେ ପ୍ରେମ ଗୁଣର ପ୍ରକାଶ ଦେଖାଯାଏ, ଶ୍ରୀରାମଚନ୍ଦ୍ରଙ୍କ ଭିତରେ ସତ୍ୟ ଗୁଣ । ଅତଏବ ଶ୍ରୀକୃଷ୍ଣଙ୍କୁ ଚିନ୍ତା କରିବା ଅର୍ଥ ପ୍ରେମ ଗୁଣକୁ ଚିନ୍ତା କରିବା । ରାମଚନ୍ଦ୍ରଙ୍କୁ ଚିନ୍ତା କରିବା ଅର୍ଥ ସତ୍ୟ ଗୁଣକୁ ଚିନ୍ତା କରିବା । ଏପରି ଭାବରେ ସୃଷ୍ଟି

ମଧ୍ୟରେ ବି ଗୁଣର ଦର୍ଶନ ମିଳେ । ମାତୃ ସ୍ତନରେ କ୍ଷୀର ଥାଏ । ଏହି ଭାବରେ ସୃଷ୍ଟି ମଧ୍ୟରେ ନିୟମିତତାର ଗୁଣ ପ୍ରକଟ ହୋଇଯାଏ । ସୃଷ୍ଟିରେ ନିୟମିତତାର ଗୁଣ ପ୍ରକଟ ହୋଇଥାଏ । ସୂର୍ଯ୍ୟ, ତିଥି, ନକ୍ଷତ୍ର, ଚନ୍ଦ୍ର ସମସ୍ତେ ନିୟମ ମାନି ଚଳନ୍ତି । ଏପରି ନିୟମିତତା ଆମ୍ଭମାନଙ୍କ ମଧ୍ୟରେ ଆସିବା ଦରକାର ।

ସତ୍ୟ, ପ୍ରେମ, କରୁଣା -- ଏହା ମଧ୍ୟ ଗୋଟିଏ ପ୍ରକାରର ଜପ । ଗୁଣ ସ୍ମରଣର ଉତ୍ତମ ପନ୍ଥା । ଗୁଣ ସ୍ମରଣ ଦୁଇ ପ୍ରକାରର ହୋଇପାରେ -- ସ୍ଥୁଳ ରୂପେ ଓ ସୂକ୍ଷ୍ମରୂପେ । ସ୍ଥୁଳ ରୂପ ହେଲା ଗୁଣ ସଂବନ୍ଧୀୟ କାହାଣୀ ସ୍ମରଣ କରିବା । ସତ୍ୟ ପାଇଁ ରାମଚନ୍ଦ୍ରଙ୍କର କାହାଣୀ ସ୍ମରଣ କରିବା -- ପ୍ରେମ ପାଇଁ ଶ୍ରୀକୃଷ୍ଣଙ୍କର ଜୀବନୀ ସ୍ମରଣ, ଏବଂ କରୁଣା ପାଇଁ ଭଗବାନ ବୁଦ୍ଧ ଦେବଙ୍କର କାହାଣୀ ସ୍ମରଣ । ସତ୍ୟ ଆଦି ଗୁଣର ଚିନ୍ତନ ଅବ୍ୟକ୍ତ ଭାବରେ ସୂକ୍ଷ୍ମ ରୂପରେ ସାରା ବିଶ୍ୱରେ ବ୍ୟାପ୍ତ ହୋଇ ରହିଛି ।

ଯେଉଁ ଗୁଣ ନିଜ ମଧ୍ୟରେ ନାହିଁ, ସେହି ଗୁଣ ନିଜ ମଧ୍ୟରେ ଆଣିବାକୁ ଚେଷ୍ଟା କରିବା ଦରକାର ନାହିଁ । ନିଜ ଭିତରେ ଯେଉଁ ଗୁଣ ନାହିଁ ସେହି ଗୁଣ ଯାହାଙ୍କ ମଧ୍ୟରେ ଅଛି ସେମାନଙ୍କୁ ଶ୍ରଦ୍ଧା କରିବାକୁ ହେବ ଏବଂ ନିଜ ଗୁଣର ବିକାଶ କରିବାକୁ ହେବ । ଏହି ବାଟରେ ପରମେଶ୍ୱରଙ୍କ ପର୍ଯ୍ୟନ୍ତ ପହଂଚିବାକୁ ହେବ । ଅନ୍ୟର ଗୁଣପ୍ରତି ଶ୍ରଦ୍ଧା ବଢ଼ାଇବାକୁ ହେବ ଏବଂ ନିଜ ଗୁଣର ବିକାଶ କରିବାକୁ ହେବ । ଗୁଣ-ବର୍ଦ୍ଧନ ପ୍ରକ୍ରିୟା ଦ୍ୱାରା ଗୁଣର ଏପରି ବିକାଶ କରିବାକୁ ହେବ, ଯେପରି ତା ସାହାଯ୍ୟରେ ସମାଧି ପର୍ଯ୍ୟନ୍ତ ଲାଭ ହୋଇପାରିବ । ଆମ ଭିତରେ ଅନେକ ଦୋଷ ମଧ୍ୟ ଅଛି । ଯେଉଁ ଲୋକଙ୍କ ଭିତରେ ଏହି ଦୋଷ ଗୁଡ଼ିକ ନାହିଁ, ସେମାନଙ୍କ ପ୍ରତି ବିଦ୍ୱେଷଭାବ ଯେପରି ଆମର ନ ହୁଏ ।

ସୃଷ୍ଟି-ଗୁଣ-ଦୋଷମୟ । ୟାରି ଭିତରେ ରହି ଗୁଣକୁ ଆକର୍ଷଣ କରିବାକୁ ହେବ । ଗୁଣ ଆକର୍ଷଣର ଶକ୍ତି ଯଦି ଆସିଯାଏ ତେବେ ବୁଝି ନେବାକୁ ହେବ ଯେ ଧ୍ୟାନ କରିବାର ଶକ୍ତି ହାତକୁ ଆସିଯାଇଛି । ତା ନ ହେଲେ ଆପଣ ପଦ୍ମାସନ କରି ବସନ୍ତୁ, ଆଖି ବନ୍ଦ କରି ବସନ୍ତୁ, ଏହା ଦ୍ୱାରା ଧ୍ୟାନ ଶକ୍ତି ଆସିବ ନାହିଁ । ବସ୍ତୁମାତ୍ର ଠାରୁ ଗୁଣ ଆକର୍ଷଣ କରିବାର ଶକ୍ତି ଯେତେବେଳେ ଆସିବ, ସେତେବେଳେ ଯାଇ ଧ୍ୟାନ ଶକ୍ତି ପ୍ରାପ୍ତ ହେବ ।

ମୂର୍ତ୍ତି ବଦଳରେ 'ପ୍ରତୀକ' ଅର୍ଥାତ୍ ସଂକେତ ଅବଲମ୍ବନ କରିବାର ମଧ୍ୟ ଗୋଟିଏ ପ୍ରକାର ମତ ଅଛି – ଯେପରି 'ଶୂନ୍ୟ' ଚିହ୍ନ, 'ଲମ୍ବ' ରେଖା, ବକ୍ର ରେଖା ପ୍ରଭୃତି ଚିତ୍ତର ରୁଚି ଅନୁଯାୟୀ ନାନା ପ୍ରକାର ଚିହ୍ନ ଗ୍ରହଣ କରାଯାଏ ।

କିନ୍ତୁ ଏପରି ହେବା ଉଚିତ ଯେ ଯେପରି ନିଦ୍ରାବସ୍ଥା ବି ନୁହେଁ କିମ୍ବା ଧ୍ୟାନାବସ୍ଥା ମଧ୍ୟ ନୁହେଁ । କେବଳ ମାତ୍ର 'ଅସ୍ତିତ୍ୱ ଅଛି' । ଏତିକି ଯଥେଷ୍ଟ । ଚେଇଁ ରହିଛି କିନ୍ତୁ ଜାଗୃତିର କଳ୍ପନା ନାହିଁ । ନିଦ୍ରା ମଧ୍ୟରେ ଶୂନ୍ୟତାର ଅଭ୍ୟାସ ଅଛି ଥିପାଇଁ ନିଦ୍ରା ଯେପରି ନ ହୁଏ । ଚିତ୍ତ ସଂପୂର୍ଣ୍ଣ ଭାବରେ ଶାନ୍ତ ରହିବ, ଶରୀର ନିଶ୍ଚଳ ରହିବ । ତେବେ ଯାଇ ତା ଭିତରୁ ନିଜର ମୂଳ ସ୍ୱରୂପର ଅନୁଭୂତି ଆସିବ । ମୂଳ ସ୍ୱରୂପ ହେଉଛି ଶାନ୍ତ ଅବସ୍ଥା । ଏହା କିପରି ସିଦ୍ଧି ହେବ ?

ତା ପାଇଁ ସାଧକମାନେ ଗୋଟିଏ ଉପାୟ ବାହାର କରିଛନ୍ତି । ଶଂକରାଚାର୍ଯ୍ୟ ମଧ୍ୟ ସେ ବିଷୟରେ କିଛିଟା ଉଲ୍ଲେଖ କରିଛନ୍ତି । ଏପରି ହୁଏ ଯେ ମନରୁ ଗୋଟିଏ ସଂକଳ୍ପ ଚାଲିଯାଏ ଆଉ ଗୋଟିଏ ସଂକଳ୍ପ ଆସି ପହଂଚେ । ପୂଜା କରିବାର ସଂକଳ୍ପ ଚାଲିଗଲା ତ ଭୋଜନର ସଂକଳ୍ପ ଆସି ପହଂଚିଲା । ସଂକଳ୍ପ ଓ ବିକଳ୍ପ ଦ୍ୱାରା ମଣିଷ କ୍ଳାନ୍ତ ହୋଇ ପଡ଼େ । ଗୋଟିଏ କ୍ଳାନ୍ତି ଦୂର ହେଲା ତ ଆଉ ଗୋଟିଏ ଆରମ୍ଭ ହେଲା । ସୂକ୍ଷ୍ମ ଭାବରେ ପର୍ଯ୍ୟବେକ୍ଷଣ କଲେ ଜଣାଯିବ ଯେ ଏହି ଦୁଇଟି ମଝିରେ ଚିତ୍ତ କିଛି ସମୟ ଶାନ୍ତ ରହେ । ଚିତ୍ତର ଏହି ଶାନ୍ତ ଅବସ୍ଥା, ତାର ସମୟ କାଳ ବୃଦ୍ଧି କରାଯାଇ ପାରେ । ଶଂକରାଚାର୍ଯ୍ୟ କହିଛନ୍ତି –

ମୁକ୍ତାଭିରାବୃତଂ ସୂତ୍ରଂ ମୁକ୍ତୟୋର୍ ମଧ୍ୟଇକ୍ଷ୍ୟତେ ।
ତଥାବୃତ୍ତି-ବିକଳ୍ପୈଶ୍ ଚିତ୍ ସ୍ପଷ୍ଟା ମଧ୍ୟେ ବିକଳ୍ପୟୋଃ ॥

ଅର୍ଥାତ୍ ମୁକ୍ତା ଭିତରେ ସୂତା ଢ଼ାଙ୍କି ହୋଇ ଥାଏ । କିନ୍ତୁ ଦୁଇଟି ମୁକ୍ତାର ମଝିରେ ସାମାନ୍ୟ ଟିକିଏ ଫାଙ୍କ ଦେଖାଯାଏ । ଏପରି ଭାବରେ ଚୈତନ୍ୟଶକ୍ତି ମଧ୍ୟ ବିକଳ୍ପ ଦ୍ୱାରା ଆବୃତ୍ତ ଥାଏ ବୋଲି ଦୃଷ୍ଟିଗୋଚର ହୁଏ ନାହିଁ କିନ୍ତୁ ଦୁଇ ବିକଳ୍ପର ମଝିରେ ଥିବା ଚୈତନ୍ୟଶକ୍ତି ସ୍ପଷ୍ଟ ଭାବରେ ଦେଖାଯାଏ । ମଣିଷ ମନ ଭିତରେ ଅସଂଖ୍ୟ ବୃତ୍ତି ଯିବା ଆସିବା କରେ ଆଉ ଏପରି ଭାବରେ ଚାଲୁଥାଏ । ଏହି ସବୁ କଳ୍ପନା ଦ୍ୱରା ଚିତ୍ତ ଆବୃତ୍ତ ଥାଏ । ବିକଳ୍ପ ପାଇଁ ବୃତ୍ତି ଗୁଡ଼ିକର ଉତ୍ପତ୍ତି । କିନ୍ତୁ ଦୁଇ ବିକଳ୍ପ ମଧ୍ୟରେ ଚୈତନ୍ୟ ଶକ୍ତି ପ୍ରକାଶ ପାଏ । ମନେ କରନ୍ତୁ ନିଦ୍ରା ଶେଷ ହେଲା, ଗୋଟିଏ ବୃତ୍ତିର ଅବସାନ ହେଲା ତ ଅନ୍ୟ ଏକ ବୃତ୍ତି ଜାଗ୍ରତ ଅବସ୍ଥାରେ ଆସିଲା । ଏପରି ସମୟରେ ଦୁଇଟିର ମଧ୍ୟବର୍ତ୍ତୀ ସମୟରେ ଏପରି ଗୋଟିଏ ଅବସ୍ଥା ଆସେ ଯେଉଁ ସମୟରେ ମନ ଭିତରେ କୌଣସି ବୃତ୍ତି ରହେ ନାହିଁ । ସେହି ସମୟରେ ଚେତନା ସ୍ପଷ୍ଟ ଥାଏ, ଶଂକରାଚାର୍ଯ୍ୟ ଏହିପରି କଥା କହିଛନ୍ତି । ମଣିଷର ଏ ସଂବନ୍ଧରେ ଜ୍ଞାନ ନଥିଲେ ମଧ୍ୟ ଚୈତନ୍ୟ କିନ୍ତୁ ଜାଗ୍ରତ ଥାଏ ।

ଶ୍ୱାସ ପ୍ରଶ୍ୱାସ ସଂପର୍କରେ ବୈଜ୍ଞାନିକ ବ୍ୟାଖ୍ୟା ହେଉଛି ଯେ, ଗୋଟିଏ ଶ୍ୱାସ ନିର୍ଗତ ହେଲେ ଅନ୍ୟ ଗୋଟିଏ ଶ୍ୱାସ ଗ୍ରହଣ କରାଯାଏ । ଏହା ମଝିରେ ସାମାନ୍ୟ ଅବକାଶ ରହିଯାଇଥାଏ, ସେତେବେଳେ କିଛି ସମୟ ପାଇଁ ଶାନ୍ତି ବିରାଜ କରେ । ରାତିରେ ଗାଢ଼ ନିଦ ସମୟରେ ମଧ୍ୟ କିଛି ସମୟ ନିଦ୍ରା ଏବଂ ମୁହୂର୍ତ୍ତକ ପାଇଁ ଜାଗୃତି ଏପରି ଚାଲିଥାଏ । ଏଥିରେ ନିଦ୍ରାର ସମୟ ପ୍ରଧାନ ଅର୍ଥାତ୍ ଅଶୀ ଭାଗ ନିଦ୍ରା ଆଉ କୋଡ଼ିଏ ଭାଗ ଜାଗୃତିର ସମୟ । ଜାଗୃତି ମଧ୍ୟରେ ମଧ୍ୟ ମୁହୂର୍ତ୍ତକ ପାଇଁ ଜାଗୃତି ଓ ମୁହୂର୍ତ୍ତକ ପାଇଁ ନିଦ୍ରା ଏପରି ଚାଲିଥାଏ । ଏ କ୍ଷେତ୍ରରେ ଜାଗୃତି ହିଁ ପ୍ରଧାନ ଅଂଶ – ଅଶୀ ଭାଗ ଜାଗ୍ରତ ଅବସ୍ଥା ଆଉ କୋଡ଼ିଏ ଭାଗ ନିଦ୍ରାର ଅବସ୍ଥା । ତା ନ ହେଲେ ମଣିଷର କ୍ଳାନ୍ତି ଆସିଯିବ । ଏପରି ଭାବରେ ଶ୍ୱାସ ପ୍ରଶ୍ୱାସ ଆସିବା ଯିବା କରୁଥାଏ ଏବଂ ଏହି ଦୁଇଟି ମଝିରେ ସାମାନ୍ୟ ଟିକିଏ ଶାନ୍ତି ବିରାଜମାନ କରେ, ଚିତ୍ତ ସେହି ସମୟରେ ପ୍ରକଟ ହୁଏ । ଏହିପରି ବିଚାର-ପ୍ରକ୍ରିୟା ବା ଚିନ୍ତନ ପ୍ରକ୍ରିୟା ଦ୍ୱାରା ମଧ୍ୟ ଚିତ୍ତ ଆବୃତ୍ତ ଥାଏ । କିନ୍ତୁ ଗୋଟିଏ ଆବରଣ ଚାଲିଗଲେ ଅନ୍ୟ ଆବରଣଟି ଆସେ ଏବଂ ଏହି ଦୁଇ ମଝିରେ ଚିତ୍ତ କିଛି ସମୟ ପାଇଁ

ତେଜି ଉଠେ । ଏହି ସମୟରେ ଚିତ୍ତ ସବୁ ଚିନ୍ତାରୁ ମୁକ୍ତ ଓ ସମସ୍ତ ବିଚାରରୁ ମୁକ୍ତ ରହିଥାଏ । ଏପ୍ରକାର ନ ହେଲେ ମଣିଷ ମନରେ ଶାନ୍ତି ଆସନ୍ତା ନାହିଁ । ଏଥିପାଇଁ କେହି କେହି ଏହି ମଧ୍ୟବର୍ତ୍ତୀ ସମୟକୁ ଦୀର୍ଘତର କରିବାର ପ୍ରଚେଷ୍ଟା କରନ୍ତି ।

ଏହାରି ବର୍ଣ୍ଣନା କରିବାକୁ ଯାଇ ଶଂକରାଚାର୍ଯ୍ୟ କହିଛନ୍ତି –

ନଷ୍ଟେ ପୂର୍ବ ବିକଳ୍ପେ ତୁ ଯାବଦ୍ ଅନ୍ୟସ୍ୟ ନୋଦୟଃ ।
ନିର୍ବିକଳ୍ପକ-ଚୈତନ୍ୟଂ ସ୍ପଷ୍ଟ ତାବଦ୍ ବିଭାସତେ ॥

ପୂର୍ବ ବିକଳ୍ପ, କଳ୍ପନା, ଚିନ୍ତନ-କାର୍ଯ୍ୟ ଏସବୁ ଶେଷ ହେବା ପରେ ଅନ୍ୟପ୍ରକାର ଭାବନା ଓ କଳ୍ପନାର ଉଦୟ ନ ହେବା ପର୍ଯ୍ୟନ୍ତ ଏହାର ମଧ୍ୟବର୍ତ୍ତୀ ଅବସ୍ଥାରେ କଳ୍ପନା ରହିତ ଚୈତନ୍ୟାବସ୍ଥା ଯାହାକୁ 'ନିର୍ବିକଳ୍ପ ଚୈତ୍ୟନ୍ୟମ୍' ବୋଲି କୁହାଯାଏ, ତାହା ସ୍ପଷ୍ଟ ଭାବରେ ପ୍ରକାଶମାନ ହୁଏ । ଏକଥା ମଣିଷ ଜାଣି ପାରେ ନାହିଁ, କିନ୍ତୁ ଟିକିଏ ଭାବି ଦେଖନ୍ତୁ – ଖାଇବାକୁ ବସିଛନ୍ତି – ଖାଇବା ଶେଷ ହେଲା, କିନ୍ତୁ ସଂଗେ ସଂଗେ ସଂଗେ ଉଠନ୍ତି ନାହିଁ । କିଛି ସମୟ ଶାନ୍ତ ହୋଇ ବସି ତାପରେ ଉଠନ୍ତି । କାରଣ, ଅନ୍ତବର୍ତ୍ତୀ ସମୟ ଭିତରେ ମୂଳ ସ୍ୱରୂପର ପ୍ରକାଶଲାଭ ହୁଏ । ଗୋଟିଏ କାମ ଶେଷ ହେବା ପରେ ଅନ୍ୟ ଗୋଟିଏ କାମ ଆରମ୍ଭ ହେବା ପୂର୍ବରୁ ଅନ୍ତବର୍ତ୍ତୀ ସମୟରେ ଏହି ଅନୁଭବ କରିବାକୁ ହୁଏ । ଶଂକରାଚାର୍ଯ୍ୟ କହିଛନ୍ତି, ଏହି ଯେଉଁ ଅନ୍ତବର୍ତ୍ତୀ ମୁହୂର୍ତ୍ତ, ମୁକ୍ତିର ମୁହୂର୍ତ୍ତ ତାହାକୁ ଅଧିକ ସମୟ ପର୍ଯ୍ୟନ୍ତ ବଢ଼ାନ୍ତୁ । ଶ୍ରାନ୍ତ କ୍ଳାନ୍ତ ବ୍ୟକ୍ତିଙ୍କ ପ୍ରତି ତାଂକର ଉପଦେଶ 'ବିଶ୍ରାମ ନିଅ' । ବିଶ୍ରାମର ଆବଶ୍ୟକତା  ହେଉଛି ଚୈତନ୍ୟର ଆବଶ୍ୟକତା ।

ଏହି ଯେଉଁ ମଧ୍ୟବର୍ତ୍ତୀ ସମୟର ବିକଳ୍ପ-ନିରୋଧ ତାହା ବିନା ଚେଷ୍ଟାରେ ହୋଇଯାଏ । କିନ୍ତୁ ତାହା କ୍ଷଣକ ପାଇଁ । ଏକ-ଦୁଇ-ତିନି ଏହିପରି କ୍ଷଣ ବଢ଼ାଇ ଯିବାର ଚେଷ୍ଟା କରିବାକୁ ହେବ । କ୍ରମେଣାଭ୍ୟସ୍ୟତାମ୍ ବ୍ରହ୍ମାନୁଭବକାଂକ୍ଷିଭିଃ । ଯାହାଙ୍କର ବ୍ରହ୍ମାନୁଭବର ଆକାଂକ୍ଷା ଅଛି ସେମାନଙ୍କର ଧିରେ ଧିରେ ମନକୁ ସ୍ଥିର କରିବାକୁ ହେବ । 'ସୋହମ୍' ମନ୍ତ୍ରର ଜପ କରୁ କରୁ ଅଥବା ମାଳା ଧରି ରାମ-ରାମ ଜପ ଦ୍ୱାରା ବିକଳ୍ପ ନିରୋଧର ଚେଷ୍ଟା କରାଯାଏ । କବୀର ବର୍ଣ୍ଣନା କରିଛନ୍ତି – (ସେ ତ 'ରିଫର୍ମର' – ସଂସ୍କାରକ ଥିଲେ, ପୁଣି ରସିକତା କରୁଥିଲେ) ।

'ମାଲା ତୋ କରମେଁ ଫିରେ,
ଜିଭ ଫିରେ ମୁଖ ମାହିଁ
ମନୁଆଁ ତୋ ଚହୁଁ ଦିଶ ଫିରେ,
ୟହ ତୋ ସୁମିରନ ନାହିଁ'
(ମାଳା ଘୁରେ ହାତରେ,
ଜିହ୍ୱା ଘୁରେ ମୁହଁରେ,
ମନ ଘୁରେ ଚାରି ଦିଗେ,
ଈଶ୍ୱର ସ୍ମରଣ ଏ ନୁହେଁରେ) ।

ମନକୁ ସ୍ଥିର ରଖିବା ପାଇଁ ସଂପୂର୍ଣ୍ଣ ଚେଷ୍ଟା କରିବାକୁ ହେବ । ଅତଏବ ଯାହାଙ୍କ ଭିତରେ ବ୍ରହ୍ମାନୁଭବର ଆକାଂକ୍ଷା ରହିଛି, ସେମାନେ ଯେପରି ଟିକେ ଟିକେ କରି ବିକଳ୍ପ-ନିରୋଧ କରନ୍ତି ।

ମନେହୁଏ, ଶିଶୁମାନଙ୍କ ମନ ପାଇଁ ଏକ-ଦୁଇ-ତିନି ଲେଖା ହୋଇଛି । ପିଲାମାନେ କୋଡ଼ିଏ-ପଚିଶ ମିନିଟ୍ ପର୍ଯ୍ୟନ୍ତ ଏକାଗ୍ର ହୋଇ ପାରନ୍ତି । ଯାଠୁ ବେଶୀ ସମୟ ପର୍ଯ୍ୟନ୍ତ ଏକାଗ୍ର ରହି ପାରନ୍ତି ନାହିଁ । ଏଥିପାଇଁ ପୂର୍ବରୁ ଶିଶୁମାନଙ୍କ ଶ୍ରେଣୀ (ପଢ଼ିବା ସମୟ) ୨୪ ମିନିଟ୍ ପର୍ଯ୍ୟନ୍ତ ନିର୍ଦ୍ଦିଷ୍ଟ ଥିଲା । ଶିଶୁ ବଡ଼ ହେବା ପରେ ପଢ଼ିବା ସମୟ ୪୮ ମିନିଟ୍ ଦୀର୍ଘ ହୁଏ । ତାହାକୁ ଇଂରାଜୀ ପିରିୟଡ୍ ବା ଘଣ୍ଟା କୁହାଯାଏ । ତାପରେ ତିନି ଘଣ୍ଟା ଅର୍ଥାତ୍ ଏକ ପ୍ରହରର ବର୍ଗ ବା କ୍ଲାସ । ଏକପ୍ରହର ପର୍ଯ୍ୟନ୍ତ ଏକାଗ୍ରତା ଲାଭ ହେଲେ ଅନେକ ବେଶୀ ଏକାଗ୍ରତା ସିଦ୍ଧି ହେଲା ବୋଲି ବୁଝିବାକୁ ହେବ । ଅସ୍ତ୍ରୋପଚାର ସମୟରେ ଶଲ୍ୟ ଚିକିତ୍ସକଙ୍କୁ କେତେ ଏକାଗ୍ର ହେବାକୁ ନ ପଡ଼େ ? କୌଣସି ଶିଶୁ ଲଡୁ ଖାଇଲା ବେଳେ କେତେ ଏକାଗ୍ର ହୁଏ ? ଅଥବା କୌଣସି ବସ୍ତୁ ନେଇ ଖେଳିବା ସମୟରେ ଶିଶୁ କେତେ ତନ୍ମୟ ହୋଇ ଖେଳେ ? ଏହିପରି ଝାଡୁ ଦେବା ସମୟରେ ରାମ-ରାମ କହୁ କହୁ ଚିତ୍ତ ଏକାଗ୍ର ହୋଇଗଲେ କେତେ ଆନନ୍ଦ ନ ହେବ ? ଗୋଟିଏ ବିକଳ୍ପ ଶେଷ ହୋଇଯିବା ପରେ ଅନ୍ୟ ଗୋଟିଏ ବିକଳ୍ପ ଆରମ୍ଭ ହୋଇଯାଏ । ତାର ମଧ୍ୟବର୍ତ୍ତୀ ସମୟରେ ଯେଉଁ ଅବସ୍ଥା ଥାଏ ତାହାକୁ ଯେତେ ବଢ଼େଇ ପାରିବ ବଢ଼ାଇ ଯାଅ — ଏକ ମୁହୂର୍ତ୍ତ, ଦୁଇ ମୁହୂର୍ତ୍ତ, ତିନି ମୁହୂର୍ତ୍ତରୁ ଏକ ଘଣ୍ଟା, ଦୁଇ ଘଣ୍ଟା, ତିନି ଘଣ୍ଟା —

ଜ୍ଞାନେଶ୍ୱର ମହାରାଜ ତାଙ୍କର ଅମୃତାନୁଭବ ଗ୍ରନ୍ଥରେ ଏହି ବିଷୟ ବର୍ଣ୍ଣନା କରିବା ସମୟରେ ନାନା ପ୍ରକାର ଉପମା ଦେଇ ବୁଝାଇଛନ୍ତି । ଯେପରି ବର୍ଷା କାଳରେ ନଦୀରେ ବନ୍ୟା ଆସେ, ଖରା କାଳରେ ନଦୀର ପାଣି କମିଯାଏ ପୁଣି ମଧ୍ୟବର୍ତ୍ତୀ କାଳରେ ଶୀତଦିନେ ନଦୀର ପାଣି ଶାନ୍ତ ଥାଏ । ତାର ଅସଲ ରୂପ ଦେଖାଯାଏ । ସେହି ପରି ନିଦ୍ରା ଓ ଜାଗୃତି ସମୟର ମଝାମଝି ଦୁଇଟି ସଂକଳ୍ପର ମଧ୍ୟବର୍ତ୍ତୀ ମୁହୂର୍ତ୍ତ ହେଲା ଶାନ୍ତିର ମୁହୂର୍ତ୍ତ । ଏହି ଯେଉଁ ମୁହୂର୍ତ୍ତ, ତାହାରି ଆଡ଼କୁ ମନ ଦେବା ଉଚିତ । ଆଉ ଏହି ମୁହୂର୍ତ୍ତ, ଏହି ସମୟ ଯେପରି ବଢ଼ିବ ସେଥିପାଇଁ ଚେଷ୍ଟା କରି ଚାଲିବା ଦରକାର । ଆଉ ଗୋଟିଏ ଉପମା ଦିଆ ହୋଇଛି — ଦିନ ଶେଷ ହୋଇ ଯାଇଛି, ରଜ ଗୁଣର କାର୍ଯ୍ୟକ୍ରମ ଶେଷ ହୋଇଛି, ତମଗୁଣର କ୍ରୀୟାଶୀଳତା ଆରମ୍ଭ ହୋଇନି, ମଝିରେ ଦଶ ପନ୍ଦର ମିନିଟ ମାତ୍ର ସନ୍ଧ୍ୟା ସମୟ ଯାହାକୁ ଦିନ ବା ରାତି କୁହାଯିବ ନାହିଁ -- ଏହପରି ଉଦାହରଣ ସାହାଯ୍ୟରେ ଜ୍ଞାନେଶ୍ୱର ମହାରାଜ ବିଷୟଟିକୁ ବୁଝାଇଛନ୍ତି ।

ଶଂକରାଚାର୍ଯ୍ୟ କହନ୍ତି ଯେ ବୃତ୍ତି ଗୁଡ଼ିକୁ ସଂଯତ କରନ୍ତୁ । କେତେବେଳେ ସଂଯତ କରିବେ ? ଯେତେବେଳେ ଶୋଇବାକୁ ଯିବେ ସେତେବେଳେ ଶାନ୍ତି ଓ ମୌନତା ରକ୍ଷା କରିବେ । ଶଯ୍ୟାରେ ବସି ଧ୍ୟାନ କରିବେ । ପ୍ରାତଃ କାଳରେ ଉଠିବା ପରେ ଧ୍ୟାନ କରନ୍ତୁ । ପାଂଚ ମିନିଟ, ଦଶ ମିନିଟ, ପନ୍ଦର ମିନିଟ, ଏହିପରି ଭାବରେ ବଢ଼େଇ ଯାଆନ୍ତୁ । ମଝି ମଝିରେ ଯେତେବେଳେ ସମୟ ପାଇବେ, ସେତେବେଳେ ଧ୍ୟାନ କରନ୍ତୁ । ତେବେ ଯାଇ ଧ୍ୟାନର ଶକ୍ତି ବଢ଼ିବ ।

ନିଜ ମନର ଅସଂଖ୍ୟ ବାସନା ମଧ୍ୟରେ ତୁଳନା କରି ଦେଖିବେ କେଉଁ ପ୍ରକାର ବାସନା ସବୁଠାରୁ ପ୍ରବଳ । ବାକି ସବୁ ବାସନା ଗୁଡ଼ିକୁ ଛାଡ଼ି ଏହି ଗୋଟିଏ ବାସନାକୁ ତନ୍ମୟ ହୋଇ ଥାଆନ୍ତୁ । ତାରି ମଧ୍ୟରେ ନିଜ ଚିତ୍ତକୁ ଏକାଗ୍ର ରଖନ୍ତୁ । ମନେକରନ୍ତୁ କୌଣସି ବିଦ୍ୟାର୍ଥୀର ନାନା ପ୍ରକାର ବାସନା ଭିତରେ ବେଦାଭ୍ୟାସ କରିବାର ଇଚ୍ଛା ଅଛି, ଏବଂ ତାହା ଅନ୍ୟାନ୍ୟ ବାସନା ଠାରୁ ପ୍ରବଳ । ସେ ଗୁରୁଗୃହରେ ବାସ କରିବ, ଯାହା ମିଳିବ ତାକୁ ଖାଇ ଅଧ୍ୟୟନ କରିବ । ଅର୍ଥାତ୍ ସେ ଭଲ ଖାଇବାର ବାସନାକୁ ମନରୁ ମାରି ଦେବ । ଏଇ ଭାବରେ ନିଜର ପ୍ରଧାନ ବାସନାକୁ ପ୍ରମାଣ ସ୍ୱରୂପ ମାନି ନେଇ ସେହି ଅନୁଯାୟୀ ସାରା ଜୀବନ ପରିଚାଳିତ କରିବା ହେଉଛି ଧ୍ୟାନ ଯୋଗର ବାଟ ।

ଅନ୍ୟ ସବୁ ବାସନାକୁ ଦୂର କରି କେବଳ ମାତ୍ର ଗୋଟିଏ ବାସନାକୁ ଚିନ୍ତାର କେନ୍ଦ୍ରଭୂମିରେ ରଖି ପୁଣି ତାକୁ ଛାଡ଼ି ଦେବାକୁ ହେବ । ଏହା ହେଉଛି ସେହି ଯୁକ୍ତି । ଏକାଗ୍ରତା ସିଦ୍ଧି ହେବା ପରେ ଏହି ବାସନାକୁ ତ୍ୟାଗ କରି ମୁକ୍ତ ହେବାକୁ ହେବ ।

ମନରେ ଏକାଗ୍ରତା ଆଣିବା ପାଇଁ ପ୍ରାର୍ଥନା ଭିତରେ କେଉଁଠି କେଉଁଠି ସଂଗୀତର ବ୍ୟବସ୍ଥା ରଖାଯାଏ, କେଉଁଠି ଜ୍ୟୋତି ରଖାଯାଏ, କେଉଁଠି ଧୂପ ଦୀପ ରଖାଯାଏ । ଏସବୁ ଏକାଗ୍ରତାର ଅନୁକୂଳ ବ୍ୟବସ୍ଥା । ଯଥାର୍ଥରେ ଏହା ଏକ ପ୍ରୟୋଗ । କିନ୍ତୁ ଆମେ ଏହାକୁ ବାସନାର ରୂପାନ୍ତର ବୋଲି ମନେକରୁ । ଏପ୍ରକାର ଏକାଗ୍ରତାକୁ ଆମେ ଖୁବ୍ ବେଶୀ ମୂଲ୍ୟ ଦେଉ ନାହିଁ । ଛୋଟ ପିଲା ମିଠେଇ ଖାଉଖାଉ ଖୁବ୍ ତନ୍ମୟ ହୋଇଯାଏ, ପାଠ ପଢୁଥିବା ବ୍ୟକ୍ତିର ଚିତ୍ତ ଏକାଗ୍ର ହୋଇଯାଏ । ଅସ୍ତ୍ରୋପଚାର କରିବା ସମୟରେ ଚିକିତ୍ସକ ଏକାଗ୍ର ଚିତ୍ତ ହୋଇଯାଏ । ସେହିପରି ଗୀତ ଶୁଣିଶୁଣି ଚିତ୍ତ ତନ୍ମୟ ହୋଇଯାଏ । କାର୍ଯ୍ୟରେ ଏକାଗ୍ରତା ନ ରହିଲେ ସେହି କାର୍ଯ୍ୟ ଅସଫଳ ହୋଇଥାଏ । ଏପ୍ରକାର ଏକାଗ୍ରତାର ବାସ୍ତବ (ବ୍ୟବହାରିକ) ମୂଲ୍ୟ ଅଛି । ଲାଭ ଅଛି କିନ୍ତୁ ଆଧ୍ୟାତ୍ମିକ ଦୃଷ୍ଟିକୋଣରୁ ଏହାର କୌଣସି ମୂଲ୍ୟ ଅଛି ବୋଲି ଆମେ ମନେ କରୁନାହିଁ । ନଦୀର ଗୋଟିଏ କୂଳରୁ ଅନ୍ୟ କୂଳକୁ ଯିବାକୁ ହେଲେ ମଝିରେ ପୋଲ ବାନ୍ଧିବା ଦରକାର ପଡ଼େ । ଉଭୟ କୂଳରେ ବନ୍ଧର ମୂଳଦୁଆ ବନ୍ଧା ହୋଇଥାଏ । ଠିକ୍ ସେହିପରି ମଣିଷକୁ ଭୋଗର ବାଟରୁ ଭକ୍ତିର ପଥକୁ ଆଣିବାକୁ ହେଲେ ସଂଗୀତର ସେତୁର ଆବଶ୍ୟକତା ରହିଛି ।

ଛୋଟ ଶିଶୁଙ୍କ ମନରେ ଏକାଗ୍ରତା ଥାଏ । ତାର ନିର୍ମଳ ମନ ସହଜରେ ଧ୍ୟାନସ୍ଥ ହୋଇଯାଏ ଅବଶ୍ୟ ତାର ମସ୍ତିଷ୍କର ଶକ୍ତି କମ୍ ଥିବାରୁ ତାର ଧ୍ୟାନ ଖୁବ୍ ବେଶୀ ସମୟ ସ୍ଥାୟୀ ହୋଇ ପାରେ ନାହିଁ । ତାହା ଭିନ୍ନ କଥା । କିନ୍ତୁ ଏକାଗ୍ରତା ତା ପକ୍ଷରେ ଖୁବ୍ ସହଜ ବ୍ୟାପାର । ଏପ୍ରକାର ସହଜଲବ୍ଧ ଏକାଗ୍ରତାର କାରଣ ହେଉଛି ମନରେ ଆବର୍ଜନାର ଅଭାବ । ଚିତ୍ତ ଶୁଦ୍ଧି ହେଉଛି ସ୍ଥାୟୀ ଏକାଗ୍ରତା ଅର୍ଜନର ପ୍ରଧାନ ଏବଂ ପ୍ରତ୍ୟକ୍ଷ ଉପାୟ । ବାକି ସବୁ ଉପାୟ ନିରାଟ ବାହ୍ୟ ଉପଚାର ମାତ୍ର ।

ଚିତ୍ତ ଯେତେବେଳେ ବାସନାରେ ପରିପୂର୍ଣ୍ଣ ସେତେବେଳେ କେବଳ ମାତ୍ର ବାହ୍ୟିକ ସାଧନ ଦ୍ୱାରା କିପରି ଏକାଗ୍ରତା ଅର୍ଜନ କରାଯାଇ ପାରିବ ? ନିଦ ଭଲ ହୋଇଛି ଶୌଚ-ସ୍ନାନ

ସରିଛି, ଯାହା ଫଳରେ ଚିତ୍ତ ପ୍ରଫୁଲ୍ଲ ରହିଛି, ଆସନରେ ସିଧା ହୋଇ ନିବିଷ୍ଟ ମନରେ ବସିଛ, ଦୃଷ୍ଟି ଅର୍ଦ୍ଧ ନିମିଳିତ ହୋଇଛି, ଧ୍ୟାନ ପାଇଁ କୌଣସି ଶ୍ଳୋକ ଅଥବା ନାମ ଗୁଣୁ ଗୁଣୁ କରି ବୋଲା ହେଉଛି, କୌଣସି ମୂର୍ତ୍ତି, ଚିତ୍ର, ଜ୍ୟୋତି ବା ଜଳଧାରା ଆଖି ଆଗରେ ଅଛି, କେଉଁଠୁ ଶାନ୍ତ ସଂଗୀତର ମଧୁର ସ୍ୱର ଶୁଭୁଛି । ଏତେ ପ୍ରକାର ଅନୁକୂଳ ପରିସ୍ଥିତି ହେଲେ ଯାଇ ଦଶ, ପାଞ୍ଚ ମିନିଟ ପାଇଁ ଏକାଗ୍ରତା ଲାଭ ହୋଇପାରେ । ଏହି ଏକାଗ୍ରତା ବାହ୍ୟ ସାଧନ ଦ୍ୱାରା ଆସିଥାଏ । ସୁତରାଂ କିପରି ଏହା ସ୍ଥାୟୀ ହୋଇ ପାରିବ ? ସମାଧି ଯଦି ଆତ୍ମାର ମୂଳ ଅବସ୍ଥା ହୁଏ ତାହାହେଲେ ତାହା ସହଜ ଭାବରେ ହେବା ଉଚିତ । ଏଥିପାଇଁ ବାହ୍ୟିକ ଚେଷ୍ଟାର କୌଣସି ଆବଶ୍ୟକତା ନାହିଁ । କିଛି ବ୍ୟବସ୍ଥା ନ କରି ମଧ ସମାଧିସ୍ଥ ହେବା ଉଚିତ । ଖାଇବା ପିଇବା, ଦେଖାଶୁଣା କରିବା, ଚଲାବୁଲା କରିବା ଏସବୁ ହେଉଛି କେତେଗୁଡ଼ିଏ କ୍ରିୟା, ଏସବୁ ପାଇଁ ପରିଶ୍ରମ ଓ ପ୍ରଚେଷ୍ଟାର ପ୍ରୟୋଜନ ହୋଇପାରେ । କିନ୍ତୁ ସମାଧି ହେଲା ଆତ୍ମାର ମୂଳ ସ୍ଥିତି । ତାପାଇଁ ବାହାରର ପ୍ରଚେଷ୍ଟା ବା ପରିଶ୍ରମର ପ୍ରୟୋଜନ ହେବ କାହିଁକି ?

ଗୀତାରେ ଉଲ୍ଲେଖ ଅଛି, "ଯେଉଁ ମୁହୂର୍ତ୍ତରେ ଚିତ୍ତଶୁଦ୍ଧି ହୁଏ, ସେହି ମୁହୂର୍ତ୍ତରେ ଏକାଗ୍ରତା ଲାଭ ହୁଏ" । ସବୁପ୍ରକାର ପ୍ରଚେଷ୍ଟା ଛାଡ଼ିବା ଦ୍ୱାରା ଯେଉଁ ଅବସ୍ଥା ସୃଷ୍ଟି ହୁଏ ତାହା ସହଜରେ ଲାଭ ହେବା ଉଚିତ, ଏକଥା କହିବାର ପ୍ରୟୋଜନ ହୁଏ ନାହିଁ । କେହି କେହି କହନ୍ତି, ଚେଷ୍ଟା ତ କରୁଛୁ କିନ୍ତୁ ନିଦ ଆସୁନାହିଁ । ମୁଁ ସେମାନଙ୍କୁ କୁହେ, 'ତୁମେ ଚେଷ୍ଟା କର, ସେଇଥିପାଇଁ ନିଦ ଆସେ ନାହିଁ । ଚେଷ୍ଟା ହେଲା ନିଦ୍ରାର ବିଶୁଦ୍ଧ କାମ' । ଚେଷ୍ଟା ଛାଡ଼ି ଦେଲେ ନିଦ ଆପେ ଆପେ ଆସିବ । ଏହା ହେଲା ଏକାଗ୍ରତା ଲାଭର ବିଷୟ । ସବୁ ଚେଷ୍ଟା ଛାଡ଼ି ଦେବା ପରେ, ଯଥାର୍ଥ ଏକାଗ୍ରତା, ସ୍ୱାଭାବିକ (ସହଜ) ଏକାଗ୍ରତା ଲାଭ ହୁଏ । ଏକାଗ୍ରତାର ଚେଷ୍ଟା ହିଁ ମନ ଉପରେ ବିପରୀତ କ୍ରିୟା ସୃଷ୍ଟି କରେ ଏବଂ କିଛି କ୍ଷଣ ଏକାଗ୍ରତା ରହିବା ପରେ ପୁଣି ଅସ୍ଥିରତା ଆସେ ।

କିନ୍ତୁ ତାର ଅର୍ଥ ଏହା ନୁହେଁ ଯେ, ଯେ ପର୍ଯ୍ୟନ୍ତ ସ୍ୱଭାବିକ ଏକାଗ୍ରତା ଲାଭ କରିବା ସଂଭବ ନ ହୋଇଛି ସେ ପର୍ଯ୍ୟନ୍ତ ବାହ୍ୟିକ ସାହାଯ୍ୟ ଦ୍ୱାରା ଏକାଗ୍ରତାର ଅଭ୍ୟାସ କରିବା ଉଚିତ ନୁହେଁ । ସାଧକର ସାଧନ କର୍ମରେ ବାହ୍ୟ ଉପକରଣ ଦ୍ୱାରା ମଧ ସହାୟତା ମିଳିପାରେ । ଅତଏବ ସେମାନଙ୍କର ସହାୟତା ନେବା ଉଚିତ ହେବ ।

ପ୍ରାତଃ କାଳ ହେଉଛି ସାଧନା କରିବା ପାଇଁ ସବୁଠାରୁ ଉପଯୁକ୍ତ ସମୟ । ପ୍ରାତଃ କାଳ ତୁଳନାହୀନ । ତାହାକୁ ସତ୍‌ଗୁଣର ପ୍ରତୀକ ବୋଲି ମନେ କରାଯାଏ । ଅନ୍ଧକାର ଶେଷ ହୋଇଛି, ଏପର୍ଯ୍ୟନ୍ତ ଆଲୋକର ପ୍ରକାଶ ହୋଇନାହିଁ । ଦିନ ହେଉଛି ରଜୋଗୁଣର ଅଂଶ ଏବଂ ରାତ୍ରି ତମୋଗୁଣର ପ୍ରତିନିଧି ବୋଲି ଧରାଯାଏ । ସନ୍ଧି କାଳ ହେଉଚି ସତ୍‌ଗୁଣର । ଆତ୍ମାର ସମତ୍ୱର, ପ୍ରଶାନ୍ତତାର ପ୍ରତିନିଧି । ଏଥିପାଇଁ ସନ୍ଧିକାଳରେ ଉପାସନା କରିବାର ନିୟମ ରହିଛି । ଏହି ସମୟର ଦୃଶ୍ୟ ଅତି ମନୋରମ, ପବିତ୍ର ଏବଂ ଉଦ୍‌ବୋଧକ । ଏହି ସମୟ ହେଉଛି ଏକାଗ୍ରତା ଲାଭର ଉତ୍କୃଷ୍ଟ ସମୟ । ପ୍ରାତଃ କାଳ ଯଦି ହରାଇ ବସିବ ତେବେ ଜାଣିଥାଅ ସାରା ଦିନଟା ତୁମର ବ୍ୟର୍ଥ ହୋଇଗଲା । ସୁତରାଂ ଧ୍ୟାନ ପାଇଁ ଏହି ସମୟଟାକୁ କାମରେ ଲଗାଇବା ନିଃସନ୍ଦେହରେ ଶ୍ରେଷ୍ଠ

ସମୟ । କିନ୍ତୁ ଚିତ୍ତକୁ ବାହାରୁ ଠେସ ଦେଇ ଯଦି ଠିଆ କରାଯାଏ ତାହା ଏକ ପ୍ରକାର କାର୍ଯ୍ୟ ଏବଂ ଚିତ୍ତ ଯଦି ନିଜେ ପ୍ରାଚୀର ପରି ସିଧା ଛିଡ଼ା ହେବ ତ ତାହା ଅନ୍ୟ ପ୍ରକାର କାର୍ଯ୍ୟ ।

ଚିତ୍ତ ଯେତେବେଳେ ଶୁଦ୍ଧତା ଲାଭ କରେ, ନିର୍ବିକାର ହୋଇଯାଏ ତେବେ ସେ ନିଜେ ନିଜର ଶକ୍ତି ବଳରେ ସ୍ୱାଭାବିକ ଭାବରେ ସିଧା ହୋଇ ଦଣ୍ଡାୟମାନ ହେବ । ଏହି କଥା ପତଞ୍ଜଳୀ ମଧ କହିଛନ୍ତି । ତାଙ୍କ ମତରେ ଧାନ ଯୋଗ ପାଇଁ ଯମ-ନିୟମ (ଯମ -- ଅହିଂସା, ସତ୍ୟ, ଅସ୍ତେୟ, ବ୍ରହ୍ମଚର୍ଯ୍ୟ, ଅପରିଗ୍ରହ । ନିୟମ -- ସନ୍ତୋଷ, ଶୌଚ, କ୍ଷମା, ସରଳତା, ଈଶ୍ୱର ପ୍ରାଣଧନ) ପାଳନ କରିବା ଆବଶ୍ୟକ । ଯମ ନିୟମ ଚିତ୍ତ ଶୁଦ୍ଧିର ସାଧନା । ଚିତ୍ତ ଶୁଦ୍ଧ ହେଲେ ପ୍ରସନ୍ନତା ପ୍ରାପ୍ତ ହୁଏ । ତାପରେ ବୁଦ୍ଧି ସ୍ଥିର ହେବାର ଅଥବା ଏକାଗ୍ର ହେବାର ଚିନ୍ତା କରିବାର ଆବଶ୍ୟକତା ଆଉ ରହେ ନାହିଁ । ଯାହାର ଚିତ୍ତ ପ୍ରସନ୍ନତା ଲାଭ କରିଛି ତାର ବୁଦ୍ଧି ଶୀଘ୍ର ସ୍ଥିରତା ଲାଭ କରିବ ।

"ପ୍ରସନ୍ନଚେତସୋ ହ୍ୟାଶୁ ବୁଦ୍ଧିଃ ପର୍ଯ୍ୟବତିଷ୍ଠତେ ।" (ଗୀତା - ୨-୬୫)

ଯେତେବେଳେ ଆମେ ଧାନରେ ବସୁ ସେତେବେଳେ ବାହ୍ୟ ପରିବେଶର ଅନୁକୂଳତା ଆଶାକରୁ । ପରିବେଶ ଯଦି ଅଶାନ୍ତ ହୁଏ, ପରିସ୍ଥିତି ଯଦି ପ୍ରତିକୂଳ ହୁଏ ତାହାହେଲେ ଧାନ ପାଇଁ ଆଶାନୁରୂପ ଏକାଗ୍ରତା ଲାଭ ହୋଇପାରେ ନାହିଁ । ଆମେ ଧାନ କରିବାକୁ ବସିଲୁ, ଆଉ କୁକୁରଟିଏ ପାଖରେ ଭୁକିବାକୁ ଲାଗିଲା, ତେବେ ତ ଧାନରେ ବିଘ୍ନ ଘଟିବ । ଏଥିପାଇଁ ଧାନ ପାଇଁ ଏପରି ସ୍ଥାନ ହେବା ଦରକାର ଯେଉଁଠାରେ କୌଣସି ପ୍ରକାରର ଗୋଳମାଳ ନ ଥିବ । ଏହା ଠିକ୍ କଥା । କିନ୍ତୁ ଏହାକୁ ଅନ୍ୟ ଏକ ଦୃଷ୍ଟିଭଙ୍ଗୀରୁ ମଧ ଦେଖା ଯାଇପାରେ । ଆମେ ଧାନରେ ବସିଲୁ ଆଉ ନାନା ପ୍ରକାର ଗୋଳମାଳ ଆରମ୍ଭ ହେଲା, ସେତେବେଳେ ଏହି ଗୋଳମାଳକୁ ହିଁ ପରମେଶ୍ୱରଙ୍କର ଧାନ ବୋଲି ମନେ କରିବା ଉଚିତ । ଯେଉଁ ସବୁ କୁକୁର ଗୁଡ଼ିକ ଭୁକୁଛନ୍ତି ସେମାନେ କୁକୁର ନୁହନ୍ତି, ବରଂ ଧାନ ସମୟରେ ଭଗବାନ ନିଜର ରୂପ ଦେଖାଉଛନ୍ତି । ଏପରି ଚିନ୍ତା କରିବାକୁ ଲାଗିଲେ ତ ସଂଗେ ସଂଗେ ସମାଧି ଲାଭ ହୋଇଯିବ ।

କୌଣସି ଅସୁସ୍ଥ ବ୍ୟକ୍ତି ଯେପରି କିଛି ଦିନ ପାଇଁ ବାୟୁ ପରିବର୍ତ୍ତନ କରିବାକୁ ବାହାରକୁ ଯାଏ ଏବଂ ସୁସ୍ଥ ହୋଇ ଫେରିଆସେ, ଏପରି ଆବଶ୍ୟକତା ଅନୁଭବ କଲେ ଧାନ ପାଇଁ ନିର୍ଜନ ସ୍ଥାନକୁ ଯିବାର ବ୍ୟବସ୍ଥା କରାଯାଇପାରେ । ଆବଶ୍ୟକୀୟ ଶକ୍ତି ସଂଗ୍ରହ କରି ଫେରି ଆସିପାରେ । ନିର୍ଜନରେ ବସବାସ କରୁଥିବା ବ୍ୟକ୍ତିର ମଧ ସମାଜର ଆବଶ୍ୟକତା ଅଛି । ସମାଜ ସମସ୍ତଙ୍କୁ ଭରଣପୋଷଣ ଯୋଗାଏ । ଏଥିପାଇଁ ସମାଜ ଛାଡ଼ି ଯିବା ଉଚିତ ନୁହେଁ । ରାତିରେ ଶୋଇବା ସମୟରେ ମୌନତା ଅବଲମ୍ବନ କରି ଈଶ୍ୱରଙ୍କୁ ସ୍ମରଣ କରନ୍ତୁ ଏବଂ ଈଶ୍ୱରଙ୍କୁ ଧାନ କରୁ କରୁ ଗଭୀର ନିଦ୍ରାରେ ବୁଡି ଯାଆନ୍ତୁ । ଏହାହିଁ ଯଥାର୍ଥ ନିର୍ଜନତା । ଏକାଗ୍ରତା ପାଇଁ କାହାରି କାହାରି ନିର୍ଜନତାର ପ୍ରୟୋଜନ ହୋଇଥାଏ । ନିର୍ଜନତା (ଏକାକୀତ୍ୱ) ପୁଣି କେତେଙ୍କୁ କଳ୍ପନା ଏବଂ ଦୁଶ୍ଚିନ୍ତା ପାଇଁ କଷ୍ଟ ଦିଏ । ପ୍ରକୃତରେ ନିର୍ଜନତା ପୂର୍ଣ୍ଣ ଜୀବନ ଏବଂ ସାମାଜିକ ଜୀବନ ଉଭୟ କ୍ଷେତ୍ରରେ ଆମକୁ ସମାନ ଭାବରେ ଅଭ୍ୟସ୍ତ ହୋଇ ରହିବା ଉଚିତ । ଉଭୟ ପ୍ରକାର ଜୀବନରେ ସମାନ ଆନନ୍ଦ ପାଇବା ଦରକାର ।

ଧ୍ୟାନ ଏପରି କିଛି କାମ ନୁହେଁ ଯାହାର ସମୟକୁ ଘଣ୍ଟା କଣ୍ଟା ଧରି ମାପିବାକୁ ହେବ । କାମ ପାଇଁ ଘଣ୍ଟା ଦରକାର ହୁଏ । ତାପାଇଁ ମଜୁରୀର ବ୍ୟବସ୍ଥା ମଧ୍ୟ ଥାଇ ପାରେ; ଯେହେତୁ ଜଣଙ୍କର ଶକ୍ତି ଅପେକ୍ଷା ଅନ୍ୟଜଣଙ୍କର ଶକ୍ତି କମ୍ ବେଶୀ ଥାଇପାରେ । କିନ୍ତୁ ଦୁଇଜଣଙ୍କ ଶାରୀରିକ ଶକ୍ତିରେ ଯେଉଁ କାର୍ଯ୍ୟ ହୁଏ, ତା ଭିତରେ ଖୁବ୍ ବେଶୀ ତଫାତ୍ ରହେ ନାହିଁ, ଘଣ୍ଟାକରେ ଜଣେ ମଣିଷ ଯେତିକି କାମ କରିବ, ତାଠାରୁ ଦୁଇଗୁଣ ବା ତିନିଗୁଣ କାମ ଅନ୍ୟଜଣେ ମଣିଷ କରିପାରିବ । କିନ୍ତୁ ଏଇଟା କଦାପି ସଂଭବ ନୁହେଁ ଯେ ଜଣେ ମଣିଷ ଯାହା କରିବ, ତାଠାରୁ ହଜାର ଗୁଣ ବେଶୀ ଅନ୍ୟ କେହି କରିପାରିବ । ଧ୍ୟାନ ଏହିପରି ହୁଏ । ଜଣେ ବ୍ୟକ୍ତି ପନ୍ଦର ମିନିଟ୍‌ରେ ଯେତିକି ଧ୍ୟାନ କରିବ, ଅନ୍ୟଜଣେ ମଣିଷ ପାଂଚ ମିନିଟ୍‌ରେ ତାଠାରୁ ଶହେ ଗୁଣ ବେଶୀ ଧ୍ୟାନ କରିବ । ସେଥିପାଇଁ ସମୟର ହିସାବରେ ଏହାର ବିଚାର ହୋଇପାରେ ନାହିଁ ।

ପଓନାର ଆଶ୍ରମରେ "କୋଟୀବାବା" ଥିଲେ । ସେ ପ୍ରତିଦିନ ଛାତରେ ବସି ଧ୍ୟାନ କରନ୍ତି । ଆରମ୍ଭରେ ଦଶ, ପନ୍ଦର ମିନିଟ କରୁଥିଲେ । କ୍ରମଶଃ ସମୟ ବଢ଼ାଇ ବଢ଼ାଇ ଦୁଇ-ତିନି ଘଣ୍ଟା ପର୍ଯ୍ୟନ୍ତ ଧ୍ୟାନ କରୁଥିଲେ । ଦିନେ ସକାଳ ପ୍ରାର୍ଥନା ପରେ ପ୍ରାୟ ପାଂଚଟା ସମୟରେ ଧ୍ୟାନରେ ବସିଲେ ଆଉ ଉପରଓଳି ତିନିଟା ସମୟରେ ଧ୍ୟାନରୁ ଉଠିଲେ । ଅର୍ଥାତ୍ ନଅ-ଦଶ ଘଣ୍ଟା ଧ୍ୟାନ ହେଲା । ସେ ସମୟରେ ମୁଁ ଜେଲରେ ଥିଲି । ସେଠାକାର ଭାଇମାନେ ତାଙ୍କ ସଂପର୍କରେ ମୋତେ ଲେଖିଥିଲେ । କୋଟୀବାବା ମଧ୍ୟ ଏକଥା ବର୍ଣ୍ଣନା କରିବାକୁ ଯାଇ ଲେଖିଥିଲେ ଯେ ଏହାଦ୍ୱାରା ପରମ ଆନନ୍ଦର ଅନୁଭୂତି ସେ ପାଉଛନ୍ତି । ସେ ସମୟରେ ମୁଁ ତାଙ୍କୁ ଲେଖିଥିଲି ଯେ ସ୍ୟାକାରିନ ନାମକ ଗୋଟିଏ ବସ୍ତୁ ବାହାରିଛି । ଗୋଟିଏ ଗ୍ଲାସ ପାଣିରେ ୫ ତୋଳା ଚିନି ମିଶାଇଲେ ଯେତିକି ମିଠା ହେବ, ସ୍ୟାକାରିନ୍‌ର ଦୁଇ-ତିନି ଠୋପା ବ୍ୟବହାର କଲେ ସେତିକି ମିଠା ହେବ । ଅର୍ଥାତ୍ ଏହା ହେଉଛି ଘନୀଭୂତ ଶର୍କରା । ଆପଣଙ୍କ ଧ୍ୟାନରେ ଆନନ୍ଦର ଯେଉଁ ଅନୁଭୂତି ହୋଇଛି, ତାହା ଉପଭୋଗରେ ପରିଣତ ହୋଇଛି । ଏଥିପାଇଁ ୨୪ ମିନିଟ୍‌ରେ ଗୋଟିଏ ଘଡ଼ି ହୁଏ । ଏହି ସମୟ ମଧ୍ୟରେ ସବୁକାମ ସାରି ଦିଅନ୍ତୁ । ତାପରେ ନଅ-ଦଶ ଘଣ୍ଟାରେ ଯେଉଁ ଅନୁଭୂତି ଆସିଛି ତାଠାରୁ ଅଧିକ ଆନନ୍ଦ ୨୪ ମିନିଟରେ ହେବ । ସେ ଏହି ପ୍ରକ୍ରିୟାରେ କାର୍ଯ୍ୟ ଆରମ୍ଭ କଲେ । ଏବଂ ମାସେ-ଅଧେ ପରେ ମୋତେ ଲେଖିଲେ ଯେ, ଯା ପୂର୍ବରୁ ଯାହା କେବେ ହୋଇନାହିଁ, ସେତିକି ଆନନ୍ଦର ଅନୁଭବ ମୋର ହୋଇଛି ଏବଂ ଆପଣ ମୋତେ ବିଷୟାସକ୍ତିରୁ ବଂଚାଇଛନ୍ତି । ଏହାର ଅର୍ଥ ହେଉଛି ଯେ ତାଙ୍କ ନିକଟରେ ଧ୍ୟାନ ଥିଲା ବିଷୟାମୁକ୍ତି । ଧ୍ୟାନପ୍ରତି ଗୋଟିଏ ପ୍ରକାର ତନ୍ମୟତା ଆସି ଯାଇଥିଲା । ଥରେ ଧ୍ୟାନ ଶେଷ ହେଲାମାତ୍ରେ ଦ୍ୱିତୀୟ ଥର ଧ୍ୟାନ ଆସିଯାଉଥିଲା । ଗୋଟିଏ ଆସକ୍ତି ଯିବାମାତ୍ରେ ଆଉ ଗୋଟିଏ ଆସକ୍ତି ପହଂଚି ଯାଉଥିଲା । ଧ୍ୟାନର ମଧ୍ୟ ଆସ୍ୱାଦନ ହୁଏ । ନିର୍ଦ୍ଦିଷ୍ଟ ସମୟଠାରୁ ଅଧିକ ସମୟ ପର୍ଯ୍ୟନ୍ତ ଧ୍ୟାନ କରିବାର ଅର୍ଥ ତାର ରସ ଆସ୍ୱାଦନ କରିବା, ତାହା ଦ୍ୱାରା ଅସ୍ୱାଦ ବ୍ରତ ଖଣ୍ଡନ ହୁଏ ।

## ଖ). ଧ୍ୟାନ ଏବଂ କର୍ମ

* ପରସ୍ପରର ପରିପୂରକ ଶକ୍ତି ।
* ଦୁଇଟିର ସମନ୍ୱୟରେ ପ୍ରଜ୍ଞାର ଜନ୍ମ ।
* କର୍ମରେ ତନ୍ମୟତା ହେଉଛି ଧ୍ୟାନ ।

* କର୍ମ ହେଉଛି ଧ୍ୟାନର ଆଲମ୍ବନ (ଅବଲମ୍ବନ) ।
* ପ୍ରବୃତ୍ତିକୁ କମ୍ ନ କରି ବୃତ୍ତିକୁ କମ୍ କରିବା ହେଉଛି ଆଧ୍ୟାତ୍ମିକତା ।
* ଚିତ୍ତର ସାବଧାନତା ପ୍ରତି ଗୁରୁତ୍ୱ ଦେବାକୁ ହେବ, ଏକାଗ୍ରତା ପ୍ରତି ନୁହେଁ ।
* ଧ୍ୟାନ ମାର୍ଗରେ ସଂଶୋଧନର ପ୍ରୟୋଜନ ।

ହିମାଳୟର ନାମ ନେଇ ମୁଁ ଘର ଛାଡ଼ିଥିଲି କିନ୍ତୁ ଦୈବ ଯୋଗକୁ ଗାନ୍ଧିଜୀଙ୍କ ନିକଟରେ ପହଂଚି ଗଲି । ଧ୍ୟାନ ଇତ୍ୟାଦି ପାଇଁ ହିମାଳୟକୁ ଯିବାର ଇଚ୍ଛା ଥିଲା, କିନ୍ତୁ ଗାନ୍ଧିଜୀଙ୍କ ନିକଟକୁ ଯାଇ ଧ୍ୟାନ ସଂପର୍କରେ ମୋର ଅନେକ ଲାଭ ହୋଇଥିଲା । ଆମେ ଯେଉଁ ସେବା କାମ କରୁ ସେଥିରେ ଆମର ଧ୍ୟାନ କରିବାର ଅବକାଶ ମିଳେ । ଯେଉଁ ସେବା କରାହେଲା ତାହା ପରମେଶ୍ୱରଙ୍କ ସେବା ହେଲା, ଏପ୍ରକାର ମନେକଲେ ତାହା ଧ୍ୟାନ ଯୋଗ ହେବ ପୁଣି 'ମଣିଷର ସେବା ହେଲା' - ଏପ୍ରକାର ଚିନ୍ତାକଲେ ତାହା କେବଳ ମାତ୍ର ସେବା କାର୍ଯ୍ୟ ହେଲା । ଏହି ସେବା କାର୍ଯ୍ୟ ଦ୍ୱାରା ପରମେଶ୍ୱରଙ୍କ ସହିତ ସଂପର୍କ ସ୍ଥାପନ ହେଉଛି, ଏପ୍ରକାର ଭାବନା ଥିଲେ ତାହାହେବ ଧ୍ୟାନ ।

'ସାଧନା କର୍ମ ଯୋଗମୟ ହେବା ଉଚିତ' । ଏହି ଉପସିଦ୍ଧାନ୍ତ ସଂପୂର୍ଣ୍ଣ ଭାବରେ ଇଉକ୍ଲିଡ୍‌ଙ୍କର ପଦ୍ଧତି ଦ୍ୱାରା ନିଷ୍ପନ୍ନ କରାଯାଏ । କର୍ମର କଥା କହିବା ମାତ୍ରେ କର୍ମ ସହିତ ଦୁଇଟି ଦୋଷ ଯେପରି ଲାଗି ରହିଥାଏ -- ଗୋଟିଏ ହେଉଛି କର୍ମଠତା ଆଉ ଅନ୍ୟଟି ହେଉଛି କର୍ମ ପଛରେ ଦୌଡ଼ିବା । ଅପର ପକ୍ଷରେ ଯେଉଁମାନେ ନାମ ନିଅନ୍ତି ସେମାନେ କର୍ମଶୂନ୍ୟ, କାଳ୍ପନିକ ଧ୍ୟାନ-ସାଧନା ପାଇଁ ସବୁ କାମ ଛାଡ଼ି ଅଚଳ ହୋଇ ବସି ଥାଆନ୍ତି । କର୍ମଗ୍ରାହୀ ପୁରୁଷ ଆତ୍ମାର ମୂଳ ନିଷ୍କର୍ମ ଭୂମିକା ହରାଇ ବସନ୍ତି । କର୍ମ ଛାଡ଼ିଦେଇ କାଳ୍ପନିକ ଧ୍ୟାନ ପଛରେ ଲାଗି ରହନ୍ତି । କର୍ମଯୋଗୀ ଏହି ଦୁଇପ୍ରକାର ଦୋଷରୁ ଦୂରରେ ରହନ୍ତି । ଜୀବନଯାତ୍ରାରେ (ସହଜଲବ୍ଧ) ସ୍ୱାଭାବିକ କର୍ମର ଆଚରଣ କରୁ କରୁ ସବୁକିଛି ଈଶ୍ୱରଙ୍କ ଚରଣରେ ସମର୍ପଣ କରି ମୁକ୍ତ ହୋଇ ଯାଆନ୍ତି ।

ଜଣେ ଭାଇ କହିଥିଲେ ଆମେ ଆଧ୍ୟାତ୍ମିକତା ଦିଗରେ ଆଗେଇ ଯିବାକୁ ଚାହୁଁ, ଏଥିପାଇଁ ଧ୍ୟାନ କରୁଛୁ । ମୁଁ କହିଲି, ଆଧ୍ୟାତ୍ମ ସହିତ ଧ୍ୟାନର ବିଶେଷ କିଛି ସଂବନ୍ଧ ଅଛି, ଏକଥା ମୁଁ ମନେକରେ ନାହିଁ, କର୍ମ ଏକପ୍ରକାର ଶକ୍ତି ଯାହା ଭଲ, ମନ୍ଦ, ସ୍ୱାର୍ଥ, ପରାର୍ଥ ଏବଂ ପରମାର୍ଥ କାର୍ଯ୍ୟରେ ଲାଗିପାରେ, କର୍ମ ନିଜେ କୌଣସି ଆଧ୍ୟାତ୍ମିକ ଶକ୍ତି ନୁହେଁ । ସେହିପରି ଧ୍ୟାନ ଏକପ୍ରକାର ଶକ୍ତି ଯାହା ଏହି ପାଂଚ ପ୍ରକାର କାର୍ଯ୍ୟରେ ଲାଗିପାରେ । ଯେପରି କର୍ମ ନିଜେ କୌଣସି ଆଧ୍ୟାତ୍ମିକ ଶକ୍ତି ନୁହେଁ, ସେହିପରି ଧ୍ୟାନ ମଧ୍ୟ ନିଜେ କୌଣସି ଆଧ୍ୟାତ୍ମିକ ଶକ୍ତି ନୁହେଁ । କର୍ମ କରିବା ପାଇଁ ମଣିଷକୁ ନାନା ପ୍ରକାର ବସ୍ତୁ ପ୍ରତି ଦୃଷ୍ଟି ଦେବା ପ୍ରୟୋଜନ ହୋଇଥାଏ । ତାହା ମଧ୍ୟ ଗୋଟିଏ ପ୍ରକାରର ବିବିଧ ଧ୍ୟାନଯୋଗ । ଚରଖାରେ ସୂତା କାଟିବାକୁ ହେଲେ ଗୋଟିଏ ଆଡ଼େ ଚକ ଉପରେ ଦୃଷ୍ଟି ଦେବାକୁ ହୁଏ । ପୁଣି ବଳଣା ଆଡ଼କୁ ଦୃଷ୍ଟି ଦେବାକୁ ହୁଏ । ଏହି ଦ୍ୱିମୁଖୀ ପ୍ରକ୍ରିୟା ସହିତ ପୁଣି ଲଟେଇରେ ସୂତା ଗୁଡ଼ାଇବା ଆଡ଼କୁ ମନ ନେବାକୁ ହୁଏ । ତେବେ ଯାଇ ସୂତା କଟା ହୁଏ । ଭଉଣୀ ମାନଙ୍କୁ ରୋଷେଇ କଲାବେଳେ ନାନା ଆଡ଼କୁ ମନ ନେବାକୁ ହୁଏ । ଗୋଟିଏ ଆଡ଼େ

ଭାତ ହେଲା କି ନାହିଁ ଦେଖିବା, ଅନ୍ୟ ଆଡ଼େ ଅଟା ଚକଟିବା, ରୁଟି ବେଲିବା, ରୁଟି ସେକିବା, ପରିବା କାଟିବା, କାଠ ଠିକ୍ ଭାବରେ ଜଳୁଛି କି ନାହିଁ ତାହା ଦେଖିବା । ଏସବୁ କାମ ଏକାସାଂଗେ କରିବାକୁ ହୁଏ । ଏହିପରି ଭଉଣୀମାନେ ସବୁପ୍ରକାର କାର୍ଯ୍ୟ ଏକା ସାଂଗେ କରନ୍ତି । ରୋଷେଇ କାମରେ ଭଉଣୀ ମାନଙ୍କର ଧ୍ୟାନ ନାହିଁ, ଏକଥା କହିବାର ନୁହେଁ, ଯା ଭିତରେ ମଧ୍ୟ ନାନା ପ୍ରକାର ଧ୍ୟାନଯୋଗ ରହିଛି ।

ଧ୍ୟାନ କରିବା ସମୟରେ ଆମେ ଅସଂଖ୍ୟ ବସ୍ତୁଠାରୁ ଚିନ୍ତା ଫେରାଇ ଆଣି ଗୋଟିଏ ମାତ୍ର ବସ୍ତୁ ପ୍ରତି ଧ୍ୟାନ ଦେଉ । ଯେପରି ବହୁ ପ୍ରକାରର ବସ୍ତୁପ୍ରତି ଦୃଷ୍ଟି ଦେବା ଗୋଟିଏ ପ୍ରକାରର ଶକ୍ତି ସେହିପରି ଗୋଟିଏ ମାତ୍ର ବସ୍ତୁ ପ୍ରତି ଦୃଷ୍ଟି ଦେବା ମଧ୍ୟ ଗୋଟିଏ ପ୍ରକାରର ଶକ୍ତି । କର୍ମ ଶକ୍ତିର ଯେପରି ପାଂଚ ପ୍ରକାରର ବ୍ୟବହାର ହୁଏ, ସେହିପରି ଧ୍ୟାନ ଶକ୍ତିର ମଧ୍ୟ ବହୁ ପ୍ରକାରର ବ୍ୟବହାର ହୁଏ । କିନ୍ତୁ ଭାରତବାସୀଙ୍କ ମନରେ ପ୍ରାୟ ଗୋଟିଏ ପ୍ରକାରର ଭ୍ରାନ୍ତ ଧାରଣା ଦେଖାଯାଏ ଯେ କର୍ମ ସାଂସାରିକ ବା ପାରିବାରିକ ମଣିଷଙ୍କ ପାଇଁ ଏବଂ ଧ୍ୟାନ ଆଧ୍ୟାତ୍ମିକ ଜୀବନର ବିଷୟବସ୍ତୁ । ଏହି ଭ୍ରାନ୍ତି ଓ ତ୍ରୁଟିପୂର୍ଣ୍ଣ ଧାରଣାକୁ ଦୂର କରିବା ନିତ୍ୟାନ୍ତ ପ୍ରୟୋଜନ ।

ଆଧ୍ୟାତ୍ମିକତା ସହିତ ଧ୍ୟାନର ସଂପର୍କ ଯୋଡ଼ି ଦିଆଯାଇ ପାରିବ ପୁଣି ନ ଯୋଡ଼ିଲେ ମଧ୍ୟ ଚଳିବ । ଯଦି ସଂବନ୍ଧ ଯୋଡ଼ା ଯିବ ତେବେ ଧ୍ୟାନକୁ ଆଧ୍ୟାତ୍ମିକ ବିଷୟ ବୋଲି ଧରାଯିବ । ଯଦି ନ ଯୋଡ଼ା ଯିବ ତେବେ ଆଧ୍ୟାତ୍ମିକ ବିଷୟ ବୋଲି ଧରା ଯିବ ନାହିଁ । ଆମେ ଜମିରେ ମାଟି ହାଣି କୂଅ ଖୋଳିବାର କାମ କରିଛୁ, ସୂତା କାଟିବା, ଲୁଗା ବୁଣିବା, ରୋଷେଇ ସଫାଇ ଇତ୍ୟାଦି ନାନା ଧରଣର କାର୍ଯ୍ୟ କରିଛୁ । ପିଲାଦିନେ ଆମ ବାପା ଆମ ଦ୍ୱାରା ରଂଗ କରିବା, ଚିତ୍ରକଳା, ହୋସିଆରୀ (ଔଦ୍ଧତ୍ୟସରଦ୍ୱଇ) ଇତ୍ୟାଦି ନାନା ପ୍ରକାର କାର୍ଯ୍ୟ କରାଇଛନ୍ତି । ଏସବୁ କାର୍ଯ୍ୟ କରିବା ସମୟରେ ଆମେ ଭାବୁଥିଲୁ ଯେ ଏଠାରେ ଆମେ ଏକପ୍ରକାର ଉପାସନା କରୁଛୁ । ଏସବୁ କାର୍ଯ୍ୟ ଆମେ ନିଜକୁ ମନୁଷ୍ୟ ମାତ୍ରକେ, ପ୍ରାଣୀ ମାତ୍ରକେ ବିଶ୍ୱ ପ୍ରକୃତିର ସବୁ କିଛି ସହିତ ଯୋଡ଼ି ଦେଇ ଭାବୁଥିଲୁ, ଏବଂ ସବୁର କେନ୍ଦ୍ରସ୍ଥଳ ଯାହାଙ୍କୁ ପରମାତ୍ମା କୁହାଯାଏ, ତାଙ୍କ ସହିତ ମଧ୍ୟ ଏକାତ୍ମତା ଅନୁଭବ କରୁଥିଲୁ, ଏହାଥିଲା ଆମର ଉପଲବ୍ଧି ।

ଧ୍ୟାନ ଓ କର୍ମ ଏକ ଅପରର ପରିପୂରକ ଶକ୍ତି । କର୍ମ ପାଇଁ ନାନା ପ୍ରକାର କ୍ରିୟା ସଂପାଦନ କରିବାକୁ ହୁଏ ଅର୍ଥାତ୍ ସବୁ ବିଷୟର ଚିନ୍ତା (ଧ୍ୟାନ) କରିବାକୁ ହୁଏ । ଅନେକ ବିଷୟରେ ଏକାଗ୍ରତା ଏକାସାଂଗେ ସାଧିତ ହେବା ଛଡ଼ା କର୍ମ ହୋଇ ପାରେ ନାହିଁ । କର୍ମ ପାଇଁ ସାବଧାନତାର ସହିତ ବିଭିନ୍ନ ବସ୍ତୁ ପ୍ରତି ଏକ ସମୟରେ ଦୃଷ୍ଟି ଦେବା ଆବଶ୍ୟକ ହୋଇଥାଏ । ତାହାଦ୍ୱାରା ଗୋଟିଏ ପ୍ରକାର ଶକ୍ତିର ବିକାଶ ଲାଭ ଘଟେ । ଧ୍ୟାନର ବାଟ ଯାଠାରୁ ଭିନ୍ନ । ଧ୍ୟାନ କରିବା ବେଳେ ସବୁ କିଛି ବାଦ ଦେଇ ଗୋଟିଏ ମାତ୍ର ବସ୍ତୁ ପ୍ରତି ଧ୍ୟାନ ନିବିଷ୍ଟ ହୋଇଥାଏ । ଅନେକ ପ୍ରକାର ବସ୍ତୁ ପ୍ରତି ମନ ଦେଲେ ତାହା ଦ୍ୱାରା କର୍ମ ଶକ୍ତି ବିକାଶ ଲାଭ କରେ ଏବଂ ଗୋଟିଏ ମାତ୍ର ବସ୍ତୁ ପ୍ରତି ମନ ନିବେଶ କଲେ ଧ୍ୟାନ ଶକ୍ତିର ବିକାଶ ହୁଏ । ଯେପରି କର୍ମ ପାଇଁ ଅସଂଖ୍ୟ ବସ୍ତୁ ବାବଦରେ ଧାରଣା ରହିବା ଆବଶ୍ୟକ, ସେହିପରି ଧ୍ୟାନ ପାଇଁ ଗୋଟିଏ ମାତ୍ର ବସ୍ତୁରେ ମନ ନିବିଷ୍ଟ କରିବା ଆବଶ୍ୟକ ।

ଦୁଇଟି ଯାକ ହେଲା ଗୋଟିଏ ଆରଟିର ପରିପୂରକ ଶକ୍ତି । ଘଡ଼ିରେ ଅନେକ ଛୋଟ ଛୋଟ ଅଂଶ ଥାଏ, ସେଗୁଡ଼ିକୁ ଅଲଗା ଅଲଗା କରି ରଖିଲେ କର୍ମ ଶକ୍ତିର ପ୍ରକାଶ ହୁଏ । ପୁଣି ଘଡ଼ିର ସବୁ ଅଂଶକୁ ଏକାଠି କରି ଯଦି ଘଡ଼ିଟିକୁ ଚାଲୁ କରାଯାଏ ତାହାହେଲେ ତାଦ୍ୱାରା ଧ୍ୟାନ ଶକ୍ତିର ପ୍ରକାଶ ହୁଏ । ଯନ୍ତ୍ରାଂଶ ଗୁଡ଼ିକୁ ଅଲଗା କରି ଦେବା କାମ ପିଲାମାନେ କରି ପାରିବେ, କିନ୍ତୁ ସେଗୁଡ଼ିକୁ ଏକାଠି କରିବା କଷ୍ଟ କାମ, ଯନ୍ତ୍ରାଂଶ ଗୁଡ଼ିକୁ ଅଲଗା କରିବା ଏବଂ ଏକାଠି କରିବା ଏହି ଦୁଇ ରକମ କାମ ଭିତରେ ଗୋଟିଏ କର୍ମର ଅପରଟି ଧ୍ୟାନର ପ୍ରକ୍ରିୟା । ଯେତେବେଳେ ଉଭୟ ପ୍ରକ୍ରିୟା ଖୁବ୍ ଦକ୍ଷତାର ସହିତ କରାଯାଏ ସେତେବେଳେ ପ୍ରଜ୍ଞାର ଜନ୍ମ ହୁଏ । ଏହି ପ୍ରଜ୍ଞା ହେଉଛି ନିର୍ଣ୍ଣୟ କାରିଣୀ ଶକ୍ତି ।

ବ୍ୟକ୍ତିଗତ ଧ୍ୟାନର ଆବଶ୍ୟକତା ଅଛି, କିନ୍ତୁ ତାଠାରୁ ଅଧିକ ଗୁରୁତ୍ୱପୂର୍ଣ୍ଣ ବସ୍ତୁ ହେଲା ଆମର ସବୁକାମ ଧ୍ୟାନ ସ୍ୱରୂପ ହେବା ଆବଶ୍ୟକ । ଦୃଷ୍ଟାନ୍ତ ସ୍ୱରୂପ କୁହାଯାଏ ବାବା (ବିନୋବା) ପ୍ରତିଦିନ ଏକ ଘଣ୍ଟା, ଦେଢ଼ ଘଣ୍ଟା, କେବେ କେବେ ଅଢ଼ାଇ ଘଣ୍ଟା ପର୍ଯ୍ୟନ୍ତ ସଫାଇ କାର୍ଯ୍ୟ କରନ୍ତି । ସଫେଇ କଲାବେଳେ ପ୍ରତ୍ୟେକଟି ଘାସ, ପତ୍ର, ଅଳିଆ ଉଠାନ୍ତି ତାପରେ ତାକୁ ଝୁଡ଼ିରେ ପକାନ୍ତି । କିନ୍ତୁ ବାବାଙ୍କର ଯେଉଁ ଅନୁଭୂତି ହୁଏ ତାହା ହେଲା ସୁନ୍ଦର ଧ୍ୟାନର ଅନୁଭୂତି । ମାଳା ହାତରେ ଧରି ଜପ କରିବାରେ ଯେଉଁ ଅନୁଭୂତି ଲାଭ ହୁଏ ତାଠାରୁ କୌଣସି ପ୍ରକାର କାମରେ କମ୍ ବା ଭିନ୍ନ ଧାରାର ଅନୁଭବ ନୁହେଁ, ଉନ୍ନତ ସ୍ତରର ଅନୁଭବ ଘଟେ । ଗୋଟିଏ ଗୋଟିଏ ଘାସ ଉଠାଇବା ଏବଂ ତା ସହିତ ନାମ ସ୍ମରଣ କରିବା, କେବେ କେବେ ମୁଁ ତାକୁ ଗୁଣିଥାଏ । ଆଜି ୧୨୨୫ ଟି ଘାସ ଉପୁଡ଼ାଗଲା । ଏଥିରେ ମନ କାମ କରେ ନାହିଁ । ଏହା ଗୋଟିଏ ପ୍ରକାରର ଧ୍ୟାନ ଯୋଗ ଅଟେ । ତାଛଡ଼ା ଯେଉଁ ବ୍ୟକ୍ତି ବାହାରର ଟିକିଏ ବି ଆବର୍ଜନା ସହ୍ୟ କରି ପାରେ ନାହିଁ, ସେ ଭିତରର ଆବର୍ଜନାକୁ ସହ୍ୟ କରି ପାରିବ ନାହିଁ । ସେ ତାର ଅନ୍ତରର ଆବର୍ଜନା ଦୂର କରିବା ପାଇଁ ପ୍ରଖର ପ୍ରେରଣା ଲାଭ କରିବ । ଏହା ହେଉଛି ତାର ଆଧ୍ୟାତ୍ମିକ ପରିଣାମ । ପ୍ରତ୍ୟେକଙ୍କ ଭିତରେ ଏପ୍ରକାର ପ୍ରେରଣା ଜାଗୃତ ହେବ ବୋଲି କହି ହେବ ନାହିଁ । କିନ୍ତୁ ତନ୍ମୟ ହୋଇ ଯିଏ ଏହି କାମ କରିବ ତାର ଧ୍ୟାନ ଯୋଗ ସିଦ୍ଧି ହୋଇ ପାରେ ।

ଅତଏବ କାର୍ଯ୍ୟ ଉତ୍ତମରୂପେ ହେବା ଆବଶ୍ୟକ । କାର୍ଯ୍ୟ କଲାବେଳେ ଧ୍ୟାନ ହେବା ଆବଶ୍ୟକ । ମନରେ ସଂପୂର୍ଣ୍ଣ ଏକାଗ୍ରତା ଆସିବା ଦରକାର । ଧ୍ୟାନ ଛଡ଼ା ତାହା ହେବ ନାହିଁ । "ତସ୍ମାତ୍ ତେ ଇହ ମନୁଷ୍ୟାଣାଂ ମହତ୍ତାଂ ପ୍ରାପ୍ନୁବନ୍ତି ଧ୍ୟାନାପାଦାଂଶ ଇବୈବ ତେ ଭବନ୍ତି" -- ଯେଉଁ ମଣିଷ ଏହି ଦୁନିଆରେ କୌଣସି ବିଷୟରେ ଶ୍ରେଷ୍ଠତ୍ୱ ଲାଭ କରେ, ତାହା ତାର ଧ୍ୟାନ ପାଇଁ ହୋଇଥାଏ । ଉପନିଷଦ୍ କହେ, ପୃଥିବୀ ଧ୍ୟାନ କରେ, ଅନ୍ତରୀକ୍ଷ ଧ୍ୟାନ କରେ । ଧ୍ୟାନ ଦ୍ୱାରା ସେମାନେ ଶ୍ରେଷ୍ଠତ୍ୱ ଅର୍ଜନ କରି ଥାଆନ୍ତି । ତସ୍ମାତ୍ ଧ୍ୟାନଂ ଉପାସ୍ୱେତି । ଧ୍ୟାନ ଛଡ଼ା ଗୋଟିଏ କାର୍ଯ୍ୟ ବି ସଂପାଦିତ ହୁଏ ନାହିଁ । କାର୍ଯ୍ୟରେ ତନ୍ମୟ ହୋଇଯିବା ହେଉଛି ଆମର ଧ୍ୟାନ ।

କାମ ଦାମ ଛାଡ଼ି ଯଦି ଧ୍ୟାନ ପାଇଁ ବସିଯିବା ତେବେ କ'ଣ ହେବ ? କବୀର ବର୍ଣ୍ଣନା କରିଛନ୍ତି — 'ମାଲା ତୋ କର୍‌ମେ ଫିରେ' । ହାତରେ ମାଳା ବୁଲୁଛି, ପାଟି ଭିତରେ ଜିଭ ହଲୁଛି,

ଏବଂ ଚିତ୍ତ ସାରା ଦୁନିଆରେ ଘୁରି ବୁଲୁଛି । ଧ୍ୟାନ ପାଇଁ ଯଦି ଅବଲମ୍ବନ ପ୍ରୟୋଜନ ହୁଏ ତେବେ କାମ ହିଁ ଧ୍ୟାନର ଅବଲମ୍ବନ ବା ଆଶ୍ରୟ । ଆଧ୍ୟାତ୍ମିକ ଜୀବନର ଅର୍ଥ ହେଉଛି ପ୍ରବୃତ୍ତି କମ୍ କରିବା ନୁହେଁ, ବରଂ ବୃତ୍ତି କମ୍ କରିବା । କାମ, କ୍ରୋଧ, ଲୋଭ ଏସବୁ ବୃତ୍ତି ସର୍ବଦା ଜେଗଁ ଉଠେ - ଏସବୁକୁ କମାଇବା ଦରକାର । ଆଧ୍ୟାତ୍ମ ଜୀବନରେ ପ୍ରବୃତ୍ତି ବାଧକ ହୁଏ ନାହିଁ । ବୃତ୍ତି ହିଁ ବାଧା ସୃଷ୍ଟି କରେ । ଅସତ୍ ବୃତ୍ତିକୁ ମନରୁ ବାହାର କରିବାକୁ ହେବ, ସଦ୍‌ବୃତ୍ତିକୁ ରକ୍ଷା କରିବାକୁ ହେବ । ତାପରେ ସଦ୍‌ବୃତ୍ତିକୁ ମଧ୍ୟ ବାହାର କରି ଦେବାକୁ ହେବ । ଅଭ୍ୟାସ ହୋଇଗଲେ ସଦ୍‌ବୃତ୍ତି ମଧ୍ୟ ଆପେ ଆପେ ଦୂରେଇ ଯିବ ।

ଚିତ୍ତର ଏକାଗ୍ରତା ଖୁବ୍ ବଡ଼ କଥା ନୁହେଁ । ଚିତ୍ତର ସାବଧାନତା ହେଲା ବଡ଼ କଥା । ଅନେକାଗ୍ରତା ଯେପରି ଶକ୍ତି ଏକାଗ୍ରତା ମଧ୍ୟ ସେହିପରି ଶକ୍ତି । ତାହା ଆଧ୍ୟାତ୍ମିକ ବସ୍ତୁ ନୁହେଁ । ଚିତ୍ତ ସବୁବେଳେ ସାବଧାନ ଅର୍ଥାତ୍ ନିଜ ସ୍ଥାନରେ ରହିବ, ଏପରି ହେବା ଉଚିତ । ଆମେ ବର୍ତ୍ତମାନ ନିଜ କଥା କହୁଛୁ, ତଥାପି ସାହସ ନାହିଁ ଯେ ମନରେ କୌଣସି ବିକାର ଭାବ ଆସିବ । ଜୋର ସହକାରେ ଉତ୍ତର ଦେବାର ବା ପ୍ରହାର କରିବାର ଅବକାଶ ଆସେ ତଥାପି ଭିତରର ଆସନ ଏପରି ହେବା ଉଚିତ ଯେ ଯେପରି ସେଥିରେ କୌଣସି ଲହଡ଼ି ନ ଆସେ । ଏକାଗ୍ରତାର ନିଜସ୍ୱ ମୂଲ୍ୟ ଅଛି, କିନ୍ତୁ ଚବିଶ ଘଣ୍ଟା ଯେଉଁ କଥା ଜରୁରୀ ତାହା ହେଲା ସାବଧାନତା । ଆମ ଉପରେ ଯେପରି ଆକ୍ରମଣ ନ ହୁଏ, ଆମେ ଯେପରି ଅସାବଧାନ ନ ହେବୁ, ଏହାକୁ କହନ୍ତି ସାବଧାନତା ।

କର୍ମ ଉପାସନା ବୃତ୍ତିରୁ ସଂପନ୍ନ ହେବା ଉଚିତ ଏବଂ ସାଧନା ଯେପରି କର୍ମ ବିମୁଖ ନ ହୁଏ । ଆଧ୍ୟାତ୍ମିକ ସାଧନା ପାଇଁ ଆଜି ପର୍ଯ୍ୟନ୍ତ ଆମେ ଧ୍ୟାନ-ଧାରଣା ଆଦି ଅନେକ କଥା କରି ଆସିଛୁ । କିନ୍ତୁ ସେଥିରେ ଶରୀର ଶ୍ରମର କୌଣସି ସ୍ଥାନ ନଥିଲା । ଜୈନ, ବୌଦ୍ଧ, ହିନ୍ଦୁ ଏସବୁ ଧର୍ମ ଗୁଡ଼ିକ ଧ୍ୟାନ-ଧାରଣାର ଉପଦେଶ ଦେଇଛନ୍ତି, କିନ୍ତୁ ଯେଉଁ ବ୍ୟକ୍ତି ଧ୍ୟାନ କରନ୍ତି ସେ ଅଗଣାରେ ଝାଡୁ ଦେବ ନାହିଁ ବା ଉତ୍ପାଦନ ମୂଳକ କୌଣସି କାର୍ଯ୍ୟ କରିବ ନାହିଁ । ଆଜି ପର୍ଯ୍ୟନ୍ତ ଏ ପ୍ରକାର କାର୍ଯ୍ୟ ଭିକ୍ଷୁ-ଶ୍ରମଣ-ସାଧକମାନଙ୍କର ନୁହେଁ ବୋଲି ମନେ କରାଯାଇଛି । କିନ୍ତୁ ବର୍ତ୍ତମାନ ଯୁଗର ସାଧକ ଶରୀର ଶ୍ରମ ନ କଲେ ପ୍ରାଚୀନ ଯୁଗର ଧ୍ୱଂସାବଶେଷରେ ପରିଣତ ହେବେ । ବର୍ତ୍ତମାନ ଯୁଗ ପାଇଁ ଉପଯୁକ୍ତ ହୋଇ ପାରିବେ ନାହିଁ । ଅପରିଗ୍ରହ ଏବଂ ଶରୀର ଶ୍ରମ ଉପରେ ଆଧାରିତ କର୍ମଯୋଗକୁ ଧ୍ୟାନ ଯୋଗ ସହିତ ସମାନ ବୋଲି କୁହାଯାଇଛି । ସାଧନାର ଯେଉଁ ବିଚାର ଆଜି ପର୍ଯ୍ୟନ୍ତ କରାଯାଇଛି ତାକୁ ସଂପୂର୍ଣ୍ଣ ସାଧନା ବୋଲି କୁହାଯାଏ ନାହିଁ । ବିଜ୍ଞାନର ବିଚାର ଯେପରି ଉତ୍ତରୋତ୍ତର ବିକାଶ ଲାଭ କରୁଛି ସାଧନାର ବିଚାର ଧାରାର ମଧ୍ୟ ସେହିପରି ଉତ୍ତରୋତ୍ତର ବିକାଶ ଲାଭ ହେଉ ।

ଭାରତବର୍ଷରେ ଧ୍ୟାନ ମାର୍ଗ ଖୁବ୍ ବିକାଶ ଲାଭ କରିଛି । ସଂଭବତଃ ସୁଫି ସଂପ୍ରଦାୟ ସହିତ ଏହାର ତୁଳନା କରାଯାଇପାରେ । କିନ୍ତୁ ଆଉ କାହାରି ସହିତ ଏହା ତୁଳନା କରାଯାଇପାରେ ନାହିଁ । ମୋର ଯେତିକି ଜ୍ଞାନ ଅଛି, ତାହାରି ଉପରେ ଭିତ୍ତି କରି ମୁଁ ଏଇକଥା କହୁଛି । ଏ ଦେଶରେ ଧ୍ୟାନ ମାର୍ଗରେ, ଧ୍ୟାନ ସହିତ କର୍ମର ବିରୋଧ ଅଛି ବୋଲି ମନେକରାଯାଏ । ଧ୍ୟାନଯୋଗୀମାନେ

ସାଧାରଣତଃ କାମ କରନ୍ତି ନାହିଁ, କାରଣ ତାହାଦ୍ୱାରା ଧ୍ୟାନରେ ବାଧା ଆସେ ବୋଲି କୁହାଯାଏ । ତାଛଡ଼ା ଅନ୍ୟାନ୍ୟ କର୍ମଯୋଗୀମାନଙ୍କର ସାହାଯ୍ୟ ସେମାନଙ୍କୁ ମିଳୁଥିଲା ଏବଂ ଦୁଇଆଡୁ ଏହାକୁ ଅନ୍ୟର ପରିପୂରକ ବୋଲି ମନେ କରାହେଉଥିଲା । କର୍ମଯୋଗୀ ମନେ କରନ୍ତି ଯେ ଆମେ ତ ଧ୍ୟାନ କରି ପାରୁନାହୁଁ, କିନ୍ତୁ ଯେହେତୁ ଏମାନେ ତାହା କରି ପାରୁଛନ୍ତି, ଏମାନଙ୍କର ଭରଣ ପୋଷଣ ଓ ରକ୍ଷଣାବେକ୍ଷଣ କରିବା ଆମର କାମ । ଧ୍ୟାନଯୋଗୀମାନେ ମନେକରନ୍ତି ଯେ ଆମେ ଏପରି ସେବା କରୁଛୁ ଯାହା ଅନ୍ୟମାନେ କରି ପାରିବେ ନାହିଁ ।

ମୋର ଏକଥା ମନେ ହୁଏ ଯେ, କର୍ମଯୋଗ ଧ୍ୟାନରେ ବାଧା ସୃଷ୍ଟି କରୁଛି ବୋଲି ଯେଉଁ ବିଚାର ସମାଜରେ ରହିଛି ସେଥିରେ କିଛି ତ୍ରୁଟି ରହିଛି ଏବଂ ତାର ସଂଶୋଧନ ହେବା ଦରକାର । କର୍ମ ଛାଡ଼ି ଦେବା ପରେ ଯେଉଁ ପ୍ରକାରର ସମାଧିର ଉପଲବ୍ଧି ହୁଏ ସେହି ପ୍ରକାରର ସମାଧି ବା ତାଠାରୁ ଗଭୀରତର ସମାଧିର ଉପଲବ୍ଧି, କାର୍ଯ୍ୟ ମଧ୍ୟ ଦେଇ ହେବା ଦରକାର । ଏ ବାବଦରେ କିଛି ଅଭିଜ୍ଞତା ମଧ୍ୟ ମୋର ହୋଇଛି । ଆଜିଯାଏ ଧ୍ୟାନ କରିବା ପାଇଁ ଗୋଟିଏ ସ୍ଥାନରେ ବସିବା ଏବଂ ନାନା ପ୍ରକାର କ୍ରିୟାକର୍ମ ତ୍ୟାଗ କରିବା ଦରକାର ବୋଲି ମନେ କରାଯାଇଛି । ପ୍ରାଥମିକ ସ୍ତରରେ ଏହାର କିଛି ପ୍ରୟୋଜନ ହୋଇପାରେ । କିନ୍ତୁ ଏପରି କରିବା ଦ୍ୱାରା ଧ୍ୟାନର ଉତ୍କର୍ଷ ସାଧିତ ହୁଏ ନାହିଁ । ଯେପରି ଆମର ଶ୍ୱାସ ପ୍ରଶ୍ୱାସର କାମ ଚାଲୁଥାଏ ଅଥଚ ସେଥିପାଇଁ କୌଣସି ସମୟର ବାଧା ନଥାଏ । ବରଂ ଏହା ଯଦି ଠିକ୍ ସମୟାନୁସାରେ ଚାଲୁଥିବ ସେଥିରେ ଆମର ଖୁବ୍ ଲାଭ ହୁଏ । ଏହି ପ୍ରକାରର ଭୂତଦୟାତ୍ମକ ଶରୀର ଶ୍ରମ, ଶୋଷଣ ରହିତ ଉତ୍ପାଦନର କାର୍ଯ୍ୟ, ଶାନ୍ତ ସୌମ୍ୟ 'ସର୍ବେଷାଂ ଅବିରୋଧି' (ସମସ୍ତଙ୍କ ପ୍ରତି ଅବିରୋଧି) କ୍ରିୟା ଧ୍ୟାନ ସହିତ ଚାଲି ପାରିବ । ସେଥିରେ ଧ୍ୟାନରେ କୌଣସି ଅପୂର୍ଣ୍ଣତା ଆସେନାହିଁ । ମୋର ମନେହୁଏ ଏହି ବାଟରେ ଧ୍ୟାନଯୋଗର ପ୍ରଚେଷ୍ଟା ଚଳାଇ ଯିବା ଦରକାର । ତାହାହେଲେ ଆଜି ପର୍ଯ୍ୟନ୍ତ ଯେଉଁ ପ୍ରକାରର ଧ୍ୟାନ ଯୋଗ ଚଳି ଆସୁଛି, ସେଥିରେ ପୂର୍ଣ୍ଣତା ଆସିବ ।

ନେତି, ଧୌତି, ବସ୍ତି ଇତ୍ୟାଦି ପଞ୍ଚ ପ୍ରକାରର କ୍ରିୟା ଦ୍ୱାରା ଆଧ୍ୟାତ୍ମ ଜ୍ଞାନ ଆସେ ନାହିଁ । ଏହିସବୁ ବସ୍ତୁ ଗୁଡ଼ିକ ଶରୀରର ପରିଚ୍ଛନ୍ନତା ବା ଶୁଦ୍ଧତା ଅର୍ଜନରେ ସହାୟକ ହୋଇଥାଏ । ତେବେ ଆଧ୍ୟାତ୍ମ ବିଦ୍ୟା ସକାଶେ ସବୁଠାରୁ ବେଶୀ ଅନୁକୂଳ ଏବଂ ସବୁଠାରୁ ବେଶି ନିକଟତର ବସ୍ତୁ ଯଦି କିଛି ଥାଏ ତେବେ ତାହା ହେଉଛି ଉତ୍ପାଦନ ଶରୀର ଶ୍ରମ, ଏକଥା ମୁଁ ମୋର ଅନୁଭବରୁ ସ୍ପଷ୍ଟ ଭାବରେ ପ୍ରକାଶ କରିବାକୁ ଚାହେଁ । ମଣିଷକୁ ଭୋକ କରେ, ଏହି କ୍ଷୁଧା ଈଶ୍ୱରଙ୍କର ପ୍ରେରଣା । ଆଧ୍ୟାତ୍ମିକ ଜୀବନରେ କେଉଁ ଲକ୍ଷ୍ୟ ଆଡ଼କୁ ଆମର ଯିବା ଉଚିତ ସେ କଥା ଏହି କ୍ଷୁଧା କହି ଦିଏ ।

ଆମେ ନିଜର ସବୁ କିଛି ସମାଜକୁ ଦେଇଥାଉ । ଦେହ ବଳକୁ ମଧ୍ୟ ସମାଜସେବାରେ ଲଗାଇବାକୁ ହେବ । ଉତ୍ପାଦନ ମୂଳକ ଶରୀର ଶ୍ରମ କରିବା ଦ୍ୱାରା କ୍ଷୁଧା ସହିତ ଯେଉଁ ପାପ ଯୋଗ ହୋଇଥାଏ ତାହା ସମୂଳେ ଲୋପ ହୁଏ, ମଣିଷ କ୍ଷୁଧାରେ ପୀଡ଼ିତ ହୋଇ ଯେଉଁ ଖାଦ୍ୟ ଗ୍ରହଣ କରେ ସେଥିରେ କିଛି ପାପ ରହିଥାଏ । ଏହି ପାପରୁ ମୁକ୍ତି ପାଇବାର ବାଟ ହେଉଛି ନିଜ ହାତରେ ପରିଶ୍ରମ କରି ଅନ୍ନ ଉତ୍ପାଦନ କରିବା ଉଚିତ । ଅନ୍ନଂ ବ୍ରହ୍ମେତି - ଅନ୍ନ ହିଁ ବ୍ରହ୍ମ, ଏକଥା

ଶାସ୍ତ୍ରକାରମାନେ କହିଛନ୍ତି । ଉତ୍ପାଦକ ଶ୍ରମ କରିବା ଫଳରେ ପୃଥିବୀ, ଆକାଶ, ଅଗ୍ନି, ସୂର୍ଯ୍ୟ, ବନସ୍ପତି, ଜଳ, ପର୍ବତ ଇତ୍ୟାଦି ଯେତେ ସବୁ ଦେବତା ଅଛନ୍ତି ସମସ୍ତଙ୍କ ସହିତ ସଂପର୍କ ସ୍ଥାପନ ହୋଇଥାଏ । ଆମେ ସେମାନଙ୍କର ସେବା କରୁ ଏବଂ ସେହି ସେବାର ଫଳ ସ୍ୱରୂପ ଯାହା ମିଳେ ତାହାକୁ ସମାଜକୁ ଅର୍ପଣ କରି ସମାଜ ନିକଟରୁ ପ୍ରସାଦ ସ୍ୱରୂପ ଯାହା ଆମେ ପାଇଥାଉ, ସେଥିରେ ଆଧାତ୍ମ ଜୀବନ ପରି ଯେ ଏକ ସହାୟକ ଜୀବନ ଗଢ଼ି ଉଠିବ ଏକଥା କୁହାଯାଉନାହିଁ । କିନ୍ତୁ ଏହି ପ୍ରକ୍ରିୟା ଆଧାତ୍ମ ଲାଭ ପାଇଁ ଆସନ, ପ୍ରାଣାୟାମ ଠାରୁ ଅଧିକ ସହାୟକ ଏ କଥା ମୁଁ କହିବାକୁ ଚାହେଁ ।

ଯୁବକମାନେ ପରିଶ୍ରମ କରିପାରନ୍ତି। ସମାଜ ଉପରେ ବୋଝ ହୋଇ ରହିବା ଉଚିତ ନୁହେଁ। ଏଥିପାଇଁ ଶରୀର ଶ୍ରମ କରନ୍ତୁ । ବାହାରୁ ଦେଖିବାକୁ ଗଲେ ଶରୀର ଶ୍ରମମୂଳକ କାମ କରିବା ଦ୍ୱାରା ସମାଜ ଉପରେ ବୋଝ ବଢ଼ିବ ନାହିଁ ଏବଂ ଏହି ସବୁ କାର୍ଯ୍ୟ ଦ୍ୱାରା ଭିତରେ ଗୋଟିଏ ଅବଲମ୍ବନ ବା ଆଶ୍ରୟ ଲାଭ ହେବ । ଧ୍ୟାନ ପୂର୍ବକ କାର୍ଯ୍ୟ କରନ୍ତୁ ତାହାହେଲେ ସ୍ୱାଭାବିକ ଭାବରେ ବାହ୍ୟ ଦୃଷ୍ଟିରୁ କର୍ମଯୋଗ ଏବଂ ଅନ୍ତଃଦୃଷ୍ଟିରୁ ଧ୍ୟାନ ଯୋଗର ସାଧନା ହେବ ।

ସଂସ୍କୃତ ଶବ୍ଦରେ ଯେଉଁ ବିଶେଷତ୍ୱ ଅଛି ତାର ଗଭୀରକୁ ପ୍ରବେଶ କଲେ ସବୁ ବୁଝି ହୁଏ, ସଂସ୍କୃତ ଭାଷାର ଗୋଟିଏ ଶବ୍ଦ ହେଲା 'ଉଦ୍ୟୋଗ' । ଉଦ୍‌ଯୋଗ ମାନେ ଉଚ୍ଚଯୋଗ । ଯଦି ମଣିଷ ଭିତରେ କ୍ଷୁଧା ନଥାନ୍ତା ଏବଂ ତାପାଇଁ ଶରୀର ଶ୍ରମ କରିବାର ପ୍ରବୃତ୍ତି ହୁଅନ୍ତା ନାହିଁ, ତାହେଲେ ମଣିଷ ଦୁର୍ଗୁଣ ଦ୍ୱାରା ନିଜକୁ ନଷ୍ଟ କରି ଦିଅନ୍ତା । ଏଥିପାଇଁ ଉଦ୍ୟୋଗ ହେଲା ଆମ ପାଇଁ ସବୁଠାରୁ ବଡ଼ ଯୋଗ । ପରିଶ୍ରମ ଦ୍ୱାରା ଆମେ ଯାହାକିଛି ଉତ୍ପାଦନ କରୁ, ତାହା ସମାଜକୁ ସମର୍ପଣ କରିବା ଉଚିତ । ଯେଉଁଠାରେ ସମର୍ପଣ ଭାବନା ଆସେ ଏହି ବସ୍ତୁ କର୍ମ ହେଉ କିମ୍ବା ଧ୍ୟାନ ହେଉ ତାହା ଆଧାତ୍ମିକ ବୋଲି ବିବେଚିତ ହୁଏ । ଯାହାର ସମର୍ପଣ ସହିତ ସମ୍ବନ୍ଧ ନଥାଏ, ସେହି ବସ୍ତୁକୁ ଆଧାତ୍ମିକ ଶ୍ରେଣୀଭୁକ୍ତ କୁହାଯିବ ନାହିଁ । ଆଧାତ୍ମିକତା ପାଇଁ 'ସମର୍ପଣ' ଅନିବାର୍ଯ୍ୟ ।

ଏହି ସ୍ପଷ୍ଟ ବିଚାର ଭାରତ ପାଇଁ ଖୁବ୍ ଜରୁରୀ । ତା ନ ହେଲେ ଆମେ ଏପରି ସବୁ ବିଷୟରେ ମଜ୍ଜି ଯିବା ଯେ ତା ଦ୍ୱାରା ଅନ୍ୟ କିଛି ଲାଭ ହେଲେ ମଧ୍ୟ ପରମାର୍ଥିକ ଲାଭ ହେବ ନାହିଁ । ହୃଦୟର ଶୁଦ୍ଧତା ଓ ବ୍ୟାପକତାର ଦୃଷ୍ଟିରୁ ସମାଜ ପକ୍ଷରେ ଯେକୌଣସି ଆବଶ୍ୟକୀୟ କାର୍ଯ୍ୟ କରାଯାଏ, ତାହା ପରମେଶ୍ୱରଙ୍କ ପ୍ରତି ସମର୍ପିତ ହେଉ - ଏହା ଆଧାତ୍ମିକତା ପାଇଁ ପ୍ରୟୋଜନ । ଏହା ଦ୍ୱାରା ଦୁନିଆର ସମସ୍ୟାର ସମାଧାନ ହେବ । ଏଥିରୁ କେହି ଯଦି ଭାବି ନିଏ ଯେ ବର୍ତ୍ତମାନ ଧ୍ୟାନ ଯୋଗ କରାହେବ । ତା ଦ୍ୱାରା ଅନେକ ସିଦ୍ଧି ଓ ଶକ୍ତି ଲାଭ ହେବ, ଆଉ ତାପରେ ଯେପରି ଆଣବିକ ବୋମା ନିକ୍ଷେପ କରାଯାଏ ସେପରି ଭାବରେ ପୃଥିବୀର ମଂଗଳ ପାଇଁ ଏହିସବୁ ଶକ୍ତିକୁ ବୁଣି ଦିଆଯିବ । ଏପରି ଭୁଲ ଧାରଣା ଯେପରି ନ ହୁଏ । ସେଥିପାଇଁ ଧ୍ୟାନ ସଂପର୍କରେ ଏସବୁ ସ୍ପଷ୍ଟତା ଆବଶ୍ୟକ ।

ମାଟି ଭିତରେ ମୂଳ ନଥିବା ବୃକ୍ଷର କଳ୍ପନା ଆମେ କରି ପାରିବା ନାହିଁ । ସେହିପରି ମଣିଷର ମୂଳ ଜମିରେ ନିବଦ୍ଧ ଥିବା ଉଚିତ । ପ୍ରତ୍ୟେକ ମଣିଷର ଜମିରେ କାମ କରିବା ଏକାନ୍ତ କର୍ତ୍ତବ୍ୟ । ଯେଉଁ ସବୁ ଅର୍ଥନୈତିକ ସିଦ୍ଧାନ୍ତ କେତେବେଳେ ହେଲେ ବଦଳିବାର ନୁହେଁ ତା ଭିତରେ ଗୋଟିଏ ସିଦ୍ଧାନ୍ତ ହେଲା - ଭୂମି ସହିତ ମଣିଷର ସମ୍ବନ୍ଧ ଥିବା ଏକାନ୍ତ ଆବଶ୍ୟକ । ଯେତେଦିନ ପର୍ଯ୍ୟନ୍ତ ମଣିଷ ଜମିକୁ ଛାଡ଼ି ସିଧାସଳଖ ପବନଠାରୁ ପୁଷ୍ଟି ଲାଭ କରିବାର ବିଦ୍ୟା ଅର୍ଜନ ନ କରିଛି ସେତେଦିନ ପର୍ଯ୍ୟନ୍ତ ଏହି ସିଦ୍ଧାନ୍ତର କୌଣସି ପରିବର୍ତ୍ତନ ହେବ ନାହିଁ । ଏଇଟା ହେବ ସ୍ଥିର ସିଦ୍ଧାନ୍ତ । ପରବର୍ତ୍ତୀ କାଳରେ ପବନ ଠାରୁ ଯଦି ପୁଷ୍ଟି ଲାଭ କରିବାର ସୁବିଧା ହୁଏ ତେବେ କର୍ମଯୋଗର ଗୁରୁତ୍ୱ କମି ଯାଇ ଧ୍ୟାନ ଯୋଗର ଗୁରୁତ୍ୱ ବଢ଼ି ଯିବ । ଭିନ୍ନ ଭିନ୍ନ ଯୋଗର ଗୁରୁତ୍ୱ ଦେଶ-କାଳ-ପାତ୍ର ଅନୁସାରେ ହୋଇଥାଏ । କେଉଁ ଯୁଗରେ ଧ୍ୟାନର ଗୁରୁତ୍ୱ ଥିଲା, ଆଜି କାହିଁକି ନାହିଁ ? କେଉଁ ସମୟରେ ପୂଜା ଇତ୍ୟାଦି ଆଡ଼କୁ ମନ ଥିଲା ଆଜି କାହିଁକି ନାହିଁ ? ଏସବୁ ବିଷୟ ଭାବିବାକୁ ହେବ ।

ବୃକ୍ଷ ଜମି ଭିତରେ ରହି କିଛି ଉପାଦାନ ଗ୍ରହଣ କରେ ଏବଂ ପୁଷ୍ଟି ଲାଭ କରେ, ବାକି ପୁଷ୍ଟିର କିଛି ଅଂଶ ସେ ବାୟୁଠାରୁ ପାଏ । ବିଜ୍ଞାନ କୃପାରୁ କାଲି ଯଦି ମଣିଷ ସିଧାସଳଖ ପବନ ଠାରୁ ପୁଷ୍ଟି ଲାଭର ଶକ୍ତି ଅର୍ଜନ କରିବ ତାହାହେଲେ ତାର ବୃତ୍ତି ଧ୍ୟାନମୟ ଅବସ୍ଥା ପ୍ରାପ୍ତ ହେବ । ଫଳରେ ତାର ଶ୍ରମର ସ୍ୱରୂପ ଆଜିଠାରୁ ଭିନ୍ନ ଭିନ୍ନ ହୋଇଯିବ ।

## ଗ). ଧ୍ୟାନ-ପ୍ରବୃତ୍ତି ଅପ୍ରବୃତ୍ତି ଉଭୟ ଠାରୁ ଅଭିନ୍ନ

* ଅପ୍ରବୃତ୍ତି ଧ୍ୟାନ ନୁହେଁ, ତାହା ପ୍ରତିକ୍ରିୟା, ତୀବ୍ରବୃତ୍ତି ।
* ଧ୍ୟାନ ଭଲ ହୋଇପାରେ, ମନ୍ଦ ମଧ୍ୟ ହୋଇପାରେ, ତୀବ୍ର କ୍ରିୟାର ରୂପ ମଧ୍ୟ ନେଇ ପାରେ ।
* ଅପ୍ରବୃତ୍ତିର ଅର୍ଥ ନିବୃତ୍ତି ନୁହେଁ ।
* ପ୍ରବୃତ୍ତି, ଅପ୍ରବୃତ୍ତି ଏବଂ ସତ୍‌ପ୍ରବୃତ୍ତି, ନିବୃତ୍ତି ଏହି ତିନୋଟି ଠାରୁ ଭିନ୍ନ ।

ଗୀତା ନିବୃତ୍ତିକୁ ପ୍ରବୃତ୍ତି ଓ ଅପ୍ରବୃତ୍ତି ଠାରୁ ଭିନ୍ନ ବୋଲି ମାନ୍ୟତା ଦେଇଛି । ପ୍ରବୃତ୍ତିକୁ ରଜୋଗୁଣ ବୋଲି ମାନେ ଅପ୍ରବୃତ୍ତିକୁ ତମୋଗୁଣ ବୋଲି ମାନେ ଏବଂ ଧର୍ମକୁ ସତ୍‌ପ୍ରବୃତ୍ତି ବୋଲି ମନେକରେ । ଏହି ତିନୋଟିଠାରୁ ନିବୃତ୍ତି ଭିନ୍ନ ବସ୍ତୁ । ଏହି ବିଚାର ଧ୍ୟାନ ପାଇଁ ନ ଥିବାରୁ ଭାରତରେ ନିବୃତ୍ତିର ଅର୍ଥ ଅପ୍ରବୃତ୍ତି ହୋଇ ଯାଇଛି । ପରିଣାମ ସ୍ୱରୂପ, ଭାରତରେ ଯେଉଁ ବ୍ୟକ୍ତି ଆତ୍ମଚିନ୍ତନ ପାଇଁ ପାଦ ବଢାଇଛି ସେ ସାଂଗେ ସାଂଗେ ଶରୀର ଶ୍ରମ ଛାଡ଼ି ଦେଇଛି । କର୍ମ ଛାଡ଼େ ଲୋକସଂପର୍କ ମଧ୍ୟ ଛାଡ଼ିଦିଏ, ମୌନ ବ୍ରତ ଅବଲମ୍ବନ କରେ । ନିର୍ଜନ ସ୍ଥାନକୁ ଚାଲିଯାଏ କିମ୍ବା କିଛି ମାନସିକ କାର୍ଯ୍ୟକ୍ରମ କରେ । କିନ୍ତୁ ଏକଥା ବୁଝିବା ଉଚିତ ଯେ ପ୍ରବୃତ୍ତି ଯେତେ ଶକ୍ତିଶାଳୀ କ୍ରିୟା, ଅପ୍ରବୃତ୍ତି ମଧ୍ୟ କ୍ରିୟାଶୀଳତା ଦିଗରେ ସେତିକି ଶକ୍ତିଶାଳୀ, ତାହାକୁ ପ୍ରତିକ୍ରିୟା କୁହାଯାଏ, ସ୍ଥିତିଶୀଳତା ନୁହେଁ ।

ଅପ୍ରବୃତ୍ତିର ମଧ୍ୟ ପ୍ରୟୋଜନ ଅଛି ବୋଲି ମୁଁ ମନେ କରେ । ତମୋଗୁଣର ପ୍ରଭାବରୁ ରାତିରେ ସମସ୍ତେ ଶୋଇ ପଡ଼ନ୍ତି । କିନ୍ତୁ କେହି ଯଦି ତାହାକୁ ସମାଧିରେ ପରିବର୍ତ୍ତିତ କରିବାକୁ ସକ୍ଷମ ହୁଅନ୍ତି ତାହାହେଲେ ଏପ୍ରକାର ନିଦ୍ରାରୁ ତାଙ୍କର ଲାଭ ହୁଏ । ଯଦି କେହି ସେହି ନିଦ୍ରା ଦ୍ୱାରା ପ୍ରଭାବିତ ଜୀବନ ଯାପନ କରନ୍ତି ତେବେ ତାଙ୍କ ନିକଟରେ ନିଦ୍ରା ହେଲା ସମାଧି ଏବଂ ଜାଗୃତି ହେଲା ପୂଜା । ଏ ଅବସ୍ଥା ଯାହାଙ୍କର ଲାଭ ହୋଇନାହିଁ ସେ ଦିନରେ ପ୍ରବୃତ୍ତିର ରାଜ୍ୟରେ ଆଉ ରାତିରେ ସିଧାସଳଖ ଅପ୍ରବୃତ୍ତିର ଆୟତ୍ତକୁ ଚାଲି ଯାଆନ୍ତି । ଏକଥା ସତ୍ୟ ଯେ ଦେହ ଧାରଣ ପାଇଁ ଯେପରି ପ୍ରବୃତ୍ତିର ପ୍ରୟୋଜନ ହୁଏ ସେହିପରି ଅପ୍ରବୃତ୍ତିର ମଧ୍ୟ ପ୍ରୟୋଜନ ହୋଇଥାଏ। ଦୁଇଟିର ପ୍ରୟୋଗ ନିଜ ନିଜର ମାତ୍ରା ଅନୁଯାୟୀ, କେଉଁଟାର ଅତିରିକ୍ତ ହେବା ଉଚିତ ନୁହେଁ । ସୀମା ଭିତରେ ରହିଲେ ଦୈହିକ ଜୀବନ ପାଇଁ ଦୁଇଟିର ଉପଯୋଗିତା ରହିଛି । କିନ୍ତୁ ତାହାକୁ ଅପ୍ରବୃତ୍ତି ମନେକରି ମୂଲ୍ୟ ଦେବା ଉଚିତ । ଯେଉଁଠାରେ ଅପ୍ରବୃତ୍ତିକୁ ନିବୃତ୍ତି ରୂପେ ସ୍ୱୀକୃତି ଦିଆଯାଏ ସେଠାରେ ମୂଳକୁ ଆଘାତ କରାଯାଏ, ଫଳରେ ବିଚାର ଭୁଲ ଆଡ଼କୁ ଯାଏ ।

ଗୋଟିଏ ତୀବ୍ର କ୍ରିୟାକୁ, ଗୋଟିଏ ତୀବ୍ର ବୃତ୍ତିକୁ -- ଏକାଙ୍ଗୀ ଜୀବନକୁ ନିବୃତ୍ତି ବୋଲି ଧରି ନେଲେ ସେହି ବିଚାର ଭ୍ରମପୂର୍ଣ୍ଣ ହୋଇଯାଏ । ନିବୃତ୍ତି ଏକାଙ୍ଗୀ ହୋଇପାରେ ନାହିଁ । ସେ ସବୁ ଅଂଗକୁ ତା ଗର୍ଭରେ ଲୀନ କରି ପାରେ । ତା ମଧ୍ୟରେ କର୍ମର ନିଷେଧ ହୋଇ ପାରେ ନାହିଁ । କୁହାଯାଏ, "ବାସନା ଲୋପ କରିବା ପାଇଁ କିଛି କରିବା ଉଚିତ, ସେଥିପାଇଁ ଲୋକ ଗହଳିରୁ ଅଲଗା ହୋଇ ଗୁହାରେ ପ୍ରବେଶ କରି ପଥର ଖୋଳି ତା ମଧ୍ୟରେ ଧ୍ୟାନ କରେ ।" ମୁଖ୍ୟବସ୍ତୁ ଆୟତ୍ତକୁ ନ ଆସିବା ହେତୁ ଏ ଦେଶରେ ଦେଖାଯାଏ ଯେ ଯେଉଁଠାରେ ଆତ୍ମ ଚିନ୍ତନର ପ୍ରେରଣା ସକ୍ରିୟ, ସେଠାରେ ଲୋକମାନେ ଅପ୍ରବୃତ୍ତି ଆଡ଼କୁ ଢ଼ଳନ୍ତି, ଭୁଲ ବାଟକୁ ଆବୋରି ବସନ୍ତି ।

ବେଦାନ୍ତର ସନ୍ୟାସୀ, ବୁଦ୍ଧଦେବଙ୍କ ଚିନ୍ତାଧାରାରେ ବୌଦ୍ଧ, ଜୈନମାନଙ୍କ ମଧ୍ୟରେ ଜୈନ, ଶୈବ ଓ ବୈଷ୍ଣବ ମାନଙ୍କ ମଧ୍ୟରେ ଭକ୍ତ, ଏମାନେ ସମସ୍ତେ ଅଧିକତର ଅପ୍ରବୃତ୍ତି ଆଡ଼କୁ ଢ଼ଳିଥିଲେ । ସେମାନେ ତାକୁ ନିବୃତ୍ତି ବୋଲି ବୁଝିଥିଲେ, ଅପ୍ରବୃତ୍ତି ବୋଲି ଭାବି ନାହାନ୍ତି ।

ସୁତରାଂ ଧ୍ୟାନ ଭଲ ହୋଇପାରେ ଓ ମନ୍ଦ ହୋଇପାରେ । ପୁଣି ତୀବ୍ର କ୍ରିୟା ସ୍ୱରୂପ ମଧ୍ୟ ହୋଇପାରେ । ଏହି ସମସ୍ତ ବିଚାର ଧାରାକୁ ଆମେ ସ୍ୱଚ୍ଛ ନିର୍ମଳ ବୋଲି ମନେ କରୁନାହେଁ, ଅପ୍ରବୃତ୍ତିକୁ ନିବୃତ୍ତି ବୋଲି ମନେକରୁ । କିନ୍ତୁ ଅପ୍ରବୃତ୍ତି ହେଲା ଅତ୍ୟନ୍ତ ତୀବ୍ର ବୃତ୍ତି ।

## ଘ). ନିରୁପାଧିକ ନିର୍ଲିପ୍ତ (ତଟସ୍ଥ) ଧ୍ୟାନ

* ସଂପ୍ରଦାୟରୁ ମୁକ୍ତ ଧ୍ୟାନ ।
* ପୁରାତନକୁ ଭୁଲି ଯାଆନ୍ତୁ ।
* ଇତିହାସ ଭୁଲି ଯାଆନ୍ତୁ, ଗ୍ରନ୍ଥ ଭୁଲି ଯାଆନ୍ତୁ, ଶବ୍ଦ ଭୁଲନ୍ତୁ, ଭଗବାନଙ୍କ ନାମ ମଧ୍ୟ ଭୁଲନ୍ତୁ ।
* ଭୂତ ଭବିଷ୍ୟତ ଭୁଲି ବର୍ତ୍ତମାନ ଉପରେ ବଂଚନ୍ତୁ ।

ଯେଉଁଠି ଆମେ ଧ୍ୟାନ ଭିତରେ ପ୍ରବେଶ କରିବାକୁ ଚାହୁଁ ସେଠାରେ ଚିତ୍ତ ଉପରେ କୌଣସି ସଂପ୍ରଦାୟର ବୋଝ ଯେପରି ନ ରହେ । ସଂପ୍ରଦାୟ ଅର୍ଥାତ୍ ଗୁରୁ, ଗ୍ରନ୍ଥ ଇତ୍ୟାଦିର ବୋଝ । ସାଧାରଣ ଅବସ୍ଥାରେ ଏମାନଙ୍କର ବୋଝ ମନେ ହୁଏ ନାହିଁ, ଯେହେତୁ ଗୁରୁର ବଚନ ସାହାଯ୍ୟକାରୀ ହୁଏ । ଏସବୁର ଖୁବ୍ ଉପକାରୀତା ଅଛି । କିନ୍ତୁ ଯେଉଁଠାରେ ଧ୍ୟାନ ପାଇଁ ବସିବାକୁ ହୁଏ, ସେଠାରେ ଏସବୁ ଭାର ସ୍ୱରୂପ ହୋଇଯାଏ । ଏଥିପାଇଁ ସବୁ ସଂପ୍ରଦାୟ ଠାରୁ ମଧ୍ୟ ମୁକ୍ତ ହେବା ପ୍ରୟୋଜନ । ଗୁରୁ, ଗ୍ରନ୍ଥ, ମୂର୍ତ୍ତି ଏସବୁ ଶ୍ରଦ୍ଧାର ବସ୍ତୁ, ଏମାନଙ୍କର ଉପଯୋଗୀତା ମଧ୍ୟ ଅଛି । କିନ୍ତୁ ଧ୍ୟାନ ସମୟରେ ଏମାନଙ୍କୁ ଅଲଗା ରଖିବା ଉଚିତ । ତାହାହେଲେ ଏହି ଧ୍ୟାନ ଆମକୁ ମୂଳ ସ୍ରୋତ ସହିତ ମିଳିତ କରାଇବ । କିମ୍ବା ମଝି ରାସ୍ତାରେ ଅଟକି ଯିବ । ସେତେବେଳେ ଆମର ଆନନ୍ଦ ମଧ୍ୟ ହେବ । ଆନନ୍ଦର ଅନୁଭୂତି ହେଲେ ବୁଝିବାକୁ ହେବ ଯେ ଲକ୍ଷ୍ୟରେ ପହଂଚିବାକୁ ହେଲେ ବାଧା ଆସିବ ଯେହେତୁ ମୂଳ ସ୍ରୋତ ଯେଉଁ ଆଡ଼କୁ ନେଇଯିବ ଆନନ୍ଦ ମଧ୍ୟ ସେଠାରେ ବାଧା ସ୍ୱରୂପ ବୋଲି ବିବେଚିତ ହେବ ।

*** *** ***

ନିର୍ଲିପ୍ତ ଅର୍ଥାତ୍ ସାକ୍ଷୀ ଭାବରେ ଧ୍ୟାନ କରିବା ବିଷୟରେ 'କାଳ-ଜାରଣମ' - ଏହାର ବିଚାର ଖୁବ୍ ଜରୁରୀ । କାଳ ତିନୋଟି - ଭୂତ, ବର୍ତ୍ତମାନ ଓ ଭବିଷ୍ୟତ । ଭୂତ ବା ଅତୀତ କାଳର ବୋଝ ଯେପରି ମନ ଉପରେ ନ ପଡ଼େ ଏବଂ ଆଗାମୀ ଦିନ କ'ଣ ହେବ, ଏ ଚିନ୍ତା ମଧ୍ୟ ଯେପରି ନ ଆସେ । ଏହାଦ୍ୱାରା କୌଣସି ବିଶେଷ ନୂଆ କଥା ଯେ ମୁଁ କହୁଛି ତାହା ନୁହେଁ । ଏକଥା ତ ଅଭିଜ୍ଞ ବ୍ୟକ୍ତିମାନେ ପ୍ରଥମେ ହିଁ କହି ଯାଇଛନ୍ତି । ଉପନିଷଦ୍‌ରେ ଏହାକୁ 'କାଳ-ଜାରଣ' ନାମ ଦିଆ ଯାଇଅଛି । କାଳକୁ ହଜମ କରିବା । ବର୍ତ୍ତମାନ ପ୍ରତ୍ୟକ୍ଷ, କେତେ ପ୍ରତ୍ୟକ୍ଷ ? ଆମେ କଥା କହିବା ଆରମ୍ଭ କରୁ ; ତାପରେ କଥା କହୁ କହୁ ତାର ଗୋଟିଏ ଅଂଶ ଅତୀତ ଗର୍ଭକୁ ଚାଲିଯାଏ । ପରବର୍ତ୍ତୀ ସମୟରେ ଆମେ ଯେଉଁ କଥା କହିବୁ ତାହାହେବ ଭବିଷ୍ୟତର ଗୋଟିଏ ଭାଗ । ସାମାନ୍ୟ କିଛି ଶବ୍ଦ ହେଉଛି ବର୍ତ୍ତମାନ, ଖୁବ୍ ଅଳ୍ପ ସମୟ ହେଉଛି ବର୍ତ୍ତମାନ - ଏତେ ସୂକ୍ଷ୍ମ ନ ହେଲେ ମଧ୍ୟ ବେଦରେ କୁହାଯାଇଛି --,

'ଅଦ୍ୟାଦ୍ୟାଃ ଶ୍ୱଃ ଶ୍ୱଃ - ଆଜିକାର ହେଉଛି ଆଜି, କାଲିକାରଟା କାଲି ।'

କାଲି ଯାହା ହୋଇ ଯାଇଛି, ସେ କଥା ଟିକିଏ ବି ସ୍ମରଣ ନାହିଁ, ଏବଂ ଭବିଷ୍ୟତର ମଧ୍ୟ ଚିନ୍ତା ନାହିଁ ।

ଯିଏ ବର୍ତ୍ତମାନକୁ ନେଇ ବଂଚେ ସେ ଅପ୍ରମତ୍ତ ହୋଇ ରହିଥାଏ । ଆମେ ହୁଏତ ଅତୀତକୁ କିମ୍ବା ଭବିଷ୍ୟତକୁ ନେଇ ବଂଚିଥାଉ । ମହାବୀରଙ୍କ ସୂତ୍ର ଏହିପରି - ରଣଂ ଜାଣି ପବିତ୍ର - (ମୁହୂର୍ତ୍ତକୁ) ସମୟକୁ ଜାଣ । ବର୍ତ୍ତମାନର ଯେଉଁ ମୁହୂର୍ତ୍ତ ଅତିକ୍ରାନ୍ତ ହେଉଛି ତାକୁ ଦେଖ । ଏହାକୁ କହନ୍ତି ବର୍ତ୍ତମାନକୁ ନେଇ ବଂଚିବା । ଯେଉଁ ବ୍ୟକ୍ତି ବର୍ତ୍ତମାନକୁ ନେଇ ବଂଚେ ତାକୁ ସ୍ମୃତି ବା କଳ୍ପନା କଷ୍ଟ ଦେଇ ପାରେ ନାହିଁ । ତା ଉପରେ ସ୍ମୃତି ବା କଳ୍ପନାର ନିଶା ଆକ୍ରମଣ କରେ

ନାହିଁ । ସେ ଅପ୍ରମତ୍ତ ଅବସ୍ଥାରେ ରହିବା ପାଇଁ ସମର୍ଥ ହୁଏ । ଅତୀତକୁ ଭୁଲି ଯାଇ ପାରିଲେ ମନର ବିରାଟ ସଂସାର ବିଲୀନ ହୋଇଯାଏ । ଆଧ୍ୟାତ୍ମିକ ଦୃଷ୍ଟିରୁ ତାହା ଜରୁରୀ । ଅତୀତ ସ୍ମରଣ ମନର ଲକ୍ଷଣ । ତାକୁ ଭୁଲିଯିବା ମନର ପ୍ରଶିକ୍ଷଣ ।.

ସାମ୍ନାରେ ଯେଉଁମାନେ ବସିଛନ୍ତି ସେମାନେ ନୂଆ ଏବଂ ମୁଁ ମଧ୍ୟ ନୂଆ । ମନେ ହୁଏ ଯେ ସେମାନେ ମଣିଷ ଓ ମୁଁ ମଧ୍ୟ ସେଇଆ । କିନ୍ତୁ ଏପ୍ରକାର ଭାବିବା ବିକାଶ ପଥରେ ବାଧା ସ୍ୱରୂପ । ନବୋ ନବୋ ଭବତି ଜାୟମାନଃ । ଏଥିପାଇଁ ପୁରାତନକୁ ନେଇ ଟିକିଏ ହେଲେ ଭାବିବା ଉଚିତ ନୁହେଁ । ପୁରାତନର ସ୍ମୃତି ଯେତେବେଳେ ମନରେ ଜାଗୃତ ହୁଏ ସେତେବେଳେ ବର୍ତ୍ତମାନ ହାଁତର ବାହାରକୁ ଚାଲିଯାଏ । ତାହାହେଲେ ଆଉ ରହିଲା କଣ ? ଯେଉଁ ବର୍ତ୍ତମାନ ଆମ ହାତରେ ଅଛି ତାକୁ ଯେପରି ଆମେ ହରାଇ ନ ବସୁ । ବର୍ତ୍ତମାନ ଆମ ହାତରେ ଅଛି । କାଲିର କଥା କିଏ ଜାଣେ ? 'କାଲି' ତ ଭଗବାନଙ୍କ ହାତରେ ।

ଅତୀତ-ଅନାଗତଂ କିଞ୍ଚିତ୍ ନ ସ୍ମରାମି ନ ଚିନ୍ତୟେ ।
ରାଗ-ଦ୍ୱେଷଂ ବିନା ପ୍ରାପ୍ତଂ ଭୁଞ୍ଜାମାତ୍ର ଶୁଭାଶୁଭମ୍ ।।

-- ଅତୀତ ବା ଭବିଷ୍ୟତକୁ ସ୍ମରଣ କରେ ନାହିଁ, କୌଣସି ଚିନ୍ତା ରଖି ନାହିଁ । ଏଠାରେ ଯେଉଁ ଶୁଭାଶୁଭ ମିଳିଲା, ରାଗ ଦ୍ୱେଷ ମୁକ୍ତ ହୋଇ ତାହାକୁ ହିଁ ଭୋଗ କରେ ।

ଯେତେଦିନ ପର୍ଯ୍ୟନ୍ତ ଏହି ଭୂମିକା ତିଆରି ନ ହେବ ସେତେଦିନ ପର୍ଯ୍ୟନ୍ତ ନିରୁପାଧିକ ନିରପେକ୍ଷ, ସାକ୍ଷୀ ରୂପେ ଧ୍ୟାନ ହୋଇ ପାରେ ନାହିଁ । ଏକଥା ବହୁଦିନ ପୂର୍ବରୁ ମୋ ମନରେ ଥିଲା ।

ଗାନ୍ଧୀଜୀ ଯାହା ଯାହା କହୁଥିଲେ ଲୋକମାନେ ସେହି ଅନୁସାରେ କାମ କରୁଥିଲେ । ମୁଁ ତାଙ୍କର ଅନେକ କଥା ମାନି ଚଳିଛି । କିନ୍ତୁ ଗୋଟିଏ କଥା ମାନି ପାରିନାହିଁ । ସେ କହୁଥିଲେ ନିଜର ଦୋଷ ଦେଖ । ତାଙ୍କର ଉକ୍ତି ଠିକ୍ ଥିଲା । ନିଜର ଦୋଷ ଦେଖ, ତାକୁ ସ୍ୱୀକାର କର । ତାଙ୍କର ଉଦ୍ଦେଶ୍ୟ ଭଲ ଥିବା ସତ୍ତ୍ୱେ ଓ ତାଙ୍କର ସେହି କଥା ମୋର ପସନ୍ଦ ହୋଇନାହିଁ । କାରଣ, ବୃଥାରେ କାହିଁକି ଅତୀତ ବିଷୟରେ ସ୍ମରଣ କରିବି ? ଏହାର କାରଣ ହେଉଛି ଯେ ମୋ ଉପରେ ଶାସ୍ତ୍ରକାରମାନଙ୍କର ବିଶେଷ ଏକ ପ୍ରଭାବ ଥିଲା । ତାହେଉଛି, ଯେତେ ପର୍ଯ୍ୟନ୍ତ ଅତୀତକୁ ଭୁଲି ନ ହେବ, ସେ ପର୍ଯ୍ୟନ୍ତ ରାଗ ଦ୍ୱେଷ ରହିବ ନିଶ୍ଚୟ । ଭଲ-ମନ୍ଦ ଦୁଇଟିଯାକକୁ ଭୁଲିଯାଅ । ଅତିକମ୍‌ରେ ମନ୍ଦକୁ ତ ନିଶ୍ଚୟ ଭୁଲିବାକୁ ହେବ । କିନ୍ତୁ ଭଲକୁ ମଧ୍ୟ ଭୁଲିବାକୁ ହେବ । ମୋର ଅବସ୍ଥା ଏପରି ଯେ ମୋ ସାମ୍ନାରେ ଥିବା ଲୋକ ଯାହା କହୁଛନ୍ତି ତାର ଗୋଟିଏ ଗୋଟିଏ ବାକ୍ୟ ମୁଁ ଭୁଲିଯାଏ । ଏହାର କାରଣ ହେଉଛି ଯେ, ନିର୍ଲିପ୍ତ ଧ୍ୟାନ ପାଇଁ ମୋତେ ଟିକିଏ ବି ପରିଶ୍ରମ କରିବାକୁ ପଡ଼େ ନାହିଁ । ବରଂ ଓଲଟା ହୁଏ । ମନକୁ ଯାଡ଼େ ସିଆଡ଼େ ଦେବାକୁ ପଡ଼ିଲେ କଷ୍ଟ ହୁଏ । ସାକ୍ଷୀ ରୂପରେ ଆମ ଭିତରେ ଯେଉଁ ନିରପେକ୍ଷ ବୃତ୍ତି ଅବସ୍ଥିତ ତାହାରି ପାଇଁ ପୁରାତନକୁ ଭୁଲିଯିବା କଥା । ଆମର ନିଜର ଅତ୍ୟନ୍ତ ଆବଶ୍ୟକତା ତା ଦ୍ୱାରା ସାଧିତ ହେଉ ବା ଅନ୍ୟ କାହାରି ଦ୍ୱାରା ସାଧିତ ହେଉ । ଇତିହାସ ଭୁଲିବାକୁ ହେବ । ପ୍ରାଚୀନ ଗ୍ରନ୍ଥ ମଧ୍ୟ ଭୁଲିବାକୁ ହେବ । କିନ୍ତୁ କେଉଁ

ଉପାୟରେ ତାହା ଭୁଲିବା ସଂଭବ ? ଶାସ୍ତ୍ରକାରମାନେ ସେକଥା ମଧ୍ୟ କହିଯାଇଛନ୍ତି । ଆମ ଉପନିଷଦ୍‌ରୁ ବାଛି ବାଛି ଶେଷ ଶ୍ଳୋକଟିକୁ ମୁଁ ଏହିପରି ଭାବରେ ରଖିଛି ।

'ପିଲାଲମିବ ଧାନ୍ୟାର୍ଥୀ ତାଜେଦ୍ ଗ୍ରନ୍‌ହଂ ଅଶେଷତଃ ।'

ଧାନ ସଂଗ୍ରହ କରି ଯେପରି ତାର ତଷୁକୁ ଫୋପାଡ଼ି ଦିଆଯାଏ, ସେହିପରି ସାରଟିକୁ ଗ୍ରହଣ କରି ଗ୍ରନ୍ଥ ମଧ୍ୟ ଅଲଗା କରି ରଖିଦିଅ । ଏହା ଗତାନୁଗତିକ ସାଧାରଣ କଥା ନୁହେଁ । ସାଧାରଣ ସାଧକ ପକ୍ଷରେ ଏ କାର୍ଯ୍ୟ ସଂଭବ ନୁହେଁ । ଗ୍ରନ୍ଥକାରଙ୍କର ଗ୍ରନ୍ଥର ସାର ଆୟତ୍ତ ହେଲେ ତେବେ ଯାଇ ଗ୍ରନ୍ଥ ତ୍ୟାଗ କରିବା ସଂଭବ ହୁଏ । ପରମାତ୍ମାଙ୍କ କୃପାରୁ ବାବାଙ୍କ ପକ୍ଷରେ ଗ୍ରନ୍ଥ ତ୍ୟାଗ କରିବା ସଂଭବ ହୋଇଛି । କିନ୍ତୁ ସେଥିରେ ଅନେକ ସମୟ ଲାଗିଛି । ବାବା ଅନେକ ଚିନ୍ତନ ମନ୍ଥନ କରିଛନ୍ତି । ଏହିସବୁ ବସ୍ତୁ ସାକ୍ଷାତକାର ସମୟରେ ଯେତେବେଳେ ଆସିଯାଏ ସେତେବେଳେ ତାହା ତ୍ୟାଗ କରନ୍ତି । ତ୍ୟାଗ ନ କରିଲେ ପୁଣି ଶବ୍ଦ ବନ୍ଧନରେ ପଡ଼ିବାକୁ ହୁଏ । ଅବଶେଷରେ ଶବ୍ଦର ବନ୍ଧନ ତ୍ୟାଗ କରିବା ଆବଶ୍ୟକ । ତାହାକୁ ଛାଡ଼ି ନପାରିଲେ ତାହା ଉପାଧି ରୂପେ ରହିଯାଏ । ତେଣୁ, ଇତିହାସ ଭୁଲିବାକୁ ହେବ, ଗ୍ରନ୍ଥ ଭୁଲିବାକୁ ହେବ, ଶବ୍ଦକୁ ମଧ୍ୟ ଭୁଲିବାକୁ ହେବ । ସର୍ବୋତ୍ତମ ଶବ୍ଦ ଈଶ୍ୱରଙ୍କ ନାମ । ତାହାକୁ ମଧ୍ୟ ଭୁଲିବାକୁ ହେବ । ଶେଷ ପର୍ଯ୍ୟନ୍ତ ପୁସ୍ତକ ଠାରୁ ଆରମ୍ଭ କରି ନାମ ପର୍ଯ୍ୟନ୍ତ ତ୍ୟାଗ କରିବାକୁ ହେବ । ଅନ୍ତତଃ ପକ୍ଷେ ପ୍ରାଚୀନ ଇତିହାସ, ଯାହା ମନ ଉପରେ ବୋଝ ସ୍ୱରୂପ ତାହାକୁ ତ ନିଶ୍ଚୟ ଭୁଲିବାକୁ ହେବ । ନାମର ଆଧାର ବରଂ ଚାଲୁଥାଉ ।

## ୬୨. ମନ ଠାରୁ ପୃଥକ୍, ଉନ୍ମନ, ଶୂନ୍ୟମନ

* ଆମେ ମନ ନୋହୁଁ, ମନର ସାକ୍ଷୀ ।
* ମନ ଉପରକୁ ଉଠିଯାଇ ବିଶ୍ୱର ଖେଳ ଦେଖୁଛୁ ।
* ମୁକ୍ତ ଆକାଶ ପରି ବାହାରେ ବ୍ୟାପକ, ଭିତରେ ଶୂନ୍ୟ ।
* ଶୂନ୍ୟ ମନ ଅର୍ଥାତ୍ ବିଚାର-ଶୂନ୍ୟ ମନ ।
* ଧ୍ୟାନ ମାନସିକ କ୍ରିୟା, ଆତ୍ମଜ୍ଞାନ କ୍ରିୟା ନୁହେଁ ।

ମନର ଉର୍ଦ୍ଧ୍ୱରେ କୌଣସି ବସ୍ତୁ ଅଛି, ଏ କଥା ଯେତେଦିନ ପର୍ଯ୍ୟନ୍ତ ମଣିଷର ଧାରଣା ନ ହୋଇଛି ସେତେଦିନ ପର୍ଯ୍ୟନ୍ତ ସବୁ ପ୍ରକାରର କ୍ରିୟା ଓ ପ୍ରତିକ୍ରିୟା ବନ୍ଧନର କାରଣ ହୋଇଥାଏ । ଯେତେବେଳେ ମଣିଷ ମନର ଉର୍ଦ୍ଧ୍ୱକୁ ଉଠିଯାଏ, ସେତେବେଳେ ଏହି ଦୁନିଆ ଏବଂ ନିଜର ପରି ମନେ ହେଉଥିବା ଏହି ମନ ମଧ୍ୟ ବାହାର ଜିନିଷରେ ପରିଣତ ହୋଇଯାଏ ଆଉ ସେତେବେଳେ ମଣିଷ ମୁକ୍ତ ଆନନ୍ଦ ଅନୁଭବ କରେ ।

ମନ ଅତ୍ୟନ୍ତ କ୍ଷୁଦ୍ର ବସ୍ତୁ । ପ୍ରାଚୀନ କାଳରେ ଆତ୍ମା, ବୁଦ୍ଧି ଇତ୍ୟାଦିର ଗୁରୁତ୍ୱ ସ୍ୱୀକାର କରା ହେଉଥିଲା । ମନ ଶେଷ ସମୟରେ ଆସୁଥିଲା । ଆଜିକାଲି ବିଜ୍ଞାନ ଯୁଗରେ ମନର ଗୁରୁତ୍ୱ ପ୍ରାଚୀନ କାଳଠାରୁ ମଧ୍ୟ କମ୍ ହୋଇ ଯାଇଛି । ବିଜ୍ଞାନ ପ୍ରତ୍ୟକ୍ଷ ଅନୁଭୂତିର ଶ୍ରେଷ୍ଠତ୍ୱକୁ

ସ୍ୱୀକାର କରେ । ଆତ୍ମା ସୂକ୍ଷ୍ମାନୁଭୂତିର ମହତ୍ତ୍ୱ ସ୍ୱୀକାର କରେ । ମନ ଦୁଇଆଡ଼୍କୁ ମାଡ଼ଖାଏ । ମନର ଇଚ୍ଛା ଅନୁଯାୟୀ କାମ କରିବା ନୁହେଁ, ବରଂ ବୁଦ୍ଧି ବଳରେ ଏହିପରି କରିବାର ଅଭ୍ୟାସ ପରିତ୍ୟାଗ କଲେ, ବୁଦ୍ଧି ଶକ୍ତିକୁ ସଂପୂର୍ଣ୍ଣ ଭାବରେ କାମରେ ଲଗାଇ ହେବ ।

କାହାର ଦେହ ଯଦି ଅସୁସ୍ଥ ବା ଭାରି ମନେ ହୁଏ ତାହାହେଲେ ତାହାକୁ ଭଲ କରିବା ପାଇଁ ଶରୀରଠାରୁ ନିଜକୁ ଅଲଗା କରି ନେବାକୁ ହୁଏ । ଚରଖା କିପରି ଚରଖାକୁ ମରାମତ କରି ପାରିବ ? ଯଦି ମୁଁ ଶରୀର ହୁଏ ତେବେ ତାକୁ କିପରି ଭଲ କରିବାକୁ ସକ୍ଷମ ହେବି ? ମନକୁ ଆରୋଗ୍ୟ କରିବା ପାଇଁ ମନ ଠାରୁ ଅଲଗା ହେବା ହିଁ ପ୍ରୟୋଜନ । ଯେପରି ଭାବରେ ମନଠାରୁ ଅଲଗା ହୋଇ ହୁଏ ଠିକ୍ ସେହି ପ୍ରକାର ଭାବରେ ମନକୁ ଆରୋଗ୍ୟ କରାଯାଇପାରେ । ପୁନର୍ବାର ସେ ଦୁନିଆର ଅଂଶ ବିଶେଷରେ ପରିଣତ ହୁଏ, ନିଜ ମଧ୍ୟରେ ଆଉ ରହେ ନାହିଁ । ମଣିଷର ହାତ ଦୁଇଟି ଯେପରି କିଛି ପୁଣ୍ୟ କାମ କରେ ସେହିପରି କିଛି ପାପ କାର୍ଯ୍ୟ ମଧ୍ୟ କରେ । ଏହି ଦୁଇପ୍ରକାର କାର୍ଯ୍ୟରୁ ଯେତେବେଳେ ପୃଥକ୍ ହୋଇଯାଏ ସେତେବେଳେ ମୁକ୍ତ ହୋଇଯାଏ ।

କିନ୍ତୁ ମଣିଷ ଏପରି କରେ ନାହିଁ । ସେ ବାରଂବାର ସ୍ମରଣ କରେ, 'ମୁଁ ଖରାପ, ମୁଁ ଦୋଷାବହ କାର୍ଯ୍ୟ କରିଛି ।' ବସ୍ତୁତଃ ଏହା ହେଲା ମିଥ୍ୟା ଆରୋପ । ଏଥିପାଇଁ ଶାସ୍ତ୍ରକାରମାନେ ସନ୍ୟାସର ନିୟମ ପ୍ରବର୍ତ୍ତନ କରିଛନ୍ତି । ସନ୍ୟାସର ଅର୍ଥ ହେଲା, ପୁରାତନ ସବୁକିଛି ଛିନ୍ନକରି ପରିତ୍ୟାଗ କରିବା । ଏପରିକି ସନ୍ୟାସ ଗ୍ରହଣ ପରେ ନାମ ପର୍ଯ୍ୟନ୍ତ ବଦଳେଇ ଦିଆଯାଏ । ପ୍ରଥମେ ଯେଉଁ ନାମ ଥିଲା ଏବଂ ସେ ଯାହା କିଛି କରିଥିଲା ସବୁ ଶେଷ କରି ଦିଆଯାଇଥାଏ । ତାର କୌଣସି ବାବା କିମ୍ବା ମା' ନଥାନ୍ତି । କାରଣ ଯାହାର ବାବା-ମା' ଥିଲେ ସେ ତ ମରି ଯାଇଛନ୍ତି । କିଏ ଆଉ କାହାର ଅନ୍ୱେଷଣ କରିବ ?

ଅନେକ ସମୟରେ ମଣିଷ ପ୍ରଶ୍ନ କରେ ଯେ କାମ, କ୍ରୋଧ, ମାତ୍ସର୍ଯ୍ୟ, ଏହିସବୁ ଦୋଷ କିପରି ଦୂର କରାଯାଇପାରିବ ? କଥା ହେଉଛି ଯେ, ଏଇମାନେ ସମଗ୍ର ଚିତ୍ତକୁ ଆବୋରି ରହିଥାନ୍ତି । ତାହାହେଲେ ଯଦି ସଂଭବ ହେଉଛି ତ ଏହି ଚିତ୍ତକୁ ଧରି ଫୋପାଡ଼ି ଦିଅ । ଆମର ବୁଝିବା ଦରକାର ଯେ ଆମେ ଯେପରି ଅନ୍ୟର ଚିତ୍ତର ସାକ୍ଷୀ, ସେହି ପରି ନିଜ ନିଜ ମନର ମଧ୍ୟ ସାକ୍ଷୀ । ଅନ୍ୟର ମନ ସହିତ ଆମର ଯେପରି କୌଣସି ସଂବନ୍ଧ ନାହିଁ, ସେହିପରି ନିଜ ମନ ସହିତ ମଧ୍ୟ କୌଣସି ସଂବନ୍ଧ ନାହିଁ । ଅନ୍ୟ ଜଣେ କ୍ରୋଧିତ ହେଲେ ଯେପରି ମନେହୁଏ, ଏ କାମଟା ଠିକ୍ ନୁହେଁ; କାରଣ ମୁଁ ତାର ମନର ସାକ୍ଷୀ । ଠିକ୍ ସେହିପରି ଭାବରେ ମୁଁ ଯଦି ରାଗି ଯାଏ, ତେବେ ମୋର ଏହି ଜ୍ଞାନ ଥିବା ଉଚିତ ଯେ କାମଟା ଠିକ୍ ହେଲା ନାହିଁ; କାରଣ ଏହି ମନର ମଧ୍ୟ ମୁଁ ହେଉଛି ସାକ୍ଷୀ ସ୍ୱରୂପ । ଏହି ଭାବରେ ଯଦି ଆମେ ନିଜ ନିଜ ମନର ସାକ୍ଷୀ ସ୍ୱରୂପ ହୋଇପାରିବା, ତେବେ ମନ ମଧ୍ୟ ମୁଁ ଓ ସାକ୍ଷୀ ମଧ୍ୟ ମୁଁ, ଏହା ହୋଇ ପାରିବ ନାହିଁ । ମୁଁ ଯଦି ଚିତ୍ତ ହେବି, ତେବେ ସାକ୍ଷୀ ହୋଇ ପାରିବି ନାହିଁ । ଅତଏବ ଚିତ୍ତର ସାକ୍ଷୀ ସ୍ୱରୂପ ରହିବା ପାଇଁ ଚିତ୍ତ ଠାରୁ ଅଲଗା ହେବା ଅବଶ୍ୟ ପ୍ରୟୋଜନ । ଯାହାର କୌଣସି ଧାରଣା ନାହିଁ ତାକୁ ଲକ୍ଷେ ଲୋକ ଯଦି କହିବେ ତୁମେ ଭୁଲ କାମ କରିଛ ସେ କଥା ସେ ମାନିବ ନାହିଁ । କିନ୍ତୁ

ଯାହାର ଜ୍ଞାନ ହୋଇଛି ସେ ମନରୁ ଅଲଗା ହୋଇଯାଏ ଏବଂ ତାହା ଫିଙ୍ଗି ଫୋପାଡ଼ି ଦିଏ । ଭବିଷ୍ୟତରେ ତାର ଆଉ କୌଣସି ବଡ଼ ଦୋଷ ହୁଏ ନାହିଁ । ଛୋଟ-ଛୋଟ ଭୁଲ ହୋଇପାରେ, ଯାହା ଦେହ ସହିତ ସ୍ୱାଭାବିକ ଭାବରେ ଯୁକ୍ତ ହୋଇଥାଏ, କିନ୍ତୁ ପ୍ରତି ମୁହୂର୍ତ୍ତରେ ଯଦି ଜ୍ଞାନକୁ ଜାଗ୍ରତ ରଖାଯାଏ ତେବେ କୌଣସି ବଡ଼ ରକମର ଭୁଲ ହେବ ନାହିଁ ।

*** *** ***

ତେଣୁ ପ୍ରଥମ ଏବଂ ସବୁଠାରୁ ବଡ଼ କଥା ହେଲା, ନିଜର ଦୋଷ ବୁଝିପାରିଲେ ମଣିଷ ତାଠାରୁ ଅଲଗା ହୋଇଯାଏ । ଦୋଷ ମନରେ, ଇନ୍ଦ୍ରିୟ ମଧ୍ୟରେ ରହିଛି । କାହାରି ସ୍ମରଣ ଶକ୍ତି ଦୁର୍ବଳ ହୋଇଗଲେ ସେ ଚିକିତ୍ସକଙ୍କ ନିକଟକୁ ଯାଏ, ଚିକିତ୍ସକ ତାହାକୁ ଅଁଳା କୋଳି ଖାଇବାକୁ ପରାମର୍ଶ ଦିଅନ୍ତି । ତୁମର ଶକ୍ତି କ୍ଷୀଣ ହୋଇଛି । କିନ୍ତୁ ତୁମେ କ୍ଷୀଣ ହୋଇ ନାହଁ । ତୁମେ ତାହାଠାରୁ ଅଲଗା ହୋଇ ଯାଅ, ତାକୁ ଚିହ୍ନିବାର କ୍ଷମତା ଅର୍ଜନ କର । ଡାକ୍ତର ତାର ଦୁର୍ବଳ ସ୍ମୃତି-ଶକ୍ତିକୁ ଭଲ କରି ଦିଅନ୍ତି । ଏହିପରି ଭାବରେ ଆମେ ନିଜର ଦୋଷ ଗୁଡ଼ିକୁ ଚିହ୍ନି ନେବାର ଅଧିକାର ଦେଇ ଦୋଷ ସମୂହରୁ ପୃଥକ୍ ରହି, ଦୋଷ ସମୂହର ପ୍ରତ୍ୟକ୍ଷ ସାକ୍ଷୀ ରୂପେ ରହିବା । ଆମେ ଯଦି ଦୋଷରୁ ଅଲଗା ନ ରହୁ, ତେବେ ଦୋଷରୁ ମୁକ୍ତ ହେବା ପାଇଁ ସକ୍ଷମ ହୋଇ ପାରିବା ନାହିଁ । ଯେଉଁ ବ୍ୟକ୍ତି ନିଜର ଦୋଷ ବୁଝି ପାରିଛି, ସେ ଦୋଷରୁ ଅଲଗା ହୋଇ ଯାଇଛି । ଆମେ ନିରପେକ୍ଷ ଭାବରେ ଯଦି ଆତ୍ମ-ନିରୀକ୍ଷଣ କରିବା, ତେବେ ଦୋଷରୁ ମୁକ୍ତ ହୋଇଯିବା । ସେଥିପାଇଁ ପ୍ରତିଦିନ ଅଧ ଘଣ୍ଟା କରି ନିଜକୁ ଅଲଗା କରି ବାହାରକୁ ଆଣିବା ଦରକାର । ହିନ୍ଦୁ ଧର୍ମାବଲମ୍ବୀମାନେ ଗାଧୋଇବା ପାଇଁ ଯେପରି ସମୟ ବାହାର କରିଥାନ୍ତି, ସେହିପରି ଭାବରେ ଧ୍ୟାନ-ଚିନ୍ତନ, ପରୀକ୍ଷା, ନିରୀକ୍ଷା, ଏସବୁ କାର୍ଯ୍ୟ ପାଇଁ ପ୍ରତିଦିନ କିଛି ସମୟ ବାହାର କରିନେବା ଦରକାର । ତା ଭିତରେ ନାମ ସ୍ମରଣ ମଧ୍ୟ କରାଯାଇ ପାରେ ।

*** *** ***

ସାକ୍ଷୀତ୍ୱର ଅନୁଶୀଳନ କରିବା ପାଇଁ ଦୁଇଟି ଉପାୟ କୁହାଯାଇଛି । ପ୍ରଥମଟି ହେଲା ପରମାତ୍ମା ଏହି ସଂସାରରେ ଗୁଣ ରୂପେ ଅବସ୍ଥାନ କରନ୍ତି, ଏହି ସବୁ ଗୁଣକୁ ଆକର୍ଷଣ କରିବା, ଗୁଣର ବୃଦ୍ଧି ସାଧନ କରିବା । ଦ୍ୱିତୀୟଟି ହେଲା -- ଏପରି ଭାବରେ କାମ କରିବା, ଏପରି ଭାବରେ ଚର୍ଚ୍ଚା କରିବା ଯେପରି ମନ ଲିପ୍ତ ନ ହେବ । ପ୍ରକ୍ରିୟା ଦୁଇ ପ୍ରକାର -- ମନର ବାହାରକୁ ଯିବା ଏବଂ ମନର ଉର୍ଦ୍ଧ୍ୱକୁ ଯିବା । ବ୍ୟାକରଣ, ଗଣିତ ଇତ୍ୟାଦି ପରି ବିଷୟ ଗୁଡ଼ିକର ଚର୍ଚ୍ଚା କରିବା ବେଳେ୍ ମନରେ କୌଣସି ଖିଆଲ ରହେ ନାହିଁ । ଏଥିପାଇଁ ବୈଜ୍ଞାନିକମାନେ ଅନେକ ବେଶୀ ନିର୍ଲିପ୍ତ ହୋଇଥାନ୍ତି । କାରଣ ସେମାନଙ୍କୁ ବିଜ୍ଞାନର ଅଧ୍ୟୟନ କରିବାକୁ ହୁଏ । ମନ ସହିତ ତାର ସଂବନ୍ଧ ରହେ ନାହିଁ । ଏହି କାମ ସହଜରେ କରାହୁଏ । ଗଣିତ ଓ ଭୂଗୋଳରେ ଯେଉଁ ଏକାଗ୍ରତା ଆସେ, ତାହା ଅଳ୍ପ ସମୟ ପାଇଁ । ଏହି ପ୍ରକାର ଏକାଗ୍ରତା ଆମକୁ କ୍ଷୁଧା ତୃଷ୍ଣା ରୂପ ବିକାରର ଉପରକୁ ନେଇ ଯାଏ ନାହିଁ । ଅନ୍ତରାତ୍ମା ଆଡ଼କୁ ମୁହାଁଇବା ପାଇଁ ଯେଉଁ ଏକାଗ୍ରତା ଆସେ, ତାହାହିଁ ଚିତ୍ତ ଶୁଦ୍ଧି ଦୃଷ୍ଟିରୁ ଶ୍ରେଷ୍ଠ ।

*** *** ***

ମନର ଊର୍ଦ୍ଧ୍ୱକୁ ଉଠିବା, ଅର୍ଥାତ୍ (୧) ନିଜର ମନଠାରୁ ଉପରକୁ ଉଠିବା, (୨) ସମସ୍ତଙ୍କ ମନଠାରୁ ଉପରକୁ ଉଠିବା, (୩) ମାନସିକ ଚିନ୍ତାଠାରୁ ଉପରକୁ ଉଠିବା । ଯେତେବେଳେ ନିଜ ମନର ଉପରକୁ ଉଠିବା କଥା ଆସେ ସେତେବେଳେ ଅନ୍ୟ ଧରଣର ପ୍ରକ୍ରିୟା ସର୍ବଦା ଚାଲୁ ରଖିବାକୁ ହେବ ଏବଂ ତାପରେ ଚିତ୍ତକୁ ଶରୀର ଠାରୁ ଅଲଗା ବୋଲି ଚିହ୍ନି ନେବାର କ୍ରିୟା ମଧ ଚାଲୁଥିବ ।

ଅପରର ଚିତ୍ତ ଠାରୁ ମଧ ନିଜକୁ ଅଲଗା କରିବାକୁ ହେବ । ତା ପାଇଁ ଗୁଣ ଦୋଷ ଆଦିର ବିଶ୍ଳେଷଣ କରିବାକୁ ହେବ । ଯେଉଁ ସ୍ଥାନରୁ ଗୁଣ ଆହରଣ କରିହେବ, ଯେଉଁ ପରିମାଣରେ ମିଳିବ, ସେତିକି ଗ୍ରହଣ କରିବାକୁ ହେବ ଏବଂ ବାରମ୍ବାର ତାର ଜପ କରିବାକୁ ହେବ । ଗୁଣ ସମୂହର ଚିନ୍ତନ, ମନନ, ଶ୍ରବଣ, ସ୍ମରଣ ଏବଂ ଉଚ୍ଚାରଣର ପ୍ରକ୍ରିୟା ଚାଲୁଥିବ । ବ୍ୟକ୍ତିର ଦୋଷ ଥାଏ, କିନ୍ତୁ ସେ ସବୁ କେବଳ ଗୁଣ ପ୍ରକାଶ ପାଇଁ ହୋଇଥାଏ । ଗୁଣ ଗ୍ରହଣର ଅଭ୍ୟାସ ତିଆରି କରିବାକୁ ହେଲେ ଅନ୍ୟର ମନରୁ ନିଜକୁ ଅଲଗା କରି ଦେଖିବ । ଆଉ ଏହି ପ୍ରକ୍ରିୟା ଯଦି ସଫଳ ହୋଇଯାଏ ତାହାହେଲେ ସମସ୍ତ ମନର ଊର୍ଦ୍ଧ୍ୱକୁ ଉଠିବାର ପ୍ରକ୍ରିୟା ଆରମ୍ଭ ହେବ ।

ପୁଣି ମାନସିକ ଚିନ୍ତନର ଉପରକୁ ଉଠିବାର କଥା ଆସୁଛି । ଏ କାର୍ଯ୍ୟ କିପରି ଭାବରେ ହେବ ? ଚିକିତ୍ସକ କରୁଣା ପ୍ରେରିତ ହୋଇ ନିରପେକ୍ଷ ବୁଦ୍ଧିର ସହିତ ଅନ୍ୟର ଅପରେସନ୍ କରିଥାନ୍ତି । ଯଦି ନିଜ ପୁତ୍ରର ଅପରେସନ୍ କରିବା ସମୟ ଆସେ, ତାହାହେଲେ ସେ ସମୟରେ ସେ କରୁଣା ପ୍ରେରିତ ଥାଆନ୍ତି । ଏହି ସମୟରେ ଯଦି ସେ ମୋହ ପ୍ରେରିତ ହୋଇ ପଡ଼ିବେ ତେବେ ନିର୍ଲିପ୍ତତା ଏବଂ ସମତ୍ୱ ବୁଦ୍ଧି ହରାଇବେ । ସେତେବେଳେ ହାତ ବା ବୁଦ୍ଧି କେଉଁଟାବି ଠିକ୍ ଭାବରେ କାମ କରି ପାରେ ନାହିଁ । ଯେଉଁଥି ପାଇଁ ଅପରେସନ୍‌ର କାମ ଅନ୍ୟ କୌଣସି ଚିକିତ୍ସକଙ୍କ ଉପରେ ସମର୍ପଣ କରାଯାଏ । ମନର ଉପର ସ୍ତରର ଭୂମିକା ହେଲା ଅକ୍ଷୋଭ-ଚିନ୍ତନର ଭୂମିକା । ଉଚ୍ଚ ବିଦ୍ୟାଳୟର ଛାତ୍ର ଗଣିତରେ ଲାଭ-କ୍ଷତିର ଅଙ୍କ କଷେ । କେତେବେଳେ ଅତିରିକ୍ତ କ୍ଷତି ହୋଇଯାଏ, କିନ୍ତୁ ତାହା ବାହାର କରିବା ବେଳେ ଛାତ୍ର ମନରେ କୌଣସି କଷ୍ଟ ହୁଏ ନାହିଁ । ଯେପରି (ନିଜ) ବ୍ୟବସାୟରେ କ୍ଷତି ହେଲେ ବ୍ୟବସାୟୀର ଛାତି ଧଡ଼ପଡ଼ ହୁଏ । ବାଳକଟିର କ୍ଷେତ୍ରରେ ହିସାବ ସଂଗରେ ତାର ନିଜର କୌଣସି ସଂପର୍କ ନ ଥାଏ । ସେ ନିର୍ଲିପ୍ତ ବୁଦ୍ଧିର ପ୍ରୟୋଗ କରି ହିସାବ କରେ । ଯଦି ବ୍ୟବସାୟୀ (କାମ ସମୟରେ) ଏହି ପ୍ରକାର ନିର୍ଲିପ୍ତ ବୁଦ୍ଧି ରଖି ପାରେ ତାହାହେଲେ ବୁଝିବାକୁ ହେବ ଯେ ସେ ମନର ଉପର ସ୍ତରକୁ ଉଠି ଚିନ୍ତନ କରୁଛି ।

ତାହାହେଲେ ଦୁଇ ପ୍ରକାରର ଅବସ୍ଥା ଅଛି -- ଗୋଟିଏ ହେଲା ମନଠାରୁ ବାହାରକୁ ଚାଲିଯିବା, ଆଉ ଗୋଟିଏ ହେଲା ମନର ଉପର ସ୍ତରକୁ ଉଠିବା । ତୃତୀୟ ଅବସ୍ଥା ମଧ ଅଛି, ତାହା ହେଲା ଶୂନ୍ୟ ମନ । ମନର ଅସ୍ତିତ୍ୱ ହିଁ ନାହିଁ । ମନ ଅଛି, କିନ୍ତୁ ଆମେ ମନର ବାହାରେ ଅଛୁ, ସାକ୍ଷୀ ରୂପେ ଦର୍ଶନ କରି ଯାଉଛୁ । ମନରେ ନାନା ପ୍ରକାର ବୃତ୍ତି, ଢେଉ ଉଠିଲା ପରି ଉଠୁଛି, ପୁଣି ପଡ଼ି ଯାଉଛି -- ଆମେ ଦେଖୁଛୁ, ତାକୁ ଚିହ୍ନୁଛୁ । ଯେପରି ଏହି ଘଡ଼ି ରହଛି । ମୁଁ ସବୁ ଦିନେ

ଦେଖୁଛି । ମିନିଟିଏ ପଛେଇ ଗଲେ ଆମେ ଜାଣିପାରୁ ପୁଣି ତାକୁ ଠିକ୍ କରି ଦେଉ । ଏହି ପରି ମନର ସ୍ୱଭାବ ଯଦି ଆମ ଦୃଷ୍ଟିକୁ ଆସେ ତେବେ ତାହାକୁ ଠିକ୍ କରିବା ସଂଭବ ହେବ । କଣ ଅଛି ? ଏହି ମନ ବହୁତ ଅବାନ୍ତର କଥା କହିବାରେ ଅଭ୍ୟସ୍ତ । ତାହାହେଲେ କ'ଣ କରିବାକୁ ହେବ ? ମୁହଁ କ'ଣ ସିଲାଇ କରିଦେବଂ ? ଆମେ ମନର ସାକ୍ଷୀ ହୋଇଯିବା ଆଉ ତାର ସ୍ୱଭାବ ଚିହ୍ନି ରଖିବା ଓ ଏପ୍ରକାର ଉପାୟରେ ମନର ସଂଶୋଧନ ହେବ ।

ମନର ଉପରକୁ ଉଠିବାର ବିଷୟ ଏତେ ସହଜ ନୁହେଁ । ସେଥିପାଇଁ ନିଜକୁ ପୃଥକ୍ କରିବାକୁ ହେବ, ଏବଂ ନିଜକୁ ଜାଣିବାକୁ ହେବ । ପୃଥକୀକରଣ ପ୍ରକ୍ରିୟା ମନର ଉପରକୁ ନ ଉଠିବା ପର୍ଯ୍ୟନ୍ତ ସଂଭବ ନୁହେଁ । ଏଥିପାଇଁ ମୁଁ ସବୁ ବେଳେ ଥର୍ମାମିଟରର ଉଦାହରଣ ଦେଇଥାଏ । ଥର୍ମାମିଟରର ନିଜର ଜ୍ୱର ନଥାଏ, ତେଣୁ ତା ପକ୍ଷରେ ଅନ୍ୟର ଜ୍ୱର ମାପିବା ସଂଭବ ହୋଇଥାଏ । ଜ୍ୱର ମାପିବା କାମ ଯଦି ନିଜକୁ କରିବାକୁ ହେବ ତେବେ ନିଜର ଜ୍ୱର ନଥିବା ଉଚିତ । ସାରା ଦୁନିଆରେ ମାନସିକ ଜଂଜାଳ ପୁରି ରହିଛି । ସେହି ସବୁ ଜଂଜାଳରୁ ନିସ୍ତାର ପାଇବାକୁ ହେଲେ ନିଜ ମନର ଜଂଜାଳ ରଖିଲେ ଚଳିବ ନାହିଁ । ତା ନ ହେଲେ ସଂଘର୍ଷ ଲାଗି ରହିବ । ଏଥିପାଇଁ ମନର ଉପରକୁ ଉଠିବା ଛଡ଼ା ମନକୁ ଆୟତ୍ତରେ ଆଣିବା ସଂଭବ ନୁହେଁ । ଏଇଟା ହିଁ ମୁଖ୍ୟ ବିଷୟ ।

ଉନ୍ମନ ଗୋଟିଏ ଉତ୍ତମ ଅବସ୍ଥା । ଏଥିରେ ମନର ଉପାଦନ ହିଁ ନଷ୍ଟ ହୋଇଯାଏ । ଉନ୍ମନା ହେବା ପାଇଁ ମନ ନାଶର ପ୍ରତ୍ୟାଶା ରହିଛି, ବୁଦ୍ଧିର ପ୍ରୟୋଜନୀୟତା ରହିଛି ଏବଂ ଆଖି, କାନ ଏସବୁ ଇନ୍ଦ୍ରିୟର ମଧ୍ୟ ଆବଶ୍ୟକତା ରହିଛି । କିନ୍ତୁ ବୁଦ୍ଧି ଓ ଇନ୍ଦ୍ରିୟ ଏହି ଦୁଇଟିର ମଧ୍ୟବର୍ତ୍ତୀ ସ୍ଥାନରେ ମନକୁ ରଖିବା ଜରୁରୀ ନୁହେଁ । ମନ ଇନ୍ଦ୍ରିୟ ଦ୍ୱାରା ପ୍ରଭାବିତ ହୁଏ, ବିକାର ଯୁକ୍ତ ହୁଏ, ସଂକଳ୍ପ-ବିକଳ୍ପାତ୍ମକ ଅବସ୍ଥା ପ୍ରାପ୍ତ ହୁଏ । ଯଦି ବୁଦ୍ଧି ମନକୁ ପ୍ରଭାବିତ କରେ, ତେବେ ସେ ଇନ୍ଦ୍ରିୟର ପ୍ରଭାବରେ ଆଉ ରହିବ ନାହିଁ । ତାକୁ ଶେଷ କରି ଦେବ ଅର୍ଥାତ ବୁଦ୍ଧିର ବିସ୍ତାର କରିବ । ଏଇ ହେଲା ବିଚାର ।

ଉନ୍ମନ ହେବାର ଅର୍ଥ ହେଉଛି ମନର ଉପରକୁ ଯିବା । ଯେଉଁ ବ୍ୟକ୍ତି ଉପରକୁ ଉଠିଛି ସେ ସମଗ୍ର ବିଶ୍ୱର ସାକ୍ଷୀ ସ୍ୱରୂପ ହୋଇଯାଏ, ସବୁ ନିରୀକ୍ଷଣ କରେ, ସେ ଦେଖେ ଯେ ଦୁନିଆର ଖେଳ କିପରି ଚାଲିଛି । ଉନ୍ମନ ଅର୍ଥାତ ଅନନ୍ତ ଶୟନରେ ଶୋଇଥିବା ଭଗବାନଙ୍କ ଭୂମିକା । ଗୋଟିଏ ସୁନ୍ଦର ଶ୍ଳୋକ ଅଛି — ମଧ ଖଣ୍ଡ ସୁଖାଂ ଭୋଦ୍ୟୋ—ମୁଁ ଅଖଣ୍ଡ ଆନନ୍ଦ ସମୁଦ୍ର— ବହୁଧା ବିଶ୍ୱ ବିଚୟଃ -- ବିଶ୍ୱରୂପୀ ବୀଚି, ଅସଂଖ୍ୟ ତରଙ୍ଗ ଉଠୁଛି, ପଡୁଛି । ଉତ୍ପଦ୍ୟନ୍ତେ ବିଲୀୟନ୍ତେ ମାୟା--ମାରୁତ-ବିଭ୍ରମାତ୍ । ମାୟାରୂପୀ ପବନ ପ୍ରବଳ ବେଗରେ ପ୍ରବାହିତ ହେଉଛି । ପ୍ରବଳ ବାୟୁ ବେଗରେ ତରଙ୍ଗ ଗୁଡ଼ିକ ଉଠୁଛନ୍ତି । ଗୋଟିଏ ବିଶ୍ୱର ଉତ୍ଥାନ ହେଲା, ପତନ ହେଲା । ଆଉ ଗୋଟିକର ଉତ୍ଥାନ ହେଲା, ପତନ ମଧ ହେଲା । କିନ୍ତୁ ମୁଁ ଅଖଣ୍ଡ ଆନନ୍ଦ-ସମୁଦ୍ର । ଶେଷ ଶାୟୀର ଯେଉଁ ଭୂମିକା, ତାହାହିଁ ମୋର ଭୂମିକା । ଗୋଟିଏ ମରିଗଲା ସେଥିରେ ମୋର ଆନନ୍ଦ, ଆଉ ଗୋଟିଏର ଜନ୍ମ ହେଲା ସେଥିରେ ମଧ ଆନନ୍ଦ, ସବୁ କିଛିର ଗୋଟିଏ ଅର୍ଥ ଆନନ୍ଦ । ଏହା

ହେଲା ଉନ୍ମନ ଅବସ୍ଥା । ମନର ଊର୍ଦ୍ଧ୍ୱକୁ ଉଠି ବିଶ୍ୱର ଖେଳ ଦେଖିବା ।

ଉନ୍ମନ ଅବସ୍ଥା ଲାଭ କରିବା ସଂପର୍କରେ ଶଂକରାର୍ଯ୍ୟଙ୍କର ଉକ୍ତି --

'ପଶ୍ୟନ୍ ଉଦାସୀନତୟା ପ୍ରପଞ୍ଚମ୍' ।

ଏ ଯେଉଁ ପ୍ରପଞ୍ଚ (ଭ୍ରମାତ୍ମକ ମାୟାରୂପୀ ସଂସାର) ଆମେ ଦେଖୁଛୁ, ତାହାକୁ ଉଦାସୀନତାର ଦୃଷ୍ଟିରେ ଦେଖ । ଉଦାସୀନ ହେବା ମାନେ ନିର୍ଲିପ୍ତ ରହିବା । ଏହା ମାୟାମୟ ଜଗତକୁ ନିର୍ଲିପ୍ତ ଭାବରେ ଦେଖି ସତର୍କତା ଅବଲମ୍ବନ କରି ମୁହୂର୍ତ୍ତକ ମଧ୍ୟରେ 'ସଂକଳ୍ପଂ ଉନ୍ମୂଳୟ' -- ସଂକଳ୍ପର ମୂଳ ଉତ୍ପାଟନ କରି ଦିଅ । ମାୟାମୟ ସଂସାରକୁ ଦେଖିବାରେ କୌଣସି ଦୋଷ ନାହିଁ ; କିନ୍ତୁ ତାହାକୁ ଉଦାସୀନ ଭାବରେ ଦେଖ । ଆଖି ଆଗରେ ଆମ୍ବଗଛ, ସେଥିରେ ଆମ୍ବ ଫଳିଛି । ଖୁବ୍ ଭଲ କଥା, ଦେଖ । କିନ୍ତୁ ଦେଖିବା ପରେ ଯେପରି ମନ ମଧ୍ୟରେ ଆମ୍ବ ଖାଇବାର ବାସନା ନ ଜାଗେ । ଟେକା ଫୋପାଡ଼ି ଆମ୍ବ ତୋଳିବାର ଇଚ୍ଛା ଯେପରି ନ ହୁଏ । ଦେଖିବାର କୌଣସି ବାଧା ନାହିଁ । ନିର୍ଲିପ୍ତ ଭାବରେ ତାହାକୁ ଦେଖିବାକୁ ହେବ । ପୁଣି ଆଖି ଖୋଲା ରଖି ମଧ୍ୟ ଉନ୍ମନୀ ଅବସ୍ଥା ହୋଇପାରେ । ତା ନ ହେଲେ ଆଖି ବନ୍ଦ ରଖିବାର ପ୍ରୟୋଜନ ହୋଇପାରେ, ଯଦ୍ୱାରା ବାହ୍ୟ ବସ୍ତୁ ଦେଖିବା ଫଳରେ ମନରେ କୌଣସି ସଂକଳ୍ପ ଭାବନା ନ ଆସେ । ଆଖି ବନ୍ଦ କରିବା ପରେ ମଧ୍ୟ ସଂକଳ୍ପ ମନ ଭିତରେ ଦେଖାଦିଏ । ସେଥିପାଇଁ ଏହି ମାୟାମୟ ସଂସାରକୁ ଉଦାସୀନ ଦୃଷ୍ଟିରେ ଦେଖି ସାରି ସଂକଳ୍ପର ଧାରାବାହିକତାର ମୂଳ ଉତ୍ପାଟନ କର । ଶଙ୍କରାଚାର୍ଯ୍ୟ କହିଛନ୍ତି, ସଂକଳ୍ପଂ ଉନ୍ମୂଳୟ ସାବଧାନଃ । ଏହା ସାବଧାନ ରହିବା ପାଇଁ ସତର୍କ ବାଣୀ । ଏହାର ମହତ୍ୱ ଅପରିସୀମ । କାରଣ ସଂକଳ୍ପ ଗୋଟିଏ ଅଧେ ନୁହେଁ । ଗୋଟିଏ ଅଧେ ସଂକଳ୍ପ ହେଲେ ତ ସାବଧାନ ରହି ହୁଅନ୍ତା, ରକ୍ଷା ମିଳନ୍ତା । କିନ୍ତୁ ଗୋଟିକ ପରେ ଗୋଟିଏ ସଂକଳ୍ପ ଧାରାବାହିକ ଭାବରେ ମନକୁ ଆସେ । ଗୋଟିଏ ସଂକଳ୍ପ ଗଲା ତ ଅନ୍ୟ ଗୋଟିଏ ସଂକଳ୍ପ ମନକୁ ଆସିଲା । ଦ୍ୱିତୀୟଟି ଗଲା ପୁଣି ତୃତୀୟଟି ଆସିଲା । ଏଥିପାଇଁ ଜଣାଇ ଦିଆଯାଉଛି ଯେ ସବୁବେଳେ ସାବଧାନ ରୁହ । କୌଣସି ଲୋକ ସତର୍କତାର ସହିତ ନଦୀରେ ୧୪୦୦ ଫୁଟ ପର୍ଯ୍ୟନ୍ତ ପହଁରିଲା ଆଉ ଶେଷ ମୁହୂର୍ତ୍ତରେ ଅସାବଧାନ ହେଲା ଯଦି ସେ ବୁଡ଼ିଯିବ । ୧୪୦୦ ଫୁଟ ପହଁରିବାର ଲାଭ ବୃଥାଗଲା । ସେଥିପାଇଁ ଯେ ପର୍ଯ୍ୟନ୍ତ ପାଦ କୂଳରେ ନ ଲାଗିଛି ସେ ପର୍ଯ୍ୟନ୍ତ ହାତ ଗୋଡ଼ ହଲାଇବାକୁ ହେବ ଓ ପହଁରିବାକୁ ହେବ । ସଂକଳ୍ପର ଧାରାବାହିକତା ଛିନ୍ନ କରି ଦେବାକୁ ହେବ । ସମସ୍ତ ଶକ୍ତି ଦେଇ ତାକୁ ଟିକି ଟିକି କରି ଦେବାକୁ ହେବ । ଭାଂଗିବା ବେଳେ ଆନନ୍ଦ ହୁଏ ନାହିଁ । ଯଦି ସଂକଳ୍ପ ମନ୍ଦ ହେବ ତାହା ମନ୍ଦ କାମରେ ଲାଗିବ । ତେଣୁ ତାକୁ ସହଜରେ ଭାଂଗି ଦିଆଯିବ । ପରନ୍ତୁ ସଂକଳ୍ପ ଯଦି ଉତ୍ତମ ହେବ ତେବେ ମଣିଷ ସେଥିରେ ବାନ୍ଧି ହୋଇଯିବ । ଦଶ ପାଉଣ୍ଡ ଓଜନର ଲୁହାର ବେଡ଼ୀ ହୁଏ ତ ଜଣେ ସ୍ତ୍ରୀ ଲୋକ ଖଣ୍ଡ ଖଣ୍ଡ କରି ଫିଙ୍ଗି ଦେବ ; କିନ୍ତୁ ଦଶ ପାଉଣ୍ଡ ଓଜନର ସୁନାର ବେଡ଼ୀକୁ ଜଣେ ସ୍ତ୍ରୀ ଲୋକ ଖୁବ୍ ବିଳାସପୂର୍ଣ୍ଣ ଜିନିଷ ବୋଲି ପରିଧାନ କରିବ । ସୁନାର ବେଡ଼ୀକୁ ଧରି ଫୋପାଡ଼ି ଦେବା କଷ୍ଟ କାମ । ସେଥିପାଇଁ, ସଂକଳ୍ପ ପବିତ୍ର ହେଲେ ମଧ୍ୟ ତାହାକୁ ତ୍ୟାଗ କରିବାକୁ ହେବ । କାରଣ 'ଉନ୍ମନୀ' ହେବା କାମ୍ୟ, 'ସନ୍ମନୀ' ହେବା ନୁହେଁ । ଏ

ପର୍ଯ୍ୟନ୍ତ ମନ କେବଳ ମନ୍ଦ କାମନା ହିଁ କରି ଆସିଛି । ବର୍ତ୍ତମାନ ଭଲ ଚିନ୍ତା କରି ମନ ଉନ୍ନତ ଅବସ୍ଥା ଲାଭ କରିଛି, ତାର ସଂଶୋଧନ ହୋଇଛି, ତଥାପି 'ଉନ୍ମନ' ହୋଇ ପାରିନାହିଁ (ଉଦାସୀନ, ଆନ୍‌ମନା) । ସେଥିପାଇଁ ସବୁବେଳେ ସାବଧାନ ରହିବା ଦରକାର ।

ଏହାପରେ ଆଶ୍ରୟ-ନିର୍ଭରତାର ବିନାଶ ସାଧନ କରିବା ପ୍ରୟୋଜନ । ଯେଉଁ ଆଧାରକୁ ଭିତ୍ତି କରି ସଂକଳ୍ପ ଠିଆ ହୋଇଅଛି ସେହି ଆଧାରକୁ ଭାଂଗି ଟିକିଟିକି କରି ଦେବାକୁ ହେବ । ତାପରେ ଏହି ମନ ଧିରେ ଧିରେ କ୍ଷୀଣ ହୋଇ ଯିବ । ଛୋଟ ପିଲା ବାପ-ମାଙ୍କ ଆଶ୍ରୟରେ ଥାଏ । ଶାସ୍ତ୍ର ତାକୁ କହେ, ଗୁରୁ ଗୃହକୁ ଯା, ବାପ-ମାଙ୍କ ଆଶ୍ରୟ ଛିନ୍ନ କରି ଦେ । ଏହିପରି ବାସନାର ବଶବର୍ତ୍ତୀ ହୋଇ ଯେଉଁ ଯେଉଁ ଆଧାରକୁ କୁଣ୍ଢେଇ ଧରିଛି, ସେସବୁକୁ ଛାଡ଼ିବାକୁ ହେବ । ଗୋଟିଏ ଅବଲମ୍ବନରୁ ମୁକ୍ତ ହେବା ମାତ୍ରେ ମନ ଆଉ ଗୋଟିଏ ଅବଲମ୍ବନକୁ ଆବୋରି ବସିଥାଏ । ଏଥିପାଇଁ ଗୀତାରେ କୁହାଯାଇଛି, 'ଅନିକେତଃ ସ୍ଥିରମତିଃ', ସ୍ଥିରବୁଦ୍ଧି ହେଉଛି ନିରାଧାର ଅବସ୍ଥାନ । ଚିତ୍ତ ଯଦି ଏପରି ହୁଏ ତାହାହେଲେ ଧିରେ ଧିରେ ଶାନ୍ତି ଲାଭ ହେବ । ତାହା ମଧ୍ୟ ସାଂଗେ ସାଂଗେ ହେବ ନାହିଁ । ଆତ୍ମାକୁ ଜାଣିବା ପାଇଁ ଆଧାରକୁ ଛିନ୍ନ କରିବାକୁ ହେବ । ଅବଲମ୍ବନ ଛିନ୍ନ ହୋଇଗଲେ ଚିତ୍ତରେ ନ୍ୟୁନତା ଦେଖା ଦିଏ । ଚିତ୍ତ ସେତେବେଳେ କ୍ଷୀଣତା ଲାଭ କରେ । ଉଦାସୀନ ଭାବ ମନରେ ଜାଗ୍ରତ କରିବା ପାଇଁ ଚିତ୍ତର କ୍ଷୀଣତା ପ୍ରାପ୍ତି ଅବଶ୍ୟ ପ୍ରୟୋଜନ । ଗୀତାରେ କୁହାଯାଇଛି ଯେ ନିଜର ବୁଦ୍ଧିକୁ ଧୈର୍ଯ୍ୟର ସହିତ ରକ୍ଷା କରି ଧିରେ ଧିରେ ନିବୃତ୍ତି ଆଡ଼କୁ ଯିବା ଉଚିତ । ବର୍ତ୍ତମାନ ଆପଣ କହିପାରନ୍ତି ଯେ ପୁଣି ଆଶ୍ରୟ ନିର୍ଭରତା ମଧ୍ୟ ଆମେ ଧିରେ ଧିରେ ଛାଡ଼ିବୁ ତାହେଲେ ଏ କାମ ହେବ ନାହିଁ । 'ଧିରେ ଧିରେ ଛାଡ଼ିବାକୁ ହେବ', କହିଲେ ଛଡ଼ା ହେବ ନାହିଁ, ବରଂ ଦୃଢ଼ ହେବ । ସୁତରାଂ ଶୀଘ୍ର ଶୀଘ୍ର ଛାଡ଼ିବାକୁ ହେବ । ସଂପୂର୍ଣ୍ଣ ଭାବରେ ଛାଡ଼ି ଦେବାକୁ ହେବ । ଏତେସବୁ ଛାଡ଼ିବା ପରେ ମଧ୍ୟ ମନ ଭିତରେ ଭିତରେ ଗୋଳମାଳ କଲେ ମନ ଅନୁଭବ କରିବ ଯେ ଏହି ବ୍ୟକ୍ତି ମୋତେ ବାହାରକୁ ଯିବାକୁ ଦେବ ନାହିଁ ତାପରେ ସେ ପୁଣି ଶାନ୍ତ ହୋଇଯିବ ।

***    ***    ***

ଶୂନ୍ୟମନ ଅର୍ଥାତ୍ ମନ ଭିତରେ କିଛି ନାହିଁ । ଗାଢ଼ ନିଦ୍ରାବସ୍ଥାରେ ମନ ଯେପରି ରହେ ଜାଗ୍ରତ ଅବସ୍ଥାରେ ମଧ୍ୟ ସେହିପରି ଥିବ । ଆଖି ଆଗରେ ଏଇ ଯେ ପ୍ରାଚୀର ଅଛି ତାକୁ ଦେଖୁଛି ସେହିପରି ସାମନାରେ ଜଣେ ବାବୁ ବସିଛନ୍ତି ତାକୁ ବି ଦେଖୁଛି, କିନ୍ତୁ ମନ ଭିତରେ ତାର କୌଣସି ପ୍ରତିକ୍ରିୟା ନାହିଁ । ମନ ଶୂନ୍ୟ । ଏହା ବିକାର ମୁକ୍ତ ହେବାର ପ୍ରଥମ ପଦକ୍ଷେପ । ସାଧନାର ପ୍ରଥମ ଅବସ୍ଥାରେ ବିକାର ମୁକ୍ତିର ସାଧନା କରାଯାଏ, ତାପରେ ଆସେ ଆତ୍ମ ଚିନ୍ତନର ଭାବନା । ତାପରେ ଯାଇ ବିଚାର ମୁକ୍ତି । ସେଥିରେ ମନ ବିଚାରଶୂନ୍ୟ ଅବସ୍ଥାରେ ଥାଏ - ମନ ଖାଲି ହୋଇଯାଏ ।

ଆଜିକାଲି ମୋର ମନରେ କିଛି ନଥାଏ । ମନ ବୋଲି କିଛି ନାହିଁ । ଭୋର ସମୟରେ ବୁଲିଲାବେଳେ ଶୁକ୍ର ତାରା (ଶୁକ୍ରଗ୍ରହ) ସାମନାରେ ଦେଖାଯାଏ । ତାହାକୁ ଦେଖେ । ଲୋକମାନେ ଏପଟ ସେପଟ ଯିବା ଆସିବା କରନ୍ତି, ସେମାନଙ୍କୁ ଦେଖେ । ଗଛପତ୍ର ଦେଖେ, ଅନାବିଳ ଆନନ୍ଦ ।

ଏହିପରି କେତେକେତେ ସମୟ ମୋର ମନରେ ନରହି ଚାଲିଯାଏ। ଯେତେବେଳେ ଲୋକମାନଙ୍କ ସହିତ ବିଭିନ୍ନ ବିଷୟରେ ଆଲୋଚନା କରେ ସେତେବେଳେ ବୁଦ୍ଧି କାମ କରେ, ମନ ନୁହେଁ। କୌଣସି କାମରେ ମନକୁ ବି ଆଣିବାକୁ ହୁଏ ନାହିଁ। ପୁଣି ପଶା ଖେଳ ଚାଲିବ। ଏ ଖେଳରେ ଯାହାର ଜୟ ହେଲେ ମଧ୍ୟ ସେଥିରେ ସୁଖ-ଦୁଃଖ ନାହିଁ, ଆନନ୍ଦ ହିଁ ଅଛି। ନିଜର ଜୟ ହେଲେ ବି ଆନନ୍ଦ, ପରାଜୟ ହେଲେ ମଧ୍ୟ ଆନନ୍ଦ। ଏପରି ହେଲେ ଏ ଖେଳ ଆଧ୍ୟାତ୍ମିକ ହେବ। ସେଥିରେ ଯଦି ଦୁଃଖ ସୁଖର ପ୍ରଶ୍ନ ଆସିବ ତେବେ ତାହା ମାନସିକ ହୋଇଯିବ।

ଯାହାକୁ ଅନେକାଗ୍ରତା କୁହାଯାଏ, ମୋତେ ତାହାହିଁ କରିବାକୁ ହୁଏ। ଏକାଗ୍ରତା ପାଇଁ କିଛି କରିବାକୁ ହୁଏ ନାହିଁ। ଏହା ସ୍ୱାଭାବିକ ଭାବରେ ହୋଇଥାଏ। କେହି ଯଦି ମନକୁ ବନ୍ଦ କର ବୋଲି କୁହେ, ତେବେ ତାହା ବନ୍ଦ ହୋଇଯାଏ। ଯେତେବେଳେ କଥା କହିବାର ପ୍ରୟୋଜନ ହୁଏ, ସେତେବେଳେ ଖୋଲି ଦିଏ। ପୁଣି କଥା କହିବା ସମୟରେ ନିଜକୁ ଅଲଗା ରଖି କଥାବାର୍ତ୍ତା କରେ। ମଣିଷ ଯେପରି ପାଣି ଉପରେ ପହଁରେ, ପାଣିରେ ବୁଡ଼ିଯାଏ ନାହିଁ, ବୁଡ଼ିଗଲେ ତ ଗଲା- ସେହିପରି କଥା କହିବା, ଚାଲିବା, ହସିବା, କାମ କରିବାବେଳେ ଉପରେ ଭାସି ସବୁ କରୁଥାଏ, ଭିତରକୁ ବୁଡ଼ିଯାଏ ନାହିଁ। ଯେତେବେଳେ କାମ ନାହିଁ ମନ ଯାଡ଼େ ସିଆଡ଼େ ଘୁରି ବୁଲେ ନାହିଁ। ସବୁ ଆକର୍ଷଣର ଗୋଟିଏ କେନ୍ଦ୍ରବିନ୍ଦୁ। ଏଇଠି ଅଛି ତ ଏଇଠାରେ ହିଁ ରହିବ।

ବାବାଙ୍କର ଏହି ଘରର କାନ୍ଥରେ ଗୋଟିଏ ଛିଦ୍ର ଅଛି। କୂଅ ଖୋଳିବା କାମରେ ଶ୍ରମିକମାନେ କାମ କରୁଛନ୍ତି ବା ବୁଲାବୁଲି କରୁଛନ୍ତି ତାହା ଏହି ଛିଦ୍ର ମଧ୍ୟ ଦେଇ ଦେଖାଯାଏ। କେବେକେବେ ତାହା ମୁଁ ଦେଖେ। ଏପଟେ ସେପଟେ ମଧ୍ୟ ଦେଖିଦିଏ। ଏସବୁ ଗୋଟେ ମଉଜିଆ କାରବାର। କିନ୍ତୁ ଗୋଟିଏ ଗୋଟିଏ ବସ୍ତୁକୁ ଦର୍ଶନ କଲେ ସଙ୍ଗେ ସଙ୍ଗେ ମନ ଉପରେ ଯେଉଁ ପ୍ରଭାବ ପଡ଼େ ଏ କ୍ଷେତ୍ରରେ ତାହା ହୁଏ ନାହିଁ।

ଧ୍ୟାନର ଅର୍ଥ କୌଣସି ଗୋଟିଏ ଧ୍ୟାନମୂର୍ତ୍ତି, କୌଣସି ଚିତ୍ର, କୌଣସି ତ୍ରିକୋଣ, କୌଣସି ବିନ୍ଦୁ ଯଦି ହୁଏ ତେବେ ତାହା ଏକ କ୍ରିୟାତ୍ମକ ଧ୍ୟାନ ହବ। ଆମେ ତାହା କରୁନାହେଁ। ପ୍ରାର୍ଥନା ଆରମ୍ଭ ହେଲେ କେତେବେଳେ ଆଖି ବନ୍ଦ କରେ, କେତେବେଳେ ଖୋଲି ରଖେ। ଆଖିବନ୍ଦ କରିବା କିମ୍ବା ଖୋଲି ରଖିବାରେ କୌଣସି ପାର୍ଥକ୍ୟ ନାହିଁ। କାରଣ କୌଣସି ଆକର୍ଷଣ ନାହିଁ, ଏହାହିଁ ହେଲା ମୁଖ୍ୟ ବିଷୟ।

ହାତଦ୍ୱାରା କାମ କରିବା ଯେପରି, ମନ ଦ୍ୱାରା ଚିନ୍ତାକରିବା ସେହିପରି ଏକ ମାନସିକ କ୍ରିୟା। ଧ୍ୟାନ ଏବଂ ଜ୍ଞାନର ପ୍ରଭେଦର କଥା ବର୍ଣ୍ଣନା କରିବାକୁ ଯାଇ ଶଙ୍କର-ଭାଷ୍ୟରେ ଗୋଟିଏ ଜାଗାରେ କୁହାଯାଇଛି ଯେ ଧ୍ୟାନ ହେଲା ମାନସିକ କ୍ରିୟା, ଜ୍ଞାନ ଅର୍ଥାତ୍ ଆତ୍ମଜ୍ଞାନ କ୍ରିୟା ନୁହେଁ। (ଅନ୍ୟପ୍ରକାର ଜ୍ଞାନ କ୍ରିୟା) ଆଜିକାଲି ଅନେକ ପ୍ରକାରର ଲୋକ ଧ୍ୟାନ କରିବା ବିଷୟ କହିଥାନ୍ତି। ମୋର ଅନୁଭବରୁ ମୁଁ ଜାଣିଛି ଯେ ଧ୍ୟାନ କରିବା ଓ କାମ କରିବା ଏହି ଦୁଇଟି କଥା ପରସ୍ପର ବିରୋଧୀ। ଧ୍ୟାନର ଅର୍ଥ ମୁଁ ମାନସିକ କ୍ରିୟା ଭାବରେ ବୁଝେ ନାହିଁ, ଧ୍ୟାନର ଅର୍ଥ ଶୂନ୍ୟ, ଖାଲି। ଏମିତିରେ ଯେଉଁ ସବୁ ଚିନ୍ତନକୁ ସ୍ଥାନ ଦେବାର ଇଚ୍ଛା ହୁଏ, ସେଗୁଡ଼ିକୁ ସ୍ଥାନ ଦିଆଯାଏ। ବାକି

ଅଂଶ ନିଜଆଡୁ ଶୂନ୍ୟ, ଖାଲି ଅର୍ଥାତ୍ ସେଗୁଡ଼ିକର ସଂସ୍କାର ସ୍ପର୍ଶ କରିନାହିଁ । ସେଗୁଡ଼ିକର ଚିହ୍ନ ନାହିଁ । ସେଥିରେ କଣ ହୁଏ ? ମାନସିକ ଶକ୍ତିର କ୍ଷୟ ହୁଏ ନାହିଁ ।

ପରିଚ୍ଛିନ୍ନତାର ଚିନ୍ତାକୁ ଆଧ୍ୟାତ୍ମିକ ଦୃଷ୍ଟିରୁ ମୁଁ ଧ୍ୟାନ ଯୋଗ ରୂପେ ମାନି ନେଇଛି । ମୁଁ ଅଧଘଣ୍ଟା ସଫାଇ କାମ କରେ । ତାଦ୍ୱାରା ଯେଉଁ ଅନୁଭୂତି ହୋଇଛି ତାହା ପ୍ରାୟ ଧ୍ୟାନର ସହିତ ସମାନ ଅବସ୍ଥା । ଏପ୍ରକାରର ଧ୍ୟାନର ଅଭ୍ୟାସ ମଧ୍ୟ ମୋର ଅଛି ଏବଂ ତାହା ବରାବର ଚାଲୁଥାଏ । ରାତିରେ ବେଶୀ ଦିନରେ କମ୍ । ସଫାଇ କାର୍ଯ୍ୟରେ ଯେଉଁ ଅନୁଭୂତି ହୋଇଛି ତାକୁ ପ୍ରାୟ ସମାଧି ଅବସ୍ଥା ବୋଲି କୁହାଯାଇପାରେ । ଯଦିଓ ସଂପୂର୍ଣ୍ଣ ସମାଧି ନୁହେଁ ତଥାପି ତାର ପାଖାପାଖି । ଏଥିପାଇଁ ତାର ନାମ ଦେଇଛି ଧ୍ୟାନ । ବ୍ରହ୍ମ ବିଦ୍ୟା ମନ୍ଦିରର ଭଉଣୀମାନଙ୍କୁ ଯେଉଁ ପତ୍ର ଲେଖିଛି, ସେଥିରେ ଥରେ ଦୁଇଥର ଉଲ୍ଲେଖ କରିଛି ଯେ, ଯେତେବେଳେ ସଫାଇ ପବିତ୍ରତାରେ ପରିଣତ ହେବ, ତାହାକୁ କାମ ଭିତରେ ଯେପରି ଗଣନା କରା ନଯାଏ, ତାହା ହେଉଛି ଧ୍ୟାନ ଯୋଗ । ବାକି ସବୁ ଧ୍ୟାନ ମନକୁ ଆକର୍ଷଣ କରିବା ପାଇଁ କରାଯାଏ । ସେଥିପାଇଁ ମୁଁ କହେ ମନକୁ କାହିଁକି ଟାଣି ଆଣିବାକୁ ହେବ ? ଅସାବଧାନ ହୁଅନାହିଁ । ମନ ଯଦି ୟାଡ଼େ, ସିଆଡ଼େ ଗଲା, ତେବେ ତାକୁ ପଛରୁ ଅନୁସରଣ କର ଯେ ସେ କୁଆଡ଼େ କୁଆଡ଼େ ଯାଉଛି, ତାକୁ ସାକ୍ଷୀରୂପରେ ଦେଖିଯାଅ ।

ଚିନ୍ତନ ସମୟରେ ମୁଁ ସହଜ ସ୍ୱାଭାବିକତା ରକ୍ଷା କରିଥାଏ, ସେତେବେଳେ ମନ ବୋଲି କିଛି ରହେ ନାହିଁ, ମୁଁ ଏକମାତ୍ର ଥାଏ । ଯଦି ଏହାଠାରୁ ବି ଠିକ୍ ରୂପେ ପ୍ରକାଶ କରାଯାଏ ତେବେ 'ମୁଁ' କୁ ଛାଡ଼ିଦେଇ କେବଳମାତ୍ର 'ହୋଇଥାଏ' କୁ ରଖିବାକୁ ହେବ । ମୁଁ ଅର୍ଥାତ୍ ବିଶିଷ୍ଟ । ସେହି ବିଶିଷ୍ଟାବସ୍ଥା ସେତେବେଳେ ନରହି, 'ନାହିଁ'ଖୋଲା ଆକାଶର ସ୍ଥିତି ହେଇଯାଏ ।

ମୁକ୍ତ ମନକୁ ମୁଁ ଖୋଲା ଆକାଶ ସହିତ ଉପମା ଦେଇଥାଏ । ବାହାରୁ ବ୍ୟାପକ ଓ ଅନ୍ତର ମଧ୍ୟରେ ଶୂନ୍ୟ । ସେଥିରେ ଲିପ୍ତତାର ଲେଶ ମାତ୍ର ନାହିଁ । ବର୍ଷା ଆସେ, କିନ୍ତୁ ଆକାଶ ସେଥିରେ ଲିପ୍ତ ହୁଏ ନାହିଁ । ମେଘ ଆସେ ଆଉ ଯାଏ, ଧୂଳି ଆସେ ଆଉ ଯାଏ, ପବନ ଆସେ ପୁଣି ଯାଏ, ଆକାଶରେ ସମସ୍ତଙ୍କ ପାଇଁ ସୁବିଧା ରହିଛି । ଆକାଶରେ ପବନ ବହୁଥାଏ, ଧୂଳି ଉଡୁଥାଏ, ମେଘ ବର୍ଷୁଥାଏ, ଆକାଶ ତ ଆକାଶ ହୋଇ ରହିଥାଏ । ଆକାଶରେ ତାର ସ୍ପର୍ଶ ହିଁ ଲାଗେ ନାହିଁ । ସେମାନଙ୍କୁ ସୁବିଧା ଦେବା ହେଲା କାମ । ସେହିପରି ମନରେ ନାନା ଚିନ୍ତା ଆସିଥାଏ । ତଥାପି ମୋତେ ତାର ସ୍ପର୍ଶ ଅନୁଭବ ହୁଏ ନାହିଁ । ମନର ଏପରି ଅବସ୍ଥା ହେଉଛି ମୁକ୍ତ ମନର ଅବସ୍ଥା ।

ତେଣୁ ମୁଖ୍ୟତଃ, ଆମ ମନ ମୁକ୍ତ କି ନୁହେଁ ଏକଥା ଦେଖିବାକୁ ହେବ । ସାଂପ୍ରଦାୟିକ ବନ୍ଧ ହୋଇ ରହିଥାଏ । ଆଉ ଅସାଂପ୍ରଦାୟିକ ମନ ଘୁରି ବୁଲୁଥାଏ । ବନ୍ଧ ଆଉ ଚଞ୍ଚଳ ଏହି ଦୁଇଟି ଅବସ୍ଥାରୁ ମୁକ୍ତ ମନ ହେଉଛି ଭିନ୍ନ । ମୁକ୍ତ ମନକୁ ସ୍ୱୈର ମନ ବୋଲି ବୁଝିବାର ଭୁଲ କରିବା ଉଚିତ ନୁହେଁ । ମୁଁ ଯେତେବେଳେ ମୁକ୍ତ ମନ ସଂପର୍କରେ ଚିନ୍ତାକରେ, ସେତେବେଳେ ଗୋଟିଏ ଆଡୁ ପୁରୁଣାନୀତି-ବନ୍ଧନ ଏବଂ ଅନ୍ୟଆଡୁ ସ୍ୱୈର-ବର୍ତ୍ତନ, ଦୁଇଟି ବିଷୟରେ ଚିନ୍ତା କରେ । ଯେପରି ପୁରୁଣା ନୀତି-ନିୟମ ଦ୍ୱାରା ମନ ଆବଦ୍ଧ ହୋଇଯାଏ । ସେହିପରି ସ୍ୱୈର-ବର୍ତ୍ତନ ଦ୍ୱାରା

ମଧ ମନ ଆବଦ୍ଧ ହୋଇଯାଏ, ସ୍ୱୈର-ବର୍ତ୍ତନରେ ସ୍ୱତନ୍ତ୍ରତାର ଆଭାସ ରହିଛି, କିନ୍ତୁ ବାସ୍ତବରେ ତାହା ସ୍ୱତନ୍ତ୍ରତା ନୁହେଁ । ପ୍ରାୟ ଲୋକମାନେ କହନ୍ତି, ଆମେ ନିଜ ମନ ମୁତାବକ ଚଳୁଛୁ । ଏଥିରେ କି ପ୍ରକାର ସ୍ୱତନ୍ତ୍ରତା ରହିଲା ? ମନ ତ ଆମର ଚାକର, ଆମର ଦାସ । ତେଣୁ ମୁକ୍ତ-ମନ ଅର୍ଥାତ୍ ମନର ମୁକ୍ତି । ଏମିତିରେ ଯୁକ୍ତ-ମନ ଶବ୍ଦମାତ୍ର ଅଟେ । କାରଣ ସଂକଳ୍ପ, ବିକଳ୍ପ ଛାଡ଼ିବା ପରେ ମନ ବୋଲି କିଛି ରହେ ନାହିଁ ।

ଏହି ମୁକ୍ତ-ମନ ବା ମନର ମୁକ୍ତିପାଇଁ କ'ଣ କରିବାକୁ ହେବ ? ମଣିଷ ନିଜର ଅହଂ ଭୁଲିଯିବ ।

*** *** ***

ମୁଖ୍ୟ କଥା ହେଉଛି ଯେ, ଯଦି ମନଠାରୁ ଅଲଗା ରହିହେବ ତେବେ ଧ୍ୟାନ ଇତ୍ୟାଦି ଖେଳ ଚାଲିବ । ମନର ଭୂମିକାରେ ରହିବା ଉଚିତ ନୁହେଁ । ରାଗ ଦ୍ୱେଷ, ଯାହାକୁ ମରାଠୀରେ ଆବଡ଼ ଜାବଡ଼ କହନ୍ତି, ପକ୍ଷପାତ, କାହା ସହିତ ଅଧିକ ବନ୍ଧୁତା, ମୈତ୍ରୀ, କାହାସହିତ କମ୍ ବନ୍ଧୁତା, ଯେ ସବୁଗୁଡ଼ିକ ମନର ଅବସ୍ଥା । ମନଠାରୁ ଅଲଗା ରହିବା ସାଧନାର ଆରମ୍ଭ, ଶିଖର ନୁହେଁ । ଯାଠାରୁ ଆଗକୁ ମନର ଉପରକୁ ଯିବାକୁ ହେବ । ମନଠାରୁ ଅଲଗା ରହିବା ଗୋଟେ କଥା, ମନଠାରୁ ଉପରକୁ ଯିବା ଭିନ୍ନ କଥା । ମନର ଉପରକୁ ଉଠିବା, ତେବେଯାଇ ପ୍ରତ୍ୟେକ ବିଚାର ଶାନ୍ତ ବୁଦ୍ଧିରେ କରାଯାଇ ପାରିବ । ଯେପରି ସମର୍ଥ ରାମଦାସ କହିଛନ୍ତି - "ବୁଦ୍ଧି କରାଓ୍ୱୀ ସ୍ୱାଧୀନ, ମଗ ହେଁ ମଜୁର ଆହେ ମନ", ଅର୍ଥାତ୍ ବୁଦ୍ଧି ଆମର ସ୍ୱାଧୀନ ଅଟେ, ମନର ଉପରକୁ ଯାଇ ବୁଦ୍ଧି ଆମ ହାତକୁ ଆସିଗଲା ତ ମନ ବିଚରା ନିରୁପାୟ ହୋଇଯାଏ । କାମ କରିବାର ଶକ୍ତି ମନରେ ରହିଛି । ଆଉ ଏହା ହେଉଛି ମନର ଗୁଣ । ମାତ୍ର ଏହି ଗୁଣର ଲାଭ ଆମକୁ ମିଳେ ନାହିଁ । କାରଣ ଯେଉଁ କାମ ବୁଦ୍ଧିର ସେହି କାମ ଆମେ ମନ ଦ୍ୱାରା କରାଉଛୁ । ଅର୍ଥାତ୍ ମନ ସହିତ ଏକରୂପ ହେଉଛି । ପୁଣି ସେ (ମନ) କାମ ତ କିଛି କରେ ନାହିଁ, କିନ୍ତୁ ଯେତିକି କରେ, ତାଠାରୁ ଅଧିକ ବିଗାଡ଼ି ଦିଏ । ସେଥିପାଇଁ ପ୍ରଥମେ ମନଠାରୁ ଅଲଗା ହେବା ଦରକାର । ପୁଣି ମନର ଉପରକୁ ଯିବା ଦରକାର, ବୁଦ୍ଧିର ସ୍ତରରେ, ଏବଂ ମନର ଉପଯୋଗ । ମଜୁରିଆ ପରି କରିବାକୁ ହେବ । ଯେପରି ବର୍ତ୍ତମାନ ଏହି ବାଳିକାଟି ଏଠାରେ ପେନ୍‌ସିଲ୍‌ରେ ଲେଖୁଛି । ପେନ୍‌ସିଲ୍ ନିଜର ଇଚ୍ଛା ଅନୁସାରେ ଲେଖୁନାହିଁ । ସେ ବାଳିକାଟି ପେନ୍‌ସିଲ୍‌କୁ ଯେପରି ବୁଲାଉଛି ସେହିପରି ପେନ୍‌ସିଲ୍ ଘୁରୁଛି । ପେନ୍‌ସିଲ୍‌ର ଭୂମିକା ମନର ଭୂମିକା ଅଟେ - ଏବଂ ସେ ଆଜ୍ଞାକାରୀ ଅଟେ । ଏହାର ଉପର ଭୂମିକା ମଧ ଆସିବ । ସେତେବେଳେ ଯାଇ ମନ ସମାପ୍ତ ହେବ ଓ ତେବେଯାଇ ମନରୁ ମୁକ୍ତି ମିଳିବ । ଅର୍ଥାତ୍ ମନୋନାଶ ହେବ । ମନୋନାଶ ମୁକ୍ତିର ପର୍ଯ୍ୟାୟ ଅଟେ । ମନୋନାଶର ଗୋଟିଏ ଭୂମିକା ନିଶ୍ଚୟ ଅଛି, କିନ୍ତୁ ସେତେବେଳେ ପର୍ଯ୍ୟନ୍ତ ମନର ଉପଯୋଗ ଭୃତ୍ୟ ଭାବରେ କରିବାକୁ ହେବ । ଏହି ସାଧନା କରିବା ଦରକାର ।

ସାଧାରଣ ଭାବରେ କାର୍ଯ୍ୟ ହୋଇ ଯାଉଛି । ଯେଉଁଠି ମନର ଉପଯୋଗ ହୁଏ ନାହିଁ, ସେ କାମରେ ବି ମଣିଷମାନେ ମନ ନିବେଶ କରନ୍ତି । ଏହା ଆମର ଦୂଷିତ ବୁଦ୍ଧି । ଉଦାହରଣ

ସ୍ୱରୂପ -- ସତରଂଜ ଖେଳ । ଏହି ଖେଳ ମିଛ ଖେଳ । ହାତୀ, ରଜା, ଓଟ ସବୁ ମିଥ୍ୟା । ଜୟ-ପରାଜୟର ପ୍ରଶ୍ନ ନାହିଁ, ଯାହା ହେଲା ତାହା ଦୁଇ ତରଫରୁ ହେଲା । ଏହି ଖେଳରେ ମଧ୍ୟ ନିଜ ମନକୁ ଆଣିବାକୁ ହୁଏ । କେବେ କେବେ ଏହା ପଛରେ ପଇସା ମଧ୍ୟ ଖର୍ଚ୍ଚ କରିବାକୁ ପଡ଼ିଥାଏ । ପୁଣି ବଡ଼ ବଡ଼ ଦେଶମାନେ ଅନ୍ୟ ଦେଶମାନଙ୍କ ସହିତ ଏ ଖେଳ ଖେଳନ୍ତି । ସେଥିରେ ନିଜ ନିଜ ଦେଶର ଅହଂକାର ରହିଥାଏ । ଏହାର ତାତ୍ପର୍ଯ୍ୟ ହେଉଛି ଯେ, ସତରଂଜ ଖେଳ କେବଳ ଗୋଟିଏ ଘଟଣା, ସେଥିରେ ମନର କୌଣସି ସଂବନ୍ଧ ନଥିଲା, କିନ୍ତୁ ତା ଭିତରେ ମନକୁ ଟାଣି ଆଣିବାକୁ ହେଲା । ଏହା ଆମର ଦୁର୍ବୁଦ୍ଧି ଅଟେ । ଯେଉଁ କାମରେ ମନର କୌଣସି ସଂବନ୍ଧ ନାହିଁ, ସେ କାମରେ ମନ ପୁରାଇବା ଠିକ୍ ନୁହେଁ । ଏକଥା ଯଦି ଆମେ ସାଧି ପାରିବା ତେବେ ଧ୍ୟାନ ଗୋଟିଏ ଖେଳ ପରି ମନେ ହେବ ଆଉ ଏହା ପାଇଁ ପରିଶ୍ରମ କରିବାକୁ ପଡ଼ିବ ନାହିଁ ।

ଲୋକମାନେ ପଚାରନ୍ତି, ଆପଣ କିପରି ଧ୍ୟାନ ସାଧନା କରନ୍ତି ? ମୁଁ କହେ, ଏଥିପାଇଁ ସାଧି ପାରୁଛି ଯେ ମୁଁ ଅଳସୁଆ । ମନକୁ ଚାରିଆଡ଼କୁ ବୁଲିବାକୁ ପଠେଇଲେ କଷ୍ଟ ହୁଏ, ସେଥିପାଇଁ ମୋ ପରି ଅଳସୁଆ ପାଇଁ ସହଜରେ ଧ୍ୟାନ ସାଧିତ ହୋଇ ପାରୁଛି । ମନକୁ ଏକାଗ୍ର କରିବା ପାଇଁ କିଛି କରିବାକୁ ପଡ଼େ ନାହିଁ । ଯେ ପର୍ଯ୍ୟନ୍ତ ବାବା ଯେଉଁ ଆଳସ୍ୟ ରଖୁଛନ୍ତି, ତାର ମୂଲ୍ୟ ଲୋକମାନେ ବୁଝି ନପାରିବେ, ସେ ପର୍ଯ୍ୟନ୍ତ ଏହି ଭୂମିକା ଆସିବ ନାହିଁ ।

ଏହାର ତାତ୍ପର୍ଯ୍ୟ ହେଉଛି ଯେ, ଧ୍ୟାନ ଏତେ ମହତ୍ୱପୂର୍ଣ୍ଣ ନୁହେଁ, ମନଠାରୁ ଅଲଗା ହୋଇ ରହିବା ଯେତେ ମହତ୍ୱପୂର୍ଣ୍ଣ ।

## ଚ). ଅତିମାନସ

### (ଅ) ଶ୍ରୀ ଅରବିନ୍ଦଙ୍କର ଅତିମାନସ

ଶ୍ରୀ ଅରବିନ୍ଦ 'ଅତିମାନସ ଭୂମିକା' ର କିଛି ବିବରଣୀ ଦେଇଛନ୍ତି । ସେ ଏଥିପାଇଁ 'ସୁପ୍ରାମେଣ୍ଟାଲ' ଶବ୍ଦର ପ୍ରୟୋଗ କରିଛନ୍ତି । କୁହାଯାଏ ଯେ, "ମଣିଷ ଉପରକୁ ଉଠି ଉଠି ମନ ପର୍ଯ୍ୟନ୍ତ ଆସିଥାଏ । ପୁଣି ବୁଦ୍ଧି ପର୍ଯ୍ୟନ୍ତ ଯାଏ । ଏହିପରି ଉପରକୁ ଉଠି ଉଠି ସେ ପରମାତ୍ମାଙ୍କ ନିକଟରେ ପହଂଚେ ଏବଂ ସେହିଠାରୁ ମୁକ୍ତିର ଅନୁଭବ ହୋଇଥାଏ ।" ଏହାର ଅର୍ଥ ହେଉଛି ଯେ ସେହି ପ୍ରାଣୀର ଯେତେ ବିକାଶ ହେବାର ଥିଲା ତାହା ହୋଇଗଲା । ତେବେ ଯାଇ ମୁକ୍ତ ହେଲା ।

ମୁକ୍ତି ସଂପର୍କରେ ଏ ପର୍ଯ୍ୟନ୍ତ ଏହି କଳ୍ପନା ରହିଛି ଯେ, ନ ସ ପୁନରାବର୍ତ୍ତତେ ପୁଣି ଏଠାକୁ ଆସିବ ନାହିଁ । କିନ୍ତୁ ଶ୍ରୀ ଅରବିନ୍ଦ ଏହି କଳ୍ପନା କରିଛନ୍ତି କି, 'ମୁକ୍ତ ଜୀବ ସେଠାରୁ କେତେ ତଳକୁ ଖସିବ ? ତାପରେ ସେ କହିଛନ୍ତି, 'ମନ ଉପରର ଭୂମିକା ପର୍ଯ୍ୟନ୍ତ' । ଯେପରି କୃଷ୍ଣ ଗୋକୁଳରେ ଏକେବାରେ ନିମ୍ନ ସ୍ତରକୁ ଅର୍ଥାତ୍ ଶରୀର ଭୂମିକା ପର୍ଯ୍ୟନ୍ତ ଆସିଥିଲେ -- ସେଠାରେ ଜନ୍ମ ନେବାପରେ ସମସ୍ତଙ୍କ ସହିତ ଖେଳା ଖେଳି କରୁଥିଲେ; ଆମୋଦ ପ୍ରମୋଦ କରୁଥିଲେ, ହଣା ମରା କରୁଥିଲେ, ପୁଣି ନିଜ ଶରୀର ପର୍ଯ୍ୟନ୍ତ କାଟି ନେବାକୁ ପ୍ରସ୍ତୁତ ହୋଇଯାଇଥିଲେ -- ଏକେବାରେ ତଳକୁ ଖସି ଯାଇ ଏ ଯେଉଁ ଲୀଳା କରିବାକୁ ଆରମ୍ଭ କଲେ, ତାହା ଶ୍ରୀ ଅରବିନ୍ଦଙ୍କର

ପସନ୍ଦ ନ ଥିଲା । ସେ ଚାହୁଁଥିଲେ କି, 'ତଳକୁ ତ ଖସିଲେ, କିନ୍ତୁ ମନର ଉପର ଭୂମିକା ପର୍ଯ୍ୟନ୍ତ ଆସି ସେହିଠାରେ ଅଟକି ଗଲେ । ସେହିଠାରୁ ତାଙ୍କ ଦ୍ୱାରା ବିଶ୍ୱର ସେବା ହେଉ' ଇତ୍ୟାଦି । ଅର୍ଥାତ୍ ତାଙ୍କ ଅବତାରର ଯେଉଁ କଳ୍ପନା କରାଯାଇଛି, ସେଥିରେ ପ୍ରଥମେ ଉପରକୁ ଚଢ଼ିବାକୁ ହେବ । ଆରୋହଣ ପରେ ଅବତରଣ ଅର୍ଥାତ ଅମୁକ ଭୂମିକା ପର୍ଯ୍ୟନ୍ତ ଆସି ସେଠାରେ ଅଟକି ଯିବା ପୁଣି ତାପରେ ବିଶ୍ୱକୁ ମୁକ୍ତ କରିବାର କାର୍ଯ୍ୟ କରିବା, ସାରାଂଶ -- ମୁକ୍ତି ପର୍ଯ୍ୟନ୍ତ ପହଂଚିବା ପରେ ତଳକୁ ଓହ୍ଲାଇବା ଏବଂ ସେହିଠାରୁ ବିଶ୍ୱର ଉଦ୍ଧାର କରିବା -- ଏହି ପ୍ରକାର ଭାବରେ ସେ ଆରୋହଣ-ଅବତରଣର କଳ୍ପନା କରିଛନ୍ତି ।

କିନ୍ତୁ ମୋର କଳ୍ପନା ଏପରି ନୁହେଁ । ମନକୁ ଅତିକ୍ରମ କରି ବୁଦ୍ଧି ପର୍ଯ୍ୟନ୍ତ ଯାଇ, ତାର ଶେଷ ପର୍ଯ୍ୟନ୍ତ ପହଂଚି ପୁଣି ମୁକ୍ତିର ଅନୁଭବ କରି ତଳକୁ ଓହ୍ଲାଇବା -- ଏ ପ୍ରକାର କଷ୍ଟ ଉଠାଇବାକୁ ମୁଁ ଚାହେଁ ନାହିଁ । କାରଣ ମୁକ୍ତିର ଅନୁଭବ ହେବା ପରେ ବ୍ୟକ୍ତିର ତଳକୁ ଓହ୍ଲାଇବାର କୌଣସି କାରଣ ଆଉ ରହିବ ନାହିଁ । ଏହାପରେ ବିଶ୍ୱକୁ ଉଦ୍ଧାର କରିବା ପାଇଁ ତଳକୁ ଖସିବା, ଏହାର ମଧ୍ୟ କୌଣସି ଆବଶ୍ୟକତା ନାହିଁ । ଈଶ୍ୱରଙ୍କ ସହିତ ସେ ବିଲୀନ ହୋଇଯିବା ପରେ ଯଦି ଈଶ୍ୱରଙ୍କର ଇଚ୍ଛା ହେବ ତ ତାର ଅଂଶ ତଳକୁ ଆସିବ, ସେହି ବ୍ୟକ୍ତିର ଆସିବା ଆବଶ୍ୟକ ନାହିଁ । ଈଶ୍ୱରଙ୍କ ଆଜ୍ଞାରେ କେହି ବି ଆସି ପାରିବ, ଏହା ଭିନ୍ନ କଥା । ସମସ୍ତେ ତାଙ୍କର ଆଜ୍ଞାର ଅଧୀନ ଅଟନ୍ତି । ଯାହାହେଉ, ଏସବୁ ଯାହା ହେଉଛି, ମୁଁ ଏହା ଚାହୁଁଛି ଯେ, ଅତିମାନସ - ଭୂମିକା ଦୁନିଆର ଭଲ ପାଇଁ ଯେତେ ଶୀଘ୍ର ସଂଭବ ବ୍ୟାପକ ହେଉ, କିନ୍ତୁ ଏହାର କାର୍ଯ୍ୟକ୍ରମ ଧିରେ ଧିରେ ହେଲା ପରି ଦେଖାଯାଉଛି, ଆଉ ଏହା ପୁଣି ବ୍ୟକ୍ତିଗତ ସ୍ତରରେ । ତେଣୁ ମୁଖ୍ୟ ବିଚାର ହେଉଛି ଯେ, ସାମାଜିକ ଦୃଷ୍ଟିରୁ ଏ ସବୁର ବିଚାର କରିଯିବା ଦରକାର ।

କୁହାଯାଏ, "ପ୍ରଥମରୁ ଏହା ବୁଝିବା ଦରକାର ଯେ 'ମୁଁ' ନାମକ କୌଣସି ବିଶିଷ୍ଟ ତତ୍ତ୍ୱ ଅଛି । ଏହି 'ମୁଁ' ଦେହ ସହିତ ବାନ୍ଧି ହୋଇ ଅଛି । ଆଉ, ସାଧନା ଦ୍ୱାରା ମୋତେ ଏଥିରୁ ମୁକ୍ତ ହେବାକୁ ହେବ" ଇତ୍ୟାଦି । କିନ୍ତୁ ଏସବୁ କଥା 'ମୁଁ' ରୂପକ ଖୁଣ୍ଟକୁ ହଲେଇ ହଲେଇ ମଜବୁତ୍ କରାଯାଉଛି । ଅହଂକାରକୁ ଦୃଢ଼ କରିଦେବା ହେଉଛି ଏହାର ଅର୍ଥ ।

ଆମେ 'ମହାରାଷ୍ଟ୍ରୀୟ' ଅଟୁ, ଏ ଉପାଧି ଗଲା, ଆମେ 'ଭାରତୀୟ' ଏ ଉପାଧି ଆସିଲା । ପୁଣି 'ଭାରତୀୟ' ଉପାଧି ଗଲା, ଆମେ 'ମଣିଷ' ଏ ଉପାଧି ଆସିଲା । କିନ୍ତୁ ଏହାଠାରୁ ବି ଉନ୍ନତ ହେବା ପାଇଁ ଆମେ ପ୍ରସ୍ତୁତ ଅଟୁ କି ? 'ଆମେ ଓ ଗଧ ଏକ', ଏକଥା ମାନିବାକୁ କ'ଣ ଆମେ ପ୍ରସ୍ତୁତ ? କଥା ହେଉଛି କି ଆମେ ସବୁ ବିଶ୍ୱର ମଣିଷ ଏକ, ଅର୍ଥାତ୍ ବ୍ୟାପକ ଅର୍ଥରେ ମାନବ ଅଟୁ । କିନ୍ତୁ ବ୍ୟାପକ ମାନବ ହେବା ପରେ ମଧ୍ୟ ସେଥିରେ ଗଧ ଆସିବ ନାହିଁ । ଏହି ଗଧ ସହିତ ରହିବା ପାଇଁ ପ୍ରସ୍ତୁତ ଯଦି ହୋଇ ପାରିବେ, ତାହାହେଲେ ଆପଣଙ୍କର ସେତିକି ଅଧିକ ବିକାଶ ହେଲା ବୋଲି ମାନିବାକୁ ହେବ । ଏହାଠାରୁ ବି ଆଗକୁ ଯାଇ ଆପଣ 'ଅଚେତନ' କହୁଛନ୍ତି, ସେଠାରେ ମଧ୍ୟ ନିଜ ରୂପ ଦେଖିବାକୁ ହେବ ।

ମୋର କହିବା କଥା ଯେ, ମୁକ୍ତିର ଏପ୍ରକାର କଳ୍ପନାରେ ମୁକ୍ତ ହେବାପରେ ବ୍ୟକ୍ତି ତଳକୁ ଓହ୍ଲାଇବ । ବ୍ୟକ୍ତି ତ ତିଷ୍ଠି ରହିଲା । ମୁଁ ଅମୁକ ଲୋକ, ବିନୋବା ମୁକ୍ତ ହେଲେ ଅର୍ଥାତ୍ ମୋ ମନରେ ବିନୋବା ଅବଶିଷ୍ଟ ରହିଲେ ଆଉ ସେହି ତଳକୁ ଓହ୍ଲାଇଲେ । ଶେଷକୁ ଏଠୁ ସେ ପର୍ଯ୍ୟନ୍ତ 'ଅହମ୍' କୁ ବଜାୟ ରଖିବାର ଏ ଉଠା-ପଡ଼ା କାହିଁକି ? ପ୍ରକୃତ ପକ୍ଷେ "ମୁଁ ଅବଶିଷ୍ଟ ରହିନାହିଁ", ଏପରି କହିବାର ଭୂମିକା ହେବା ଦରକାର । 'ମୁକ୍ତ'ର ଅବତରଣ ଠିକ୍ ଏହିପରି, ଯେପରି ଆଜିକାଲିର ବିମାନ ଦ୍ୱାରା ଚନ୍ଦ୍ର, ମଂଗଳ ଆଦି ଗ୍ରହ ପର୍ଯ୍ୟନ୍ତ ଉପରକୁ ଯିବା ଏବଂ ତଳକୁ ଖସିବାର ପ୍ରୟୋଗ । ଏପରି ସ୍ଥିତିରେ ମୁଁ ମାନୁଛି ଯେ ଶ୍ରୀ ଅରବିନ୍ଦଙ୍କର ମୁକ୍ତିର ଏହି କଳ୍ପନାର ତାତ୍ପର୍ଯ୍ୟ ହେଉଛି ଯେ ବ୍ୟକ୍ତିଗତ ମୁକ୍ତିରେ ମଣିଷର ବିକାଶ ସଂପୂର୍ଣ୍ଣ ହେବ ନାହିଁ । ତଥାପି ଏହି 'ଅତିମାନସ' ଶବ୍ଦ କିଛି ଅସୁବିଧା ସୃଷ୍ଟି କରୁଛି । ସେଥିପାଇଁ ମୁଁ ନିଜର ସରଳ ଶବ୍ଦ ପ୍ରୟୋଗ କରୁଛି ଯେ 'ମନଠାରୁ ଉପରକୁ ଉଠି' ବିଜ୍ଞାନର ଭୂମିକାକୁ ଯିବା ଦରକାର । ମୋ ପାଇଁ ବର୍ତ୍ତମାନ ଅବସ୍ଥାରେ ଏତିକି ଯଥେଷ୍ଟ ।

(ଆ) ବିଜ୍ଞାନ ଯୁଗର ମହିମା

ମନଠାରୁ ଉପରକୁ ଉଠିବା ସଂପର୍କରେ ମୁଁ ବରାବର କହି ଆସୁଛି ଏବଂ ଏହି କଥା ଉପରେ ଜୋର ଦେଉଛି ଯେ ଆମକୁ ସୁପ୍ରାମେଣ୍ଟାଲ-ଅତିମାନସର ଭୂମିକାକୁ ଯିବା ଦରକାର । ମନର ଉପରକୁ ଉଠିବା ଆଜିର ଯୁଗରେ ବ୍ୟାବହାରିକ ଅଟେ, ବେଦାନ୍ତ ନୁହେଁ । ପରଲୌକିକ କଲ୍ୟାଣ ନୁହେଁ, ଇହଲୋକର କଲ୍ୟାଣ କଥା । ଆଜି ସଂହାର କରିବା ଲୋକ କ'ଣ କରୁଛନ୍ତି ? ହିରୋସୀମାରେ ବୋମା ପକାଗଲା ତ ସାରା ସହର ଶେଷ ହୋଇଗଲା । ପିଲା ଛୁଆ, ବୁଢ଼ା, ସ୍ତ୍ରୀ, ପୁରୁଷ, ଗଛପତ୍ର ପଶୁପକ୍ଷୀ କିଛି ବଂଚିଲା ନାହିଁ, ବୋମା ସାମୂହିକ ସଂହାର କରିଥାଏ । ସେଥିପାଇଁ ତାର ପ୍ରତିକାର ପାଇଁ ସାମୂହିକ ଉତ୍ପାଦନ, ସାମୂହିକ ପ୍ରେମ, ସାମୂହିକ ସହଯୋଗ, ପୁଣି ସାମୂହିକ ଜୀବନର କଳା ଶିଖିବାକୁ ହେବ । ସମୂହ ଭିତରେ ବ୍ୟକ୍ତିର ମନ ଯେପରି ବୁଡ଼ି ଯିବ, ଏପରି ଅହିଂସାର ସାମୂହିକ ଶକ୍ତି ନିର୍ମାଣ କରିବାକୁ ହେବ ।

ମନକୁ ବଶ କରିବା, ଏପ୍ରକାର କର୍ମ ଅନେକଙ୍କୁ ଜଣା । ମନଠାରୁ ଅଲଗା ରହିବା, ଏହା ଏକ ଭିନ୍ନ କ୍ରିୟା । ଏହାଦ୍ୱାରା ବହୁତ ବାଟ ଖୋଲିଯାଏ ଆଉ ମଣିଷ ପରମେଶ୍ୱର ପର୍ଯ୍ୟନ୍ତ ପହଂଚିପାରେ । ଗୋଟିଏ ପ୍ରକାରର ମୁକ୍ତି ତାକୁ ମିଳିଥାଏ । ତାର ଦୋଷ ବଜାୟ ରହେ, ଏଥିପାଇଁ ପୁଣି ତାକୁ ମୁକ୍ତିର ନାମ ଦିଆଯାଇ ନପାରେ । କିନ୍ତୁ କେବେ କେବେ ଈଶ୍ୱରଙ୍କ ପ୍ରେରଣା ହେଲେ, କିମ୍ବା ନିଜର ସାକଳ୍ପ ଅତ୍ୟନ୍ତ ବଳବାନ୍ ହୋଇଥିଲେ, ପରମେଶ୍ୱର ପ୍ରାପ୍ତି ପରେ ମଧ କିଛି କାମ କରିବାର ପ୍ରେରଣା ତା'ର ହୋଇଥାଏ । ସେତେବେଳେ ସେ ଈଶ୍ୱରଙ୍କ ଅବତାର ଭାବରେ କାମ କରିଥାଏ । ସେତେବେଳେ ତାର ନିଜର ମନ କାମ କରେ ନାହିଁ, ବିଶ୍ୱ ମନ କାମ କରେ, ଏହାକୁ 'ଅତିମାନସ' କହନ୍ତି । ମଣିଷ ପୂର୍ଣ୍ଣ ହୋଇ ମୁକ୍ତି ପାଖରେ ପହଂଚି ଯାଏ । ଏକଥା ବୁଝି ହେଉଛି, କିନ୍ତୁ ତାର ପୂର୍ଣ୍ଣ ହେବାର ବିଚାରରୁ ଅନ୍ୟାୟର ଲୋପ କିପରି ହେବ, ଏହା ବୁଝି ହେଉ ନାହିଁ । ଈଶ୍ୱରଙ୍କ ସ୍ପର୍ଶ ବୁଝି ହେଉଛି । କିନ୍ତୁ ଏହାପରେ କିପରି କାମ ହେବ, ଏହା ବୁଝି ହେଉନାହିଁ । କିନ୍ତୁ

ଏ କାମ କର୍ମର ପର୍ଯ୍ୟାୟରେ ଆସୁନାହିଁ । ଶଂକରାଚାର୍ଯ୍ୟ ଏହାକୁ ସନ୍ୟାସ ପର୍ଯ୍ୟାୟରେ ରଖିଛନ୍ତି । ତୀବ୍ର ଇଚ୍ଛାରୁ ମଣିଷ ଈଶ୍ୱରଙ୍କ ସଂକେତ ଦ୍ୱାରା ପ୍ରେରିତ ହୋଇ କାର୍ଯ୍ୟ କରିପାରେ । ଏହାକୁ ଅତିମାନସ କୁହାଯାଏ । କିନ୍ତୁ ବର୍ତ୍ତମାନ ଯୁଗରେ ଏତିକି ଜରୁରୀ ଯେ ଆମେ ମନଠାରୁ ଅଲଗା ରହି କାମ କରିବା । ଫଳରେ ଆମର ଚିନ୍ତନ ବ୍ୟାପକ ହେବ ଏବଂ ଏଥିପାଇଁ ନିର୍ଣ୍ଣୟ ନେବାକୁ ଆମର ବଳ ବଢ଼ିବ, ଯାହା ଆଜିର ଯୁଗ ପାଇଁ ଖୁବ୍ ଜରୁରୀ ।

ଭଲ-ମନ୍ଦ ପରୀକ୍ଷା କରିବାର ଶକ୍ତି ବୁଦ୍ଧିର ଅଛି । ବୁଦ୍ଧି ବ୍ୟକ୍ତିଗତ ଅଟେ, ତାଠାରୁ ଅଧିକ ସମାଜର ହୋଇଥାଏ । ବ୍ୟକ୍ତିଗତ ଭାବରେ ବୁଦ୍ଧିର ବିକାଶ ହୋଇପାରେ । ଏହା ଭିନ୍ନ କଥା, କିନ୍ତୁ ମଣିଷମାନଙ୍କ ଭିତରେ ସାମୂହିକ ଭାବରେ ଯେଉଁ ବୁଦ୍ଧି ରହିଛି, ତାହା ତାର ନିଜର ନୁହେଁ, ତାହା ହେଉଛି ସାରା ସମାଜର । ଯେପରି ସମାଜ ମାଂସାହାର ପରିତ୍ୟାଗ କଲା -- ସେହି ସମାଜର ଜଣେ ମନୁଷ୍ୟର ବୁଦ୍ଧିରେ ମାଂସ ବାବଦରେ ବିତୃଷ୍ଣା ଆସିଲା, ଯାହା ଦ୍ୱାରା ତା ମନରେ ଆସିଲା କି ମାଂସ ଖାଇବା ଖରାପ କଥା ।

ମନୁଷ୍ୟର ଗୋଟିଏ ମାନସ ଅଛି । ଅନ୍ୟଟି ମନ । ମନ ଭିନ୍ନ ଭିନ୍ନ ହେଲେ ମଧ୍ୟ ମାନସ ସମାନ ହୋଇ ରହିଥାଏ । ମନ ଓ ମାନସ ଦୁଇଟି ମଧ୍ୟରେ ଭିନ୍ନତା ରହିଛି । ଦୁଇଜଣ ମଣିଷଙ୍କ ମନ ଭିନ୍ନ ଭିନ୍ନ ହୋଇପାରେ । କିନ୍ତୁ ଆଜି ଆମେ ଏପରି ପରିସ୍ଥିତି ଦେଇ ଗତି କରୁଛୁ ଯେ ଦୁଇଜଣଙ୍କ ମାନସ ପ୍ରାୟ ସମାନ ହୋଇଯାଇଛି । ମନ ଯେତେବେଳେ ତଫାତ୍ ହୋଇଯାଏ ସେତେବେଳେ ମଣିଷ ସେହି ଅନୁସାରେ କୁହେ । ସେହି ଅନୁସାରେ ବ୍ୟକ୍ତି ପ୍ରୟୋଗ କରେ । ପୁଣି ସେ ଯେଉଁ କାମ କରିଥାଏ ତାହା କେବଳ ଇନ୍ଦ୍ରିୟ ଦ୍ୱାରା ନୁହେଁ, ଉପକରଣ ଦ୍ୱାରା ମଧ୍ୟ କରିଥାଏ । ଇନ୍ଦ୍ରିୟଗୁଡ଼ିକ କାରଣ ଅଟନ୍ତି, ସେମାନଙ୍କ ଦ୍ୱାରା କୃତି ହୁଏ । ହତିଆର ଉପକରଣ ଅଟେ, ତାହା ଦ୍ୱାରା ମଧ୍ୟ କୃତି ହୁଏ । ପୂର୍ବ କାଳରେ ଲୋକମାନେ ଇନ୍ଦ୍ରିୟ ପ୍ରଧାନ ଥିଲେ, ଉପକରଣ ପ୍ରଧାନ ନଥିଲେ । ସେଥିପାଇଁ ଆଧାତ୍ମିକ ପୁରୁଷମାନେ ଏତିକି କହୁଥିଲେ ଯେ ଇନ୍ଦ୍ରିୟ ବିଗ୍ରହ କର । ଇନ୍ଦ୍ରିୟମାନଙ୍କ ଉପରେ ଅଂକୁଶ ରଖ । ସେ ସମୟରେ ଉପକରଣ ଉପରେ ଅଂକୁଶ ରଖିବା ଏତେ ପ୍ରୟୋଜନ ନଥିଲା । କିନ୍ତୁ ଆଜିର ଏ ଅଭିନବ-ବିଜ୍ଞାନ ଯୁଗରେ ଆମେ ଉପକରଣ ପ୍ରଧାନ ହୋଇଯାଇଛୁ । ସେଗୁଡ଼ିକ ଅତ୍ୟନ୍ତ ତେଜସ୍ୱୀ ଅଟେ । ସେଥିପାଇଁ ମନ ଭିତରେ ଟିକିଏ ବି ଝଗଡ଼ା ଯଦି ହେଲା ତେବେ ତାହା କେବଳ ବାଣୀରେ ପ୍ରକଟ ହୁଏ ନାହିଁ । ପରନ୍ତୁ ଉପକରଣ ଦ୍ୱାରା ମଧ୍ୟ ପ୍ରକଟିତ ହୁଏ । ଆଉ ଉପକରଣ ଖୁବ୍ ଭୟାନକ ହୋଇଥିବାରୁ ତାର ମାନସିକ ପରିଣାମ ଖୁବ୍ ଭୟଙ୍କର ହୋଇଥାଏ । ସେଥିପାଇଁ ଆଜି ମନୁଷ୍ୟ ଉପରେ ଏ ଦାୟିତ୍ୱ ଆସି ପହଂଚିଛି ଯେ ସେମାନେ ମନ ଭିତରେ ଝଗଡ଼ା ନ କରନ୍ତୁ । ଆଜିର ପରିସ୍ଥିତିରେ ଆମକୁ ହୁଏତ ବିଜ୍ଞାନ ଉପରେ ଅଂକୁଶ ରଖିବାକୁ ହେବ, ନ ହେଲେ ମନ ଉପରେ ଅଂକୁଶ ରଖିବାକୁ ହେବ । ଆମେ ବିଜ୍ଞାନର ପରିସ୍ଥିତି ଉପରେ ଅଂକୁଶ ରଖି ପାରିବା ନାହିଁ । ତାହା ଗୋଟିଏ ପ୍ରକାର ଜ୍ଞାନ । ପୁଣି ଜ୍ଞାନ ଏଡ଼େଇ ଯିବା ପରି ବସ୍ତୁ ନହେଁ । ଅନ୍ୟ ଦିଗରେ ମନ ନିରଙ୍କୁଶ ହୋଇ ଗଲେ ଦୁନିଆ ଧ୍ୱଂସ ହୋଇଯିବ । ସେଥିପାଇଁ ଆମକୁ ମନ ଉପରେ ଅଂକୁଶ ରଖିବାକୁ ହେବ ।

ମାନବ ପ୍ରାଣୀପ୍ରଧାନ ନୁହେଁ, ମନପ୍ରଧାନ ଅଟେ । ଛୋଟ ଛୋଟ ଜନ୍ତୁ ନାନା ପ୍ରକାର କ୍ରିୟା କରନ୍ତି । ସେମାନଙ୍କର ସୂକ୍ଷ୍ମ ମନ ନ ଥାଏ, ଏକଥା ନୁହେଁ । କିନ୍ତୁ ସେମାନଙ୍କର ମୁଖ୍ୟ ବସ୍ତୁ ପ୍ରାଣ ଅଟେ । ମନୁଷ୍ୟମାନଙ୍କ ମଧ୍ୟରେ ମୁଖ୍ୟ ବସ୍ତୁ ମନ । ଭାବନା, ବାସନା, କାମନା, ପ୍ରେରଣା ଆଶା, ନିରାଶା ଆଦି ମାନସିକ ବୃତ୍ତି ଗୁଡ଼ିକ ମନୁଷ୍ୟ ମଧ୍ୟରେ କାମ କରେ । ଭୟ, ନିର୍ଭୟ, ମାନ, ଅଭିମାନ, ଆସକ୍ତି-ଅନାସକ୍ତି-ପ୍ରେମ-ଦ୍ୱେଷ ଏ ସବୁଥିରେ ମଣିଷର ମନୋବୃତ୍ତିର ଖେଳ ଚାଲିଥାଏ । ଏପରି ସମୟରେ ବିଜ୍ଞାନ ମଣିଷକୁ କହୁଛି ଯେ ଏବେ ଆଉ ତୁମର ମନୋଭୂମିକା ଚାଲିବ ନାହିଁ । ଯାହାକୁ ମାନସ ଶାସ୍ତ୍ର କୁହାଯାଏ ତାହା ବର୍ତ୍ତମାନ ସଂପୂର୍ଣ୍ଣ ଅକାମୀ ହୋଇଯାଇଛି ।

ଯେଉଁ ଅଣୁରେ ଏହି ସୃଷ୍ଟି ତିଆରି ହୋଇଛି, ତାର ସମସ୍ତ ଶକ୍ତି ମନୁଷ୍ୟ ହାତକୁ ଆସି ଯାଇଛି, ଅଣୁ ସହିତ ଅଣୁକୁ ଯୋଡ଼ିଲେ ସୃଷ୍ଟିର ଉଦ୍ଭବ ହୁଏ ଆଉ ଅଣୁ ଗୁଡ଼ିକ ଅଲଗା ଅଲଗା ହୋଇଗଲେ ସୃଷ୍ଟିର ନାଶ ହୁଏ । ଏହିପରି ସୃଷ୍ଟି ଉଦ୍ଭବକାରୀ ଓ ସୃଷ୍ଟି ସଂହାରକ ଅଣୁ-ଶକ୍ତି ମନୁଷ୍ୟ ହାତକୁ ଆସି ଯାଇଛି । ଆକାଶରେ ଉପଗ୍ରହ ଘୁରି ବୁଲୁଛି । ଏଥିପାଇଁ ଅନ୍ତରାଷ୍ଟ୍ରୀୟ ଚିନ୍ତନ ଦ୍ୱାରା କାମ ଚାଲିବ ନାହିଁ । ବର୍ତ୍ତମାନ ଅନ୍ତର୍ଗୋଲକୀୟ ଚିନ୍ତନର ଆବଶ୍ୟକତା ପଡ଼ିବ ଏବଂ ଅନେକ ଜଗତ ସହିତ ସଂବନ୍ଧ ରଖିବାକୁ ହେବ । ଯଦି ମଣିଷ ମାନସିକ ଭୂମିକାରେ ରହି ଏସବୁ କରିବ ତ କିପରି କାମ ଚଳିବ ? ଆଜି ମଣିଷ ଭଗବାନଙ୍କ ସହିତ ସମାନ ଅବସ୍ଥାକୁ ଆସିଯାଇଛି । ସୃଷ୍ଟିର ଉତ୍ପତ୍ତି ଓ ଲୟ କିଏ କରି ପାରନ୍ତି ? ଈଶ୍ୱର ! କିନ୍ତୁ ଆଜି ସେ କାର୍ଯ୍ୟ ମନୁଷ୍ୟ ମଧ କରି ପାରୁଛି । ବର୍ତ୍ତମାନ ଯଦି ତା ଭିତରେ ତାର ନିଜ ମନ ରହିବ, ତେବେ ଖୁବ୍ ବଡ଼ କ୍ଷତି ହେବ ।

ମନର ଉପର ଭୂମିକା ବିଜ୍ଞାନ ଅଟେ । ଆଜିର ବିଜ୍ଞାନ ମଣିଷକୁ ସେହି ଭୂମିକା ପର୍ଯ୍ୟନ୍ତ ଉଠିବାକୁ ବାଧ କରୁଛି । ପୂର୍ବ କାଳରେ ମଧ ଉପନିଷଦରେ କୁହାଯାଇଛି — ପ୍ରାଣୋ୍‌ବ୍ରହ୍ମେତି, ମନୋ ବ୍ରହ୍ମେତି, ବିଜ୍ଞାନଂ ବ୍ରହ୍ମେତି । ପ୍ରାଣର ଭୂମିକା ପ୍ରାଣୀମାନଙ୍କ ପାଇଁ, ମନର ଭୂମିକା ମାନବମାନଙ୍କ ପାଇଁ ଆଉ ବିଜ୍ଞାନର ଭୂମିକା ଋଷିମାନଙ୍କ ପାଇଁ । ତେଣୁ ଆଜିର ଏ ମାନବ ସମସ୍ୟା ନିଜର ମାନସ ଶାସ୍ତ୍ରରେ ଅଳ୍ପ କିଛି ବଦଳାଇବା କାମ ନୁହେଁ, ବରଂ ପୁରୁଣା ମାନସ ଶାସ୍ତ୍ର କୁ ହିଁ ଶେଷ କରିବାକୁ ହେବ । ଅତଏବ ମାନସ ଶାସ୍ତ୍ର ପଢ଼ିବା ଅନାବଶ୍ୟକ ଅଟେ । ବର୍ତ୍ତମାନ ଅତିମାନସ ଶାସ୍ତ୍ର ପଢ଼ିବାକୁ ହେବ । ଆଜି ଆମେ ସବୁ ଜୀବ ଅଟୁ । ଏହି ଜୀବର ଭୂମିକା ବର୍ତ୍ତମାନ ଚଳିବ ନାହିଁ । ଶିବଙ୍କ ଭୂମିକାରେ ଯାଇ ପହଂଚିବାକୁ ହେବ । ଏ ହେଉଛି ବିଜ୍ଞାନ ଯୁଗର ମହିମା ।

ଏହି ବିଜ୍ଞାନ ଯୁଗରେ, ତତ୍ତ୍ୱ ଜ୍ଞାନ ଓ ଧର୍ମର କ୍ଷେତ୍ରରେ ପୁରୁଣା ପଦ୍ଧତିର ଧାର୍ମିକ କଳ୍ପନା ସମୂହ ଆଉ ରହିବ ନାହିଁ । କାରଣ ସେଗୁଡ଼ିକ ମାନସିକ ଭୂମିକା ଉପରେ କରାଯାଇଥିବା କଳ୍ପନା ସମୂହ । ପୁରୁଣା ଯୁଗର ସେହିସବୁ ଧର୍ମ ନିଜ ମଥାରେ ଧାରଣ କରି ଚାହିଲେ, ଏହି ବିଜ୍ଞାନ ଯୁଗରେ ଆମେ ତିଷ୍ଠିପାରିବା ନାହିଁ । ବର୍ତ୍ତମାନ ଆମର ମନକୁ ବଦଳାଇବାକୁ ହେବ । ଆଜି ବିଜ୍ଞାନ ମଣିଷ ଉପରେ ଅତିମାନସ -ଭୂମିକା ଲଦି ଦେଉଛି । ଶ୍ରୀ ଅରବିନ୍ଦ କହିଛନ୍ତି ଅତିମାନବର ଉଦୟ ହୋଇଛି । ବର୍ତ୍ତମାନ ସେହି ଶକ୍ତିରେ କାର୍ଯ୍ୟ ହେବ ।

ବିଜ୍ଞାନର ଅସୀମ ବିକାଶ ହୋଇଛି । ଏଥିପାଇଁ ଆଜିର ପରିସ୍ଥିତିରେ ସାରା ପ୍ରଶ୍ନ ଜାଗତିକ ସ୍ତରରୁ ଚିନ୍ତା କରିବାକୁ ପଡୁଛି । ବର୍ତ୍ତମାନ କେବଳ ମନର ଶକ୍ତି ବଢ଼ାଇଲେ କାମ ହେବ ନାହିଁ । ବର୍ତ୍ତମାନ ମନଠାରୁ ଉପରକୁ ଉଠିବାକୁ ପଡ଼ିବ । ମନକୁ କୌଣସି ଖୁଣ୍ଟିରେ ଟାଙ୍ଗିଦେବାକୁ ହେବ । ଏଭଳି ପ୍ରକ୍ରିୟାକୁ ବେଦାନ୍ତି ଲୋକମାନେ ମନୋନାଶ କହନ୍ତି । ମନ ଧ୍ୱଂସ ହୋଇଗଲେ କିଛି କ୍ଷତି ନାହିଁ, ତା ପାଇଁ ଚିନ୍ତା କରିବା ଆବଶ୍ୟକ ନାହିଁ । ବୁଦ୍ଧି ଅଛି । ବୁଦ୍ଧି ରାଗଦ୍ୱେଷର ଉପରକୁ ଯାଇ ବିଶ୍ୱ ସମସ୍ୟା ସମାଧାନ କରିବ । ରାଗଦ୍ୱେଷ ସମାପ୍ତ ହୋଇଯିବାକୁ ମନୋନାଶ କହନ୍ତି । ଏହା ଉନ୍ନୟନ ଅଟେ । ସମାଜବାଦ, ସାମ୍ୟବାଦ ଇତ୍ୟାଦି ଶାସ୍ତ୍ର ସମାଜର ସମସ୍ୟାକୁ ସମାଧାନ କରି ପାରିବେ ନାହିଁ, ସେମାନଙ୍କ ପାଇଁ ବୁଦ୍ଧିଯୋଗ ଆବଶ୍ୟକ । ଜୀବର ଭୂମିକା ବର୍ତ୍ତମାନ ଜରୁରୀ ନୁହେଁ । ଶିବଙ୍କ ଭୂମିକା ଆବଶ୍ୟକ । ଏହା ହେଉଛି ବିଜ୍ଞାନ ଯୁଗର ମହିମା ।

ବିଜ୍ଞାନ ଯେତେଯେତେ ବଢୁଥିବ, ସେତିକି ପରିମାଣରେ ମନର ମହତ୍ତ୍ୱ କମିଯାଉଥିବ । ବିଜ୍ଞାନ ଆଗରେ ମନ ତିଷ୍ଠି ପାରିବ ନାହିଁ । ମନରେ ବିକାର ରହିଛି, ଅନେକପ୍ରକାର ସଂକଳ୍ପ - ବିକଳ୍ପ ମଧ୍ୟ ରହିଛି । ରାଗଦ୍ୱେଷ ରହିଛି । ଏସବୁ କାରଣରୁ ମନରେ ଦାଗ ପଡ଼ିଯାଉଛି । ମନ ଭାଙ୍ଗି ଚୂର୍‌ମାର୍ ହୋଇଯାଉଛି । ଭାଗ ଭାଗ ହୋଇ ଯାଉଛି । ମନ ଏକାଠି ହୋଇ ପାରୁନାହିଁ । ବିଜ୍ଞାନ ଏକୀକରଣର ଆବଶ୍ୟକତା ରହିଛି । ଆଜି ଯଦି ଆମେ ମାନସିକ କ୍ଷୋଭକୁ ଟିକିଏ ବି ସୁଯୋଗ ଦେବା ତ ବିଜ୍ଞାନର ଲାଭ କଦାପି ଉଠାଇ ପାରିବା ନାହିଁ । ଅପର ପକ୍ଷରେ ବିଜ୍ଞାନଦ୍ୱାରା ହେବାକୁ ଥିବା କ୍ଷତି ଆମକୁ ଉଠାଇବାକୁ ପଡୁଛି । ଅଗ୍ନିର ଅନ୍ୱେଷଣ ହେଲା ଏବଂ ଅଗ୍ନି ଆମ ହାତକୁ ଆସିଗଲା । ଯେତେବେଳେ ଅଗ୍ନି ନଥିଲା ସେତେବେଳେ ରୋଷେଇ ମଧ୍ୟ ହେଉ ନଥିଲା ପୁଣି ଘରେ ମଧ୍ୟ ନିଆଁ ଲାଗୁ ନଥିଲା । ଅଗ୍ନିର ଅନ୍ୱେଷଣ ହେବା ପରେ ମନ ଭିତରେ ଥିବା ଅଗ୍ନି କମ୍ ହେବା ଆବଶ୍ୟକ । ତେବେଯାଇ ବାହାରର ଅଗ୍ନିର ସଦୁପଯୋଗ ହୋଇ ପାରିବ । ମନ ଭିତରେ ଅଗ୍ନି ଆଉ ବାହାରେ ବି ଅଗ୍ନି ରହିବ ତ ଭିତର-ବାହାର ସବୁ ଜଳି ଯିବ ।

ଆଜି ଅଗ୍ନିଠାରୁ ବଳି ଶକ୍ତିଶାଳୀ ଅସ୍ତ୍ର ଶସ୍ତ୍ରର ଅନ୍ୱେଷଣ ହୋଇଛି । ବର୍ତ୍ତମାନ ଏପରି ସମୟରେ ମତଭେଦକୁ ମନର କ୍ଷେତ୍ରରୁ ଦୂର କରି ବୁଦ୍ଧିର କ୍ଷେତ୍ରକୁ ଆଣିବା ଦରକାର । ବୌଦ୍ଧିକ ସ୍ତରରେ ପରସ୍ପରର ବିଚାର ପରିବର୍ତ୍ତନ କରିବାକୁ ହେବ । ଦେଖିବାକୁ ହେବ ଯେ ଆମେ ଯେଉଁ ପ୍ରକାର ସାଧନ ପ୍ରୟୋଗ କରୁଛୁ ତାହାଦ୍ୱାରା ଆମ ମନରେ ତଥା ଆମ ସମ୍ମୁଖରେ ଥିବା ବ୍ୟକ୍ତିଙ୍କ ମନରେ ଯେପରି କୌଣସି କ୍ଷୋଭ ଉତ୍ପନ୍ନ ନ ହୁଏ । ସାଧାରଣ ନେତାମାନେ, ସାମାଜିକ ନେତାମାନେ ଯେଉଁମାନଙ୍କ ପ୍ରଯତ୍ନରେ ସମାଜରେ ପରିବର୍ତ୍ତନ ହେଉଛି, ସେମାନେ ସାଧାରଣତଃ ମନକୁ ହିଁ ଅପୀଲ୍ କରିଥାନ୍ତି । କିନ୍ତୁ ଶଙ୍କରାଚାର୍ଯ୍ୟ ମନକୁ ଆବେଦନ କରି ନଥିଲେ । ବୁଦ୍ଧିକୁ ଆବେଦନ କରିଥିଲେ । ଶଂକରାଚାର୍ଯ୍ୟଙ୍କୁ ବୁଝିବାପାଇଁ ବୁଦ୍ଧିଦ୍ୱାରା ବୁଝିବାକୁ ହେବ । ଏହି ଶଂକର ପଦ୍ଧତି ବିଜ୍ଞାନ ଯୁଗରେ ପୁଣି ଆବିର୍ଭାବ ହେବ । ବିଚାର ବୁଝାଇବା ପାଇଁ ଯେଉଁ ବ୍ୟକ୍ତି ରହିଛି ତାହା ବୈଜ୍ଞାନିକ ଶକ୍ତି ।

ଦୁନିଆରେ ବ୍ୟାପକ ରୂପରେ ଅତିମାନସ ଭୂମିକା ପ୍ରକଟ ହେଉ । ଏହା ଆଜିର ଯୁଗ ଅପେକ୍ଷା କରିଛି । “ଅତିମାନସ” (ସୁପ୍ରାମେଣ୍ଟାଲ୍) ଶବ୍ଦ ନୂଆ ଚାଲୁଛି । କିନ୍ତୁ ସେଥିରେ ଯେଉଁ

ବିଚାର ନିହିତ ଅଛି, ତାହା ନୂଆ ନୁହେଁ । ସର୍ବଦା ତାହାର ଆବଶ୍ୟକତା ରହି ଆସିଛି, ବିଶେଷତଃ ବ୍ୟକ୍ତିର ଦୃଷ୍ଟିରୁ, ବିଜ୍ଞାନ ଦୃଷ୍ଟିରୁ ଆଜି ତାହା ଉତ୍କୃଷ୍ଟ ହୋଇ ଯାଇଛି । ବିଜ୍ଞାନ ଦ୍ୱାରା ମଣିଷମାନଙ୍କ ମଧ୍ୟରେ କମ୍ ତଫାତ୍ ରହୁଛି ଏବଂ ସମାଜ ସହିତ ପରସ୍ପର ସଂପର୍କ ବଢୁଛି । ସେଥିପାଇଁ କେହି ପ୍ରିୟ ହେବା ଅଥବା ଜଡ଼-ବୁଦ୍ଧି କାରଣରୁ କୌଣସି ବିଚାରମନ ଭିତରେ ବସା ବାନ୍ଧିଛି । ଏସବୁକୁ ଛାଡ଼ି ଦେବାକୁ ହେବ । ଭାଷା, ପନ୍ଥା. ଧର୍ମ, ବର୍ଗ, ପକ୍ଷ ଆଦି ଯେତେପ୍ରକାର ବିଚାର କଳ୍ପନା,+ ମନ ଭିତରେ ରହିଛି ସେସବୁକୁ ଛାଡ଼ି ଦେବାକୁ ହେବ ।

ଦ୍ୱିତୀୟ ମହତ୍ୱପୂର୍ଣ୍ଣ ବିଷୟ ହେଉଛି ଯେ, ଚିନ୍ତନର ସ୍ୱରୂପକୁ ବଦଳାଇ ଦେବାକୁ ହେବ । ଆଜି ଯାହା ଚିନ୍ତା କରାଯାଉଛି, ତାହା ନିରପେକ୍ଷ ନୁହେଁ, ସାପେକ୍ଷ ବୁଦ୍ଧିରେ ହେଉଛି । ସେଥିରେ କୌଣସି ମର୍ଯ୍ୟାଦା ଲାଗି ରହୁଛି, ଉପାଧି ସବୁ ରହୁଛି । ଆମେ ଯାହାକୁ ବୁଦ୍ଧି କହୁଛୁ, ତାହା ଆମକୁ ବାସ୍ତବିକ୍ "ସୁବୋଧ" ନୁହେଁ, ରଂଜିତବୋଧ ମନେ ହେଉଛି । ପୁଣି ଯେତେବେଳେ ବୁଦ୍ଧି ରଂଜିତ ବୋଧ ହେବାକୁ ଲାଗିବ, ସେ ସ୍ୱୟଂ ନଷ୍ଟ ପ୍ରାୟ ହୋଇଯିବ । ସେଥିପାଇଁ ଯେପରି ଜଣେ ଗଣିତଜ୍ଞଙ୍କୁ ନିଜର ବୁଦ୍ଧିକୁ ଉପାଧି ସହିତ ରଖିବାକୁ ପଡ଼ିବ ଏବଂ ସେ ରଖିପାରିବ, ସେହିପରି ବ୍ୟାବହାରିକ ଓ ସାମାଜିକ ବିଷୟରେ ମଧ୍ୟ ନିରପେକ୍ଷ ବୁଦ୍ଧି ରଖିବାକୁ ହେବ । ଗୀତାର ଶବ୍ଦ ଅନୁସାରେ 'ଶୁଦ୍ଧ ବୁଦ୍ଧି' ହେବା ଦରକାର । ଅତିମାନସ ଭୂମିକାର ଏହା ହେଉଛି ଗୋଟିଏ ପ୍ରକାର ଅର୍ଥ ।

ଅତିମାନସ-ଭୂମିକାର ପ୍ରଥମ ଅର୍ଥ ହେଲା, ସଂସାରରେ ଯେଉଁ ବିଚାର ପାଇଁ ମନ ସଂକୁଚିତ ହୋଇଯାଏ, ସେସବୁକୁ ଛାଡ଼ିଦେବା । ଦ୍ୱିତୀୟ ଅର୍ଥ ହେଉଛି, ବୁଦ୍ଧିକୁ ନିରୁପାଧିକ ରଖି ବୈଜ୍ଞାନିକ ଦୃଷ୍ଟିକୋଣରୁ ବିଚାର କରିବା ପାଇଁ ଅଭ୍ୟାସ କରିବା ଦରକାର ।

ତୃତୀୟ ଅର୍ଥ ହେଉଛି ଯେ ଗୋଟିଏ ସମୟରେ ଯେଉଁ ସମସ୍ୟା ବ୍ୟକ୍ତିଗତ ଥିଲା, କାଳକ୍ରମେ ତାହା ସାମାଜିକ ହେଲା ଏବଂ ଆଗକୁ ଯାଇ ରାଷ୍ଟ୍ରୀୟ ରୂପ ନେଲା, ବର୍ତ୍ତମାନ ଜାଗତିକ ହୋଇଗଲା । ଅନ୍ନ, ପ୍ରାଣ, ମନ - ମଣିଷର ଏହି ନିମ୍ନସ୍ତରର ସମସ୍ୟାଗୁଡ଼ିକ ମଧ୍ୟ ଆଜି ବ୍ୟକ୍ତିଗତ କିମ୍ବା ରାଷ୍ଟ୍ରୀୟ ପର୍ଯ୍ୟନ୍ତ ସୀମିତ ନ ରହି ବିଶ୍ୱବ୍ୟାପକ ହୋଇ ଯାଇଛି । ସେଥିପାଇଁ ଏସବୁ ପ୍ରତି ଶୁଦ୍ଧ ବୁଦ୍ଧିର ଦୃଷ୍ଟି ରଖିବା ଏବଂ ବିଶ୍ୱ-ବ୍ୟାପକ ବୁଦ୍ଧିରେ ହିଁ ବିଚାର କରି ଏହାର ସମାଧାନ ବାହାର କରିବା ଦରକାର । ଆଜି ଏହାର ଆବଶ୍ୟକତା ରହିଛି । ଆମ ମନ ଯେଉଁ ପ୍ରକାର ସ୍ଥାନୀୟ ଉପାଧି ମଧ୍ୟରେ ଜଡ଼ିତ, ସେଥିରୁ ମୁକ୍ତ ନ ହୋଇ ଚାରା ନାହିଁ । ତେବେଯାଇ ମନୁଷ୍ୟର ବ୍ୟକ୍ତିଗତ ସମସ୍ୟା; ଯାହା ଆଜି ବିଶ୍ୱମୟ ହୋଇ ଯାଇଛି, ଆଉ ବିଶେଷତଃ ଅନ୍ନ ପ୍ରାଣ ତଥା ମନ ସଂପର୍କରେ ଯେଉଁ ସମସ୍ୟା ରହିଛି, ତାହା ନିରପେକ୍ଷ ବୁଦ୍ଧି ଓ ନିରାଗ୍ରହ ବୃତ୍ତି ଦ୍ୱାରା ସମାଧାନ କରାଯାଇ ପାରିବ ।

ମୁଁ ନିରୁପାଧିକ ବୁଦ୍ଧି ବା ଅତିମାନବର ଲକ୍ଷଣ ଏପରି ମାନୁଛି ଯେ, ମନରେ କୌଣସି କାରଣରୁ କ୍ଷୋଭ ଜନ୍ମିବା ଉଚିତ ନୁହେଁ । ମୁଁ ସେଥିପାଇଁ ସେହି ଗୋଟିଏ ଶବ୍ଦ ଧରି ରଖିଛି । 'ସ୍ଥିତ ପ୍ରଜ୍ଞ' ଦର୍ଶନରେ ତ ଏହା ମଧ୍ୟ ଲେଖା ହୋଇଛି ଯେ, ଅତି କମ୍‌ରେ ପ୍ରଥମ ଅବସ୍ଥାରେ କ୍ଷୋଭ ହେବାକୁ ଦେବା ନାହିଁ । ପ୍ରଥମ ଅବସ୍ଥା ସଂଭାଳି ଗଲେ ପରେ ମଧ୍ୟ ସଂଭାଳିଯାଇ ହେବ । ମୂଳକଥା

ହେଉଛି ଯେ ମନରେ କ୍ଷୋଭ ହେବା ଉଚିତ ନୁହେଁ.... । କୌଣସି ବ୍ୟାପାରୀର ଲାଭ-କ୍ଷତିକୁ ଯେପରି ଆମେ ନିରପେକ୍ଷ ବୁଦ୍ଧିରେ କରିଥାଉ, ସ୍ୱୟଂ ବ୍ୟାପାରୀ ତାହା କରି ପାରେ ନାହିଁ । ତାକୁ ତାର କ୍ଷତି ସଂପର୍କରେ ଯଦି କୁହାଯିବ ତେବେ ସେ ବ୍ୟସ୍ତ ହୋଇ ଉଠିବ ଆଉ ତା ମନରେ କ୍ଷୋଭ ଜାତ ହେବ । ଅଥଚ ଆମେ ଟିକିଏ ବି ବିରକ୍ତ ନ ହୋଇ ତାକୁ ତା'ର ଏତିକି ଲକ୍ଷ ଟଙ୍କା କ୍ଷତି ହେଲା ବୋଲି କହି ଦେଉ । କାରଣ ଆମେ ଗଣିତ କରିବାବାଲା ନିରପେକ୍ଷ ବ୍ୟକ୍ତି ହୋଇଥାଉ । ତେଣୁ ଯେଉଁ ପ୍ରକାର ଆମେ ନିରପେକ୍ଷ ବ୍ୟକ୍ତିମାନେ ସେହି ବ୍ୟାପାରୀର ହିସାବ କରିଥାଉ, ସେହିପ୍ରକାର ସେ ନିଜେ ମଧ କରିପାରିବ । ଅର୍ଥାତ୍ ଯେପରି ଆମେ ସେହି ବ୍ୟାପାରୀଠାରୁ ନିଜକୁ ଅଲଗା ବୋଲି ଅନୁଭବ କରିପାରୁଛୁ, ସେହିପରି ସେ ମଧ ଆପଣାକୁ ନିଜଠାରୁ ଅଲଗା କରିଦେଲାପରେ, ବିରକ୍ତ ହେବାର କାରଣ ଆଉ ରହିବ ନାହିଁ ।

ଏ ଯେଉଁ ନିରପେକ୍ଷ ବୁଦ୍ଧି, ଏହା ହେଉଛି ଅତି ମାନସ ବୁଦ୍ଧି ଆଉ ଆଜି ଆମ ପାଇଁ ଏହାର ଅଧିକରୁ ଅଧିକ ଆବଶ୍ୟକତା ରହିଛି । ଏପରି ଆବଶ୍ୟକତା ତ ବରାବର ରହିଛି, କିନ୍ତୁ ଆଜି ଏହା ବିଶେଷ ଭାବରେ ଅନୁଭୂତ ହେଉଛି । ଏହା ଖୁବ୍ ଶୀଘ୍ର ଆସୁ ବୋଲି ମନ ଉଛନ୍ନ ହେଉଛି । ଏହି ଅସ୍ଥିରତା ବିଜ୍ଞାନ ସୃଷ୍ଟି କରିଛି, ଗୋଟିଏ ପଟେ ବୁଦ୍ଧିର (ଯାହାକୁ "ରିଜନିଂ" କୁହାଯାଉଛି) ଖୁବ୍ ବୃଦ୍ଧି ହୋଇଛି । କିନ୍ତୁ ଅନ୍ୟପଟେ ସେହି ଅନୁପାତରେ ଅଲଗା ହୋଇ ଦେଖିବାର ବୃତ୍ତି ବଢୁନାହିଁ । ବିଜ୍ଞାନ ସକାଶେ ନିରପେକ୍ଷ ବୁଦ୍ଧି ଏକ ପ୍ରାଥମିକ ଆବଶ୍ୟକତା ହୋଇ ଯାଇଛି । ଏଥିପାଇଁ ଏହା ନିଶ୍ଚିତ ଯେ ଆଜି ମନୁଷ୍ୟକୁ ସ୍ଥିର ଏବଂ ଶୁଦ୍ଧ ବୁଦ୍ଧିର ଆବଶ୍ୟକତା ଅତ୍ୟନ୍ତ ତୀବ୍ର ଭାବରେ ଅନୁଭୂତ ହେଉଛି ।

ଏଥିପାଇଁ ପ୍ରଥମ କାମ ହେଉଛି ଆମେ ନିଜକୁ ଆପଣା ମନଠାରୁ ଅଲଗା କରିବାକୁ ହେବ । ନିଜଠାରୁ ଆରମ୍ଭ ନ ହେଲାଯାଏ ବାହାରେ କିଛି ହୋଇ ପାରିବ ନାହିଁ । ଦ୍ୱିତୀୟ କାମ ହେଉଛି, ଆମେ ଯେଉଁକାମ କରିବାକୁ ଯାଉଛୁ ତାହାକୁ ବ୍ୟାପକ ଦୃଷ୍ଟିରୁ ଦେଖିବା ।

ତେଣୁ ସବୁ କାର୍ଯ୍ୟକୁ ବ୍ୟାପକ ଦୃଷ୍ଟିରେ ଦେଖିବାର ଅଭ୍ୟାସ କରିବାକୁ ହେବ । ବେଦରେ ଗୋଟିଏ ସୂକ୍ତ ଅଛି - ଯାହାର ନାମ ଅଧମର୍ଷଣ ସୂକ୍ତ (ସଂଚଳ ୧୦-୧୯୦, ୧-୩) । ଅଧମର୍ଷଣ ଅର୍ଥାତ ପାପ-ମୋଚକ - ପାପର ନାଶ କରିବା ସୂକ୍ତ । ସେହି ସୂକ୍ତରେ କେବଳ ଏତିକି କୁହାଯାଇଛି ଯେ ସୃଷ୍ଟି କିପରି ଅଟେ । ସୂର୍ଯ୍ୟ, ଚନ୍ଦ୍ର, ନକ୍ଷତ୍ର, ତାରା ଆଦି ସୃଷ୍ଟିର ବ୍ୟାପକତା ଆପଣଙ୍କ ସମ୍ମୁଖରେ ରଖିବାକୁ ଯାଇ ସୂକ୍ତର ସୃଷ୍ଟିକର୍ତ୍ତା ଋଷିଙ୍କର ଏହି ତାତ୍ପର୍ଯ୍ୟ ହେଉଛି ଯେ ଯଦି ମନୁଷ୍ୟର ଦୃଷ୍ଟି ବ୍ୟାପକ ହେବ, ତାହେଲେ ସେ ସବୁ ପାପରୁ ମୁକ୍ତ ହୋଇଯିବ । ଅଧମର୍ଷଣ ସୂକ୍ତ ଆମ ପାଇଁ ସମ୍ମୁଖରେ ଅନନ୍ତ ସୃଷ୍ଟିର କଳ୍ପନା ଖୋଲି ରଖିଛି ଆଉ ଏହାଦ୍ୱାରା ଆମେ ଜାଣିପାରୁଛୁ ଯେ ଆତ୍ମିକ ଦୃଷ୍ଟିରୁ ଆମେ ଏତେ ବ୍ୟାପକ ଓ ବିଶାଳ ଅଟୁ ଯେ, ଆମର ସ୍ୱରୂପ ଚୈତନ୍ୟମୟ ଅଟେ । ତେଣୁ କୌଣସି ପାପ କେବେ ହେବ ନାହିଁ ।

ମୋ ଦୃଷ୍ଟିରେ ଏହି ବିଶାଳ, ବ୍ୟାପକ କଳ୍ପନା 'ଅତିମାନସ' ଅଟେ । ଏହା ଆମକୁ ଏକେବାରେ ମନର ଉପରକୁ ନେଇଯାଏ । ମନେ କରନ୍ତୁ ଏହିପରି କ୍ଷୋଭ ରହିତ ବୁଦ୍ଧିଜରିଆରେ

ବିଚାର କରିବାରେ ସମସ୍ତଙ୍କର ଭୂମିକା ରହିବ, ତେବେ ତାଙ୍କ ସମ୍ମୁଖରେ ଜୀବନର ଏପରି ସ୍ୱରୂପ ହେବ, ଯାହାକୁ ଉପନିଷଦରେ "ଆନନ୍ଦ" ନାମ ଦିଆଯାଇଛି । ବିଜ୍ଞାନର ଉପରକୁ ଯାଇ ଯେଉଁ ଆନନ୍ଦ ଶବ୍ଦ ଉପନିଷଦରେ ପ୍ରସ୍ତୁତ ହୋଇଛି, ତାହା ଏହି ଭୂମିକା ପରେ ହିଁ ହେବ । ଆଜିକାଲି ଆମେ ଯେଉଁ ଆନନ୍ଦ ଇତ୍ୟାଦି କଥା କହୁଛୁ, ଏହା ମନର ବସ୍ତୁ ଅଟେ । ଏକଦମ୍ ନିମ୍ନସ୍ତରର । ଏହି ଆନନ୍ଦ ଇନ୍ଦ୍ରିୟମାନଙ୍କ ସଂପର୍କରୁ ଉତ୍ପନ୍ନ ଅଥବା ମାନସିକ କଳ୍ପନା ପ୍ରସୂତ । କିନ୍ତୁ ବ୍ୟାପକ ସମାଜର କ୍ଷୋଭ ରହିତ ବୁଦ୍ଧିର ଫଳ ସ୍ୱରୂପ ଜୀବନରେ ଯେଉଁ ଆନନ୍ଦ ଆସିବ, ତାହା ପାଇଁ ବାସ୍ତବରେ ସେହି 'ଆନନ୍ଦ' ଶବ୍ଦ ବ୍ୟବହାର୍ଯ୍ୟ । ଯାହାକି ବିଜ୍ଞାନର ଉପରେ ବୋଲି କୁହାଯାଇଛି ।

ଆଜି ସ୍ଥିତପ୍ରଜ୍ଞତାର ଆବଶ୍ୟକତା ରହିଛି । କୌଣସି ପରିସ୍ଥିତିରେ ମନରେ ବିରକ୍ତି ଭାବ ଆସିବା ଉଚିତ ନୁହେଁ । ଏପରି ବିରକ୍ତି ଶୂନ୍ୟ ଶାନ୍ତ ଭାବ ରହିଲେ ଯାଇଁ ପ୍ରଶ୍ନ ସମାଧାନ ହେବ । କେବଳ ମନ ଉପରେ ବାହ୍ୟ ଅଂକୁଶ ରଖି ଦେଲେ କାମ ଚଳିବ ନାହିଁ । ଅଂକୁଶ ମନ ଭିତରେ ହେବା ଦରକାର । ବୁଦ୍ଧିର ଆଦେଶ ମାନିବାକୁ ହେବ । ଏହା ବିନା ନିର୍ଣ୍ଣୟ ଶକ୍ତି ଆସିବ ନାହିଁ । ବର୍ତ୍ତମାନ ଯୁଗରେ ସ୍ୱତନ୍ତ୍ର ନିର୍ଣ୍ଣୟ-ଶକ୍ତିର ଆବଶ୍ୟକତା ରହିଛି । ମନଠାରୁ ଅଲଗା ହୋଇ ରହି ଶୁଦ୍ଧ ହେବାର ପ୍ରକ୍ରିୟା ଯେତେବେଳେ ଚାଲିବ, ସେତେବେଳେ ଯାଇ ଈଶ୍ୱରଙ୍କ ସାକ୍ଷାତ ମିଳିବ । ଈଶ୍ୱର ସାକ୍ଷାତକାର ହେବାପରେ ମନୁଷ୍ୟର ମନ ନିଜର ହୋଇ ରହିବ ନାହିଁ । ତାହା ବିଶ୍ୱ ମାନସ ହୋଇଯିବ । ଜଗତର ମନ ତାହାକୁ ନିମିତ୍ତ କରି କାମ କରିବ । ସେ ଈଶ୍ୱରଙ୍କ ହାତର ହତିଆର ରୂପେ କାମ କରିଥାଏ । ଏହାକୁ ଅତିମାନସ ଭୂମିକା କହନ୍ତି ।

ରାଗ ଦ୍ୱେଷରେ ବ୍ୟସ୍ତ, ସଂକୁଚିତ ମନ ଠାରୁ ଉପରକୁ ଉଠି ବିଶୁଦ୍ଧ ସମଭାବସ୍ଥିତ ମନ ନେଇ ଆମେ କାମ କରିବା ଦରକାର । ଏପରି ଜଣେ ବି ଯୋଗୀ ଯଦି ଅତିମାନସ ଭୂମିକାରେ ରହି କାମ କରିବେ ତ ଜଗତର ସଂପୂର୍ଣ୍ଣ ଦୁଃଖ କଷ୍ଟ ଉପରେ ତାହାଙ୍କର ପ୍ରଭାବ ପଡ଼ିପାରେ । ଗାନ୍ଧିଜୀ ଏହି କଥାକୁ ସରଳ ଭାଷାରେ କହୁଥିଲେ କି, ଜଣେ ପୂର୍ଣ୍ଣ ସତ୍ୟାଗ୍ରହୀ ମଧ୍ୟ ଜଗତର ସବୁ ଅନ୍ୟାୟକୁ ଦୂର କରିପାରିବ । ଏ କଥା ମଝିରେ ଈଶ୍ୱର ଆସୁନାହାନ୍ତି, ଏ କଥା ବୁଝିବା ସହଜ ମଧ୍ୟ ।

ଅନେକ ଲୋକଙ୍କ ମନ ଛୋଟ ଛୋଟ କଥାରେ ସବୁବେଳେ ବୁଡ଼ି ରହେ । ସେ ଏହି ନୂଆ ବିଚାରକୁ କେବେ ଗ୍ରହଣ କରିବେ ? ଏପରି ପ୍ରଶ୍ନ ଉଠିବା ଉଚିତ ନୁହେଁ । ଏହି ବିଚାର ନିଜେ ତାଙ୍କ ମସ୍ତିଷ୍କରେ ଆସି ପହଂଚିବ । ନୂଆ ଯୁଗ ଆସୁଛି, ଏହା ଅତିମାନସର ଯୁଗ । ବିଜ୍ଞାନର ଯୁଗ ।

ଅତିମାନସ ସୂର୍ଯ୍ୟ ଅଟନ୍ତି । ଆମ୍ବ ଗଛରେ ଅନେକ ଫଳ ଫଳିଛି । ସୂର୍ଯ୍ୟ ସମସ୍ତଙ୍କୁ କିରଣ ଦିଅନ୍ତି । କିନ୍ତୁ ସେହି କିରଣର ପ୍ରଭାବରେ ଗୋଟିଏ ଦୁଇଟି ଆମ୍ବ ପାଚିଗଲେ ନିଜ ଅନୁଭୂତିରୁ ଜଣାଯାଏ ଯେ ସବୁ ଆମ୍ବ ତୋଳି ନେବା ଦରକାର । ସେହିପରି ଲୋକ ସମାଜରେ ଯାହାଙ୍କର ଆନ୍ତରିକ ପ୍ରସ୍ତୁତି ହୋଇଛି, ତାଙ୍କର ଅନ୍ତର୍ବିଭୂତି ଉପରେ ଅତିମାନସର କିରଣ କେନ୍ଦ୍ରିତ ହୋଇଥାଏ ଏବଂ ଏହି ଅବସ୍ଥା ଓ ବସ୍ତୁ ସ୍ଥିତି ଗୋଟିଏ ନୂଆ ଯୋଗ୍ୟତା ଉତ୍ପନ୍ନ କରିଥାଏ ।

# ୩. ଧାନର ପ୍ରୟୋଜନ

## କ). ଧାନ ଉପାସନା, ଗୁଢ଼ ଶୋଧନ ପାଇଁ :

ମାନବସେବା ଆଜିକାଲି ଆମର ମୁଖ୍ୟ ଲକ୍ଷ୍ୟ ହୋଇଛି । କାରଣ ମନୁଷ୍ୟର ଅବସ୍ଥା ଖୁବ୍ ତଳକୁ ଗଲାଣି । ଫଳରେ ଏହି ଆଡ଼କୁ ଅଧିକ ଧାନ ଦେବା ଆବଶ୍ୟକ । ଆଜି ଯେତିକି ଧାନ ଦିଆଯାଉଛି, ତାହା ଯଥେଷ୍ଟ ନୁହେଁ । ତଥାପି ଆମକୁ ପ୍ରାର୍ଥନା, ଉପାସନା ଓ ଧାନ ପରି ବିଷୟମାନଙ୍କୁ ମଧ ଭଲ ଭାବରେ ବୁଝିବା ଦରକାର । ଜୀବନର କିଛି ଗୁଢ଼ ଭାବନା ରହିଛି ତା ଆଡ଼କୁ ନ ଚାହିଁବା ଏକ ପ୍ରକାର ଅନ୍ଧତ୍ୱ ଅଟେ ।

କିଛି ଲୋକ ଗୁଢ଼ ବସ୍ତୁ ପ୍ରତି ଅନ୍ଧ ବିଶ୍ୱାସ ରଖି ଥାଆନ୍ତି । ପୁଣି ଆଉ କେତେ ଲୋକ ଅନ୍ଧ-ବିଶ୍ୱାସୀ ହୋଇଥାଆନ୍ତି । ସେମାନେ ଗୁଢ଼ ପ୍ରତି ବିଶ୍ୱାସୀ ନୁହନ୍ତି । ଏପରି ଅବିଶ୍ୱାସ ରଖିବା ପାଇଁ ସେମାନଙ୍କ ପାଖରେ ପ୍ରମାଣ ନାହିଁ କିମ୍ବା କାରଣ ମଧ ନାହିଁ । ଅନ୍ଧତ୍ୱ ହେଉଛି କାରଣ । ଏଥିପାଇଁ ଧାନ, ଉପାସନା ଏବଂ ପ୍ରାର୍ଥନାର ଅନୁଭବକୁ ତିନି ପ୍ରକାରରେ ବିରକ୍ତ କରାଯାଇଛି । ଗୋଟିଏ ମୁଢ଼-ଭାବ, ଗୋଟିଏ ଗୁଢ଼ ଭାବ ଏବଂ ଗୋଟିଏ ରଢ଼ ଭାବ । କୌଣସି ବିଚାରକୁ ଭାବି-ଚିନ୍ତି ତ୍ୟାଗ କରିବା ତ ଉଚିତ ଅଟେ । କିନ୍ତୁ କିଛି ଚିନ୍ତା ନକରି ତାହା ତ୍ୟାଗ କରିବା ମୁଢ଼ତା ଅଟେ । କୌଣସି ବସ୍ତୁ ପାଇଁ ବହୁତ ମଜବୁତ୍ ପ୍ରମାଣ ନଥାଉ, ମୁଖ୍ୟତଃ ଏହାକୁ ପ୍ରତିପାଦିତ କରି ନପାରିବ, ତେବେ ତାହା ଗୁଢ଼ ଅଟେ ଏବଂ ଏହାର ଶୋଧନ ହେବା ଜରୁରୀ ଅଟେ । କୌଣସି ଚିନ୍ତା ନକରି କୌଣସି ବସ୍ତୁ ପ୍ରତି ଅନ୍ଧ ଶ୍ରଦ୍ଧା ରଖିବା ରଢ଼ ଶ୍ରେଣୀରେ ଆସିବ ।

ଆଜିକାଲି ଯେଉଁ ବିଦ୍ୟା ପ୍ରଚାର ହେଉଛି ତା ପାଇଁ ଶିକ୍ଷିତ ଲୋକମାନେ ଗୁଢ଼ ଅନୁଭବ ବୁଝି ପାରୁ ନାହାନ୍ତି । ମଝିରେ ପର୍ଦା ଆସିଯାଉଛି । ସେହି ପର୍ଦା ହିରଣ୍ମୟେନ ପାତ୍ରେଣ — ସୁବର୍ଣ୍ଣ ପର୍ଦା ପରି । ଏହାକୁ ବିଦ୍ୟା କହନ୍ତି । ବାସ୍ତବରେ ଏହା ଅବିଦ୍ୟା ଅଟେ । ସୂର୍ଯ୍ୟ କିରଣରେ ତାରାମାନେ ଲୁଚି ଯାଆନ୍ତି । ଗଛ ପତ୍ର - ପଥର ଆଦି ଦେଖା ଯାଆନ୍ତି । ସୂର୍ଯ୍ୟ ସୃଷ୍ଟିକୁ ଖୋଲି ଦିଅନ୍ତି, ତ ଅନ୍ୟଆଡ଼େ ତାରାମାନଙ୍କୁ ଢାଂକି ଦିଅନ୍ତି । ଢାଂକି ହୋଇ ଯାଉଥିବା ସେହି ସୃଷ୍ଟିମାନଙ୍କ ତୁଳନାରେ ସୂର୍ଯ୍ୟ ମଧ ତୁଚ୍ଛ ଅଟନ୍ତି, ଅବସ୍ତୁ ଅଟନ୍ତି । ସେହି ପ୍ରକାର ଆଜିର ବିଦ୍ୟା, ଭୌତିକ ବସ୍ତୁକୁ ପ୍ରକାଶିତ କରୁଛି, କିନ୍ତୁ ଗୁଢ଼ ଅନୁଭବକୁ ଢାଂକି ଦେଉଛି ।

ଏଠାରେ (ବ୍ରହ୍ମ ବିଦ୍ୟା ମନ୍ଦିର) ମୋର କୁଡ଼ିଆ ସାମ୍ନାରେ ଗଂଗା ମୂର୍ତ୍ତି ଅଛନ୍ତି । ସେହି ମୂର୍ତ୍ତି ଉପରେ ଓଁ ଲେଖା ଯାଇଛି । ମୁଁ ରାତିରେ ଏବଂ ଦିନରେ ମଧ ଓଁକାରର ଓ ଗଂଗା ମୂର୍ତ୍ତିଙ୍କର ଧାନ କରେ । କେହି ମୋତେ ପଚାରି ପାରନ୍ତି ଯେ, 'ଧାନ କରୁଛି' ଅର୍ଥାତ କ'ଣ କରୁଛି ? ତାହାହେଲେ ମୁଁ ପଚାରିବି କି 'ମୁଁ ଝାଡ଼ୁ କରୁଛି' ଅର୍ଥାତ୍ କ'ଣ କରୁଛି ? ମୋର ଏହି ପ୍ରଶ୍ନର ଉତ୍ତର ଘର ଭିତରେ ହିଁ ମିଳିପାରିବ । ଧାନ ପାଇଁ ବସିବି, ଆଉ ସେତେବେଳେ ଫଟୋ ଉଠାଇ ନେବ, ତ ଧାନବେଳେ କିପରି ବସିଥିଲି, ଏହା ଜଣାପଡ଼ିବ, କିନ୍ତୁ ତାଠାରୁ ଅଧିକ ଜ୍ଞାନ ହେବନାହିଁ । ଧାନ ଏପରି ଏକ ବସ୍ତୁ ଅଟେ ଯାହାକୁ ଉପେକ୍ଷା କଲେ ନିଜ ଉନ୍ନତିରେ ଆମେ ବାଧା ପହଂଚାଇବା ।

ଈଶାଙ୍କ ବିଷୟରେ କାହାଣୀ ଅଛି ଯେ, ସେ ମାନବ ସେବାର କଥା କହୁଥିଲେ । ବାଇବେଲରେ ଈଶା ମସୀହଙ୍କ ଚରିତ୍ର ସଂପର୍କରେ ଯାହା ଦେଖାଯାଏ ସେଥିରେ ଲେଖାଯାଇଛି ଯେ, ସେ ୩୩ ବର୍ଷ ବୟସରେ ଗଲେ ଏବଂ ତାଙ୍କର ସେବା କରିବାର ସମୟ ତିନିବର୍ଷ ପର୍ଯ୍ୟନ୍ତ ଥିଲା । ୧୨ ବର୍ଷ ବୟସରୁ ୩୦ ବର୍ଷ ପର୍ଯ୍ୟନ୍ତ ବାଇବେଲରେ ନାହିଁ । ଗୋଟିଏ ସ୍ଥାନରେ ଲେଖା ଯାଇଛି ଯେ ଏକଦମ୍ ପିଲାବେଳେ ଅର୍ଥାତ୍ ୧୨ ବର୍ଷ ପୂର୍ବରୁ ଥରେ ସେ ମନ୍ଦିରକୁ ଗଲେ । ସେଠାରୁ ବାହାରକୁ ଆସିଲେ ନାହିଁ । କୁଆଡ଼େ ଲୁଚିଗଲେ । ବାପା ମା ଖୋଜିବାକୁ ଲାଗିଲେ । ଯେତେବେଳେ ସେ ବାହାରକୁ ଆସିଲେ ତାଙ୍କୁ ପଚରାଗଲା କି "ତୁମର ବାପା ମା' ଙ୍କ ବିଷୟରେ କୌଣସି ଚିନ୍ତା ନାହିଁ କି ?" ସେଠୁ ସେ କହିଲେ, "ମୁଁ ନିଜର ପିତା (ଫାଦର) ଙ୍କ ଚିନ୍ତା କରୁଥିଲି ।" ଏହାର ତାତ୍ପର୍ଯ୍ୟ ହେଉଛି ଯେ ସେବେଠାରୁ ତାଙ୍କର ଧ୍ୟାନ କରିବାର ଅଭ୍ୟାସ ଥିଲା । କିନ୍ତୁ ସେ ଲୋକଙ୍କୁ ଏକଥା କହୁନଥିଲେ । ସେ କହୁଥିଲେ -- "ଲଭ ଦାଇ ନେବର ଏଜ୍ ଦାୟସେଲଫ"। ପଡ଼ୋଶୀଙ୍କୁ ନିଜ ପରି ଭଲ ପାଅ । ଅର୍ଥାତ୍ ସେ ମଣିଷକୁ ଅତିକମ୍‌ରେ ଧର୍ମ କ'ଣ କହି ଦେଇଥିଲେ ।

ମହମ୍ମଦ ପୈଗମ୍ବର ତାଙ୍କ ଶିଷ୍ୟ ମାନଙ୍କୁ କହୁଥିଲେ -- ତୁମେମାନେ ବେଶୀ ଉପବାସ କର ନାହିଁ । ଶିଷ୍ୟମାନେ ତାହାଙ୍କୁ ପଚାରିଲେ ଯେ, "ଆପଣ ତ ବହୁତ ଉପବାସ କରୁଛନ୍ତି, ଆମକୁ ମନା କରୁଛନ୍ତି, ଏହାର କାରଣ କ'ଣ ?" ମହମ୍ମଦ ପୈଗମ୍ବର ଜବାବ ଦେଲେ -- "ମୋତେ ଭିତରୁ ଖାଦ୍ୟ ମିଳୁଛି ।"

ଗୌତମ ବୁଦ୍ଧ ୪୦ ଦିନ ଉପବାସ କରି ପତଳା ହୋଇଗଲେ ଏବଂ ଏହାପରେ ସେ କରୁଣାର ଉପଦେଶ ଦେଲେ, ସେବା କର ଏବଂ କରୁଣା ରଖ । ଏହା ଶୁଣି ଲୋକେ ବୁଝିଲେ ଯେ, ଧ୍ୟାନ ଭୁଲ ବାଟ । ମୁଁ ଯେତେଦୂର ତାଙ୍କ ବିଷୟରେ ପଢ଼ିଛି, ଗୌତମ ବୁଦ୍ଧ କଦାପି ଏହା କହି ନାହାନ୍ତି ଯେ ଉପବାସ ଆଦି ଭୁଲ ବାଟ । ବ୍ରାହ୍ମଣଙ୍କ ଲକ୍ଷଣ କହିବାକୁ ଯାଇ ସେ କହିଲେ, ବ୍ରାହ୍ମଣ ଏପରି କୃଶ (ପତଳା) ହେବା ଦରକାର, ଯେପରି ତାଙ୍କର ପ୍ରତ୍ୟେକ ଲୋମକୂପ ଦେଖାଯିବ । ସେ ଧ୍ୟାନ-ସାଧନାକୁ କଦାପି ଭୁଲ ବାଟ ବୋଲି କହି ନାହାନ୍ତି ବରଂ ଧ୍ୟାନକୁ ମୁଖ୍ୟ ସାଧନ ବୋଲି ମାନିଛନ୍ତି । ତେଣୁ ଏ ବିଷୟ ଏମିତି ଏଡ଼ାଇ ଯିବା ବିଷୟ ନୁହେଁ ।

ବାପୁଙ୍କ ଆତ୍ମକଥା ଆମେ ପଢୁଛୁ ତ କିଛି କଥା ଆମକୁ ଜାଣିବାକୁ ମିଳୁଛି, ରାଜେନ୍ଦ୍ର ଭାଇଙ୍କ ସହିତ ତାଙ୍କର ଯେଉଁ ଚର୍ଚ୍ଚା ହେଲା, ତାହା ମଧ୍ୟ ଆମେ ଜାଣୁ । କିନ୍ତୁ ତାଙ୍କ ମନରେ ଆଧ୍ୟାତ୍ମିକ ଶଂକା ରହିଥିଲା ଏବଂ ଏହାର ନିବୃତ୍ତି ଛଡ଼ା ସେ କାମରେ ଲାଗୁ ନଥିଲେ । ମିସ୍‌ଟିକ୍ ଏକ୍‌ସପେରିଏନ୍‌ସ (ଗୁଢ଼ ଅନୁଭବ) ବିନା ବାପୁ ସେବାରେ ଲାଗୁନଥିଲେ । ସେ କହୁଥିଲେ ସତ୍ୟ ଈଶ୍ୱର ଅଟନ୍ତି । ସେଥିପାଇଁ ଲୋକମାନେ ବୁଝୁଥିଲେ କି ଏହା ବୈଜ୍ଞାନିକ କଥା । କିନ୍ତୁ ଏହା କେବଳ ବୈଜ୍ଞାନିକ କଥା ନଥିଲା । ଦିନେ ମୁଁ ତାଙ୍କୁ ଈଶ୍ୱରଙ୍କ ଅନୁଭବ ବିଷୟରେ ପଚାରିଲି -- "ଆପଣ, 'ସତ୍ୟ ଈଶ୍ୱର ଅଟନ୍ତି', ଏ ଯେଉଁ କଥା କହୁଛନ୍ତି, ଏହା ଠିକ୍ କଥା, କିନ୍ତୁ ଆପଣ ଉପବାସ ସମୟରେ କହୁଥିଲେ ଯେ 'ଭିତରୁ ଶବ୍ଦ ଶୁଭୁଛି', ଏହା କିପରି କଥା ? ଏଥିରେ କ'ଣ

ଗୁଢ଼ତା ଅଛି ।" ସେ କହିଲେ 'ହଁ, ସେଥିରେ କିଛି କଥା ଅଛି । ଏହା କିଛି ସାଧାରଣ ବସ୍ତୁ ନୁହେଁ । ମୋତେ ସ୍ପଷ୍ଟ ଶବ୍ଦ ଶୁଭିଲା, ଯେପରି କୌଣସି ମନୁଷ୍ୟ କହୁଛି, ସେପରି ଶୁଭିଲା । ମୁଁ ପଚାରିଲି ଯେ, ମୋତେ କ'ଣ କରିବାକୁ ହେବ, ତାପରେ ଶବ୍ଦ ଶୁଭିଲା 'ଉପବାସ କରିବା ଦରକାର' । ମୁଁ କହିଲି, କେତେଦିନ ଉପବାସ କରିବା ଦରକାର ? ଜବାବ ଆସିଲା, 'ଏକୋଇଶ ଦିନ' । ଅର୍ଥାତ୍ ଏଥିରେ କେହି ପଚାରିବା ବାଲା ଥିଲେ ଆଉ ଅନ୍ୟ ଜଣେ ଜବାବ ଦେବା ବାଲା । ବିଲ୍‌କୁଲ୍ କୃଷ୍ଣାର୍ଜୁନ ସଂବାଦ ପରି ଥିଲା । ବାପୁ ସତ୍ୟବାଦୀ ଥିଲେ । ତେଣୁ କୌଣସି ଭ୍ରମ ହୋଇ ପାରିବା କଥା ନୁହେଁ । ସେ କହିଲେ -- "ମୋତେ ସାକ୍ଷାତ ଈଶ୍ୱର ଏହି କଥା କହିଲେ ।" ପୁଣି ମୁଁ ପଚାରିଲି -- "କ'ଣ ଈଶ୍ୱରଙ୍କ ରୂପ ଥାଇପାରେ ?" ସେ କହିଲେ -- "ରୂପ ତ ହୋଇ ପାରିବ ନାହିଁ, କିନ୍ତୁ ମୋତେ ଶବ୍ଦ ଶୁଭିଲା ।" ଏହାପରେ ମୁଁ କହିଲି -- "ରୂପ ଅନିତ୍ୟ ଅଟେ ତ ଧ୍ୱନି ମଧ୍ୟ ଅନିତ୍ୟ ଅଟେ । ଯଦି ଧ୍ୱନି ଶୁଭିଲା ତ ରୂପ କିପରି ଦେଖାନଯିବ ? ପୁଣି ମୁଁ ତାଙ୍କ ଆଗରେ କିଛି ସୂଚନା ରଖିଲି । "ଈଶ୍ୱର ଦର୍ଶନ କାହିଁକି ହୋଇପାରିବ ନାହିଁ " ? ଆପଣଙ୍କ ମନ ଭିତରେ ପ୍ରଶ୍ନ ଉତ୍ତର ହେଲା । ତାହା ଈଶ୍ୱର ସହିତ ସଂପର୍କ ଥିଲା ତ ?" ସେ କହିଲେ, ହଁ ତାଙ୍କ ସହିତ ସଂପର୍କ ଥିଲା । ମୁଁ କଥା ଶୁଣିଲି କିନ୍ତୁ ମୋର ଦର୍ଶନ ହେଲା ନାହିଁ । ମୁଁ ରୂପ ଦେଖିନାହିଁ । କିନ୍ତୁ ଏହିପରି ଦର୍ଶନ ହୋଇପାରେ ।" ଏସବୁ କଥା ମୁଁ ଏଇଥି ପାଇଁ କହିଲି ଯେ ଆମେ ଜୀବନର ଗଭୀରତା ଭିତରକୁ ଯାଉ ନାହୁଁ ଆଉ ଉପର ସ୍ତରରେ କାମ ଚଳେଇ ନେଉଛୁ । ମୁଁ ସେହି ଆଡ଼କୁ ମନ ଟାଣିବାକୁ ଚାହୁଁଛି ।

ଉପାସନା, ଧ୍ୟାନ, ପ୍ରାର୍ଥନା ଆଦି ଭିତରକୁ ସମସ୍ତଙ୍କୁ ଯିବାକୁ ହେବ କି ନାହିଁ, ଏ ପ୍ରଶ୍ନ ମୋତେ ପଚାରିଲେ ମୁଁ କହିବି କି ଆପଣଙ୍କର ଯାହା ଅନୁଭବ ହେଉଛି ତାହା କରନ୍ତୁ । ଯଦି ଛୋଟପିଲା ହିସାବରେ ମୋତେ ପଚାରିବେ ତେବେ କହିବି ନିଶ୍ଚୟ ଯାଅ । କିନ୍ତୁ ପିଲା ନ ହୋଇ ପଚାରିଲେ କହିବି, ଆପଣ ଆପଣଙ୍କ ଅନୁଭବରୁ ସ୍ଥିର କରନ୍ତୁ । ସେଥିରେ ଯଦି ମନରେ ଶାନ୍ତି ଆସୁଛି ତ ଯାଆନ୍ତୁ, ଯଦି ନ ଆସୁଛି ତ ନ ଯାଆନ୍ତୁ ।

ଏହାପରେ ମଧ୍ୟ ଗୋଟିଏ କଥା କହିବାର ଅଛି । ଏ ଯେଉଁ ଭକ୍ତି (ଧ୍ୟାନ, ଉପାସନା, ପ୍ରାର୍ଥନା) ର କ୍ଷେତ୍ର ଅଛି, ତାହା ହେଉଛି ନିଜର ସନ୍ତୋଷର କ୍ଷେତ୍ର । ସେଥିରେ ନିଜର ସ୍ୱତନ୍ତ୍ର ଅନୁଭବ ଅଛି । ନିଷ୍କାମ, ନିରହଂକାର ସେବା କରିବା ଦ୍ୱାରା ମନରେ ସମାଧାନ ଆସିପାରେ । ଏକଥା ମୁଁ ମାନୁଛି । ତଥାପି ମୋର କହିବା କଥା ଯେ ଭକ୍ତିର ନିଜର ସ୍ୱତନ୍ତ୍ର କ୍ଷେତ୍ର ଅଛି । ଆଉ ତାହାର ସ୍ୱତନ୍ତ୍ର ଅନୁଭବ ଅଛି । ଯେପରି ଗୋଟିଏ ନୈତିକ ଭୂମିକାରେ ମନୁଷ୍ୟ କାମ କରିଥାଏ । ନିଷ୍କାମ, ନିରହଂକାର ସେବା କରିଥାଏ, ତାହା ଦ୍ୱାରା ବିଜ୍ଞାନର ଅନୁଭବ ହୁଏ, ସେପରି ନୁହେଁ । ବିଜ୍ଞାନ ଗୋଟିଏ ସ୍ୱତନ୍ତ୍ର ବସ୍ତୁ ହୋଇ ରହିଯିବ । ମୁଁ ସାଇନ୍‌ସ ଦୃଷ୍ଟିରୁ କହୁଛି । ସେହି 'ଏଥିକଲ୍ ପ୍ଲେନ୍' ରୁ 'ହ୍ୟୁମେନିଟେରିଆନ୍ ପ୍ଲେନ୍' ରୁ ଅର୍ଥାତ୍ ଭୂତଦୟା ଦୃଷ୍ଟିରୁ ବିଜ୍ଞାନ ଅଲଗା ହୋଇ ରହିଯିବ । ଅର୍ଥାତ୍ ଜୀବନର ଏହି ଗୋଟିଏ ଅଂଶ ବାକି ରହିଯିବ । ସେହିପରି ଏହି ନୈତିକ ବା ଭୂତଦୟାର ଭୂମିକାରୁ ଏବଂ ସେହିପରି ସାଇନ୍‌ସର ଭୂମିକାରୁ ଗୋଟିଏ ତୃତୀୟ ଭୂମିକା, ତୃତୀୟ ଅନୁଭବ ହେବ, ଯାହାକୁ ଭକ୍ତିର କ୍ଷେତ୍ର କୁହାଯିବ । ବିଜ୍ଞାନର ଅନୁଭବ ବୈଜ୍ଞାନିକମାନଙ୍କର

ହେବ ତ, ନିଷ୍କାମ ସେବାର ଅନୁଭବ, ନୀତିନିଷ୍ଠ ସେବକମାନଙ୍କର ହେବ । ଦୁଇଟି ଯାକ ଅନୁଭବ ଅସଂପୂର୍ଣ୍ଣ ଅଟେ । ଗୋଟିଏ ତୃତୀୟ ଅନୁଭବ ଅଛି । ଯାହା ଭକ୍ତି ଦ୍ୱାରା ହୋଇଥାଏ । ଯାହାକୁ ଗୌତମ ବୁଦ୍ଧ ଅଧିଚିତ୍ତେନ ଆୟୋଗଃ, କହିଥିଲେ । ଅର୍ଥାତ୍ ଅଧିଚିତ୍ତ ଉପରେ ବସିବା, ଆରୁଢ଼ ହେବା । ସେଥିରେ ଚିତ୍ତକୁ ଅତିକ୍ରମ କରି ଯାହା ଦର୍ଶନ ହୁଏ, ତାହାର ସାକ୍ଷାତ୍କାର ହୁଏ । ସେଥିରେ ରୂପ ଦର୍ଶନ ମଧ୍ୟ ହୁଏ । ଏବଂ ସଂକେତ ଦର୍ଶନ ମଧ୍ୟ ହୁଏ । ଯେତେ ବଡ଼ ବିଶାଳ ବୈଜ୍ଞାନିକ ବିଶ୍ୱ ବାହାରେ ଛିଡ଼ା ହୋଇଛନ୍ତି, ଯେତେ ବିଶାଳ ମାନବତା ବାହାରେ ଅଛନ୍ତି, ନୀତି ଏବଂ ସେବାର ଯେତେ ବଡ଼ ବ୍ୟାପକ କ୍ଷେତ୍ର ବାହାରେ ଛିଡ଼ା ହୋଇଛନ୍ତି, ସେତିକି ବଡ଼ ବିଶାଳ ଏକ ତୃତୀୟ ବିଶ୍ୱ ଅଛି ଯାହାକୁ ଅନ୍ତର୍ବିଶ୍ୱ କୁହାଯାଏ । ସେଥିରେ ଯେଉଁ ଅନୁଭବ ଆସେ, ତାହା ଉପାସନା ଦ୍ୱାରା, ଧ୍ୟାନ ଦ୍ୱାରା ଆସିଥାଏ । ଏହାଛଡ଼ା ମଧ୍ୟ ମଣିଷର ଚିତ୍ତ-ସମାଧାନ ହୋଇ ପାରେ । କିନ୍ତୁ ସେହି ଅନୁଭବ ସହିତ ସେମନ ଶକ୍ତି ସଂପନ୍ନ ହେବ । ସମାଧାନରେ ଶକ୍ତି ମଧ୍ୟ ମିଶିବ ଏବଂ ସେହି ମନରେ ଏ ଈଶ୍ୱରୀୟ ଚେତନାର ଅଂଶ ଆବିର୍ଭୂତ ହେବ । ସେଥିପାଇଁ କେତେ ଜଣଙ୍କର ସାକ୍ଷାତକାର ହୋଇଛି । ଏହି ସାକ୍ଷାତକାରମାନଙ୍କ ବିବରଣୀ ନୈତିକ ବା କରୁଣାର ଭୂମିକାରୁ ହେବ ନାହିଁ । ତାଙ୍କ ବିବରଣୀ ବୈଜ୍ଞାନିକ କିମ୍ବା ବୌଦ୍ଧିକ ଭୂମିକାରୁ ହେବ ନାହିଁ । ଏହି ଦୁଇଟିରୁ ଭିନ୍ନ ସେ ଏକ ତୃତୀୟ ବସ୍ତୁ ଅଟେ । ତେଣୁ ଯଦି ଧ୍ୟାନ, ପ୍ରାର୍ଥନା, ଉପାସନା ଆଦି ଆଡ଼କୁ ବାହାରି ମନ ଠିକ୍ ରୂପେ ନ ଯିବ, ତେବେ ତାଙ୍କ ଜୀବନ ଅସଂପୂର୍ଣ୍ଣ ରହିଯିବ ଏବଂ ପୂର୍ଣ୍ଣ-ପୁରୁଷ ଦର୍ଶନ ହେବ ନାହିଁ । ଶୁଦ୍ଧ ହେବ, ବୁଦ୍ଧ ହେବ, ତଥାପି ସିଦ୍ଧ ହେବ ନାହିଁ ।

ମାନବ ସେବା ଏବଂ ନିଜ ନିଷ୍ଠା (ଆତ୍ମନିଷ୍ଠା) ରୁ ମଣିଷ ଶୁଦ୍ଧ ହୁଏ, ବିଜ୍ଞାନ ନିଷ୍ଠା ଦ୍ୱାରା ମଣିଷ ବୁଦ୍ଧ ହେବ । କିନ୍ତୁ ସେତିକି ବେଳେ ସେ ଶୁଦ୍ଧ ହେବ, ଯେତେବେଳେ ତାର ନିଜ ଚେତନା ଭିତରେ ପରମାତ୍ମା-ଚେତନାର ଆବିର୍ଭାବର ଅନୁଭବ ହେବ । ଜାଗୃତି ଏବଂ ସୁସୁପ୍ତିରେ ପରିଚିତ ନିଜ-ଚେତନରେ ପରମାତ୍ମ-ଚେତନର ଆବିର୍ଭାବ ଅନୁଭବ ହେବା ପରେ ଯାଇ ମନୁଷ୍ୟକୁ ଜୀବନର ପୂର୍ଣ୍ଣତାର ଅନୁଭବ ହୋଇଥାଏ, ଆଉ ତେବେ ଯାଇ ସେ ସିଦ୍ଧ ହୋଇଥାଏ । ଶୁଦ୍ଧ ଭୂମିକା ଓ ବୁଦ୍ଧ ଭୂମିକାରୁ ସିଦ୍ଧ ଭୂମିକା ଭିନ୍ନ ଅଟେ । ଏହା ଗୋଟିଏ ଅନ୍ୱେଷଣ । ଜୀବନ ଗୋଟିଏ ଅନ୍ୱେଷଣ ଅଟେ ।

ବ୍ରହ୍ମ ବିଦ୍ୟା ମନ୍ଦିର ଗୋଟିଏ ସମାଜ । କିନ୍ତୁ ସାଧକ ସମାଜ ଗୋଟିଏ ସ୍ୱପ୍ନରେ ଚାଲିବ ନାହିଁ । ସମସ୍ତଙ୍କୁ ଗୋଟିଏ ସ୍ୱପ୍ନ ଆସିଲା, ଗୋଟିଏ ସ୍ୱପ୍ନରେ ସମସ୍ତେ ଚାଲିଗଲେ, ଏପରି ଅନୁଭବ ହେବ ନାହିଁ । ଜାଗୃତି ସମୟରେ ଗୋଟିଏ ବିଚାର ସମସ୍ତେ କଲେ, ସମସ୍ତଙ୍କୁ ଲାଗିଲା, ସହକାର୍ଯ୍ୟ କଲେ, ସହଚିନ୍ତନ କଲେ । ଏହା ମାମୁଲି ଅନୁଭବ ଅଟେ । କିନ୍ତୁ ଗୋଟିଏ ସମାଜ ଅଛି, ତାର ଲୋକମାନେ ରାତିରେ ଶୋଇପଡ଼ିଲେ ଏବଂ ତାଙ୍କୁ ସମାନ ସ୍ୱପ୍ନ ଆସିବ । ଏକଥା ଶୁଣା ଯାଇ ନାହିଁ । ଏହାର କାରଣ ବ୍ୟକ୍ତି ବ୍ୟକ୍ତି ଭାବରେ ରହିଯାଏ । ଯେ ପର୍ଯ୍ୟନ୍ତ ସେ ସମଷ୍ଟିରେ ଲୀନ ହୋଇଯିବ ନାହିଁ । ସେପର୍ଯ୍ୟନ୍ତ ତାଙ୍କ ବ୍ୟକ୍ତିତ୍ୱ ରହିବ । ତାଙ୍କର ନିଜର ଗୋଟିଏ ଚେତନ ଅଛି । ସେହି ଚେତନରେ ପରମାତ୍ମା-ଚୈତନ୍ୟର ଅନୁଭବ ହୁଏ । ସେହି ଅନୁଭବ ବ୍ୟକ୍ତିଗତ ହିଁ ରହିବ । ଲକ୍ଷେ ଚେଷ୍ଟା କଲେ ମଧ୍ୟ ତାହା ସାମୂହିକ ହେବ ନାହିଁ । ତାର 'ଶୋଅରିଂଗ' (ଦେବା-ନେବା)

ହୋଇପାରିବ, ଅନୁଭବରୁ ଦେବା ନେବା ଚାଲିବ ଏବଂ ଅନୁଭବ ସମୃଦ୍ଧି ହେବ, ଏକଥା ଘଟିପାରିବ, କିନ୍ତୁ ଏହା ନିଜର ଅନୁଭବ ହେବ ।

ଦ୍ୱିତୀୟ ପ୍ରଶ୍ନ ହେଉଛି, ମରଣର । ଯେପରି ରୂପ, ସେହିପରି ମୃତ୍ୟୁ । ସମସ୍ତେ ଭିନ୍ନ ଭିନ୍ନ ଭାବରେ ମରିବେ । ଏହା ସଂଭବ ଯେ ଭୂକଂପ ହେଲା ତ ଏକା ସାଥିରେ ସମସ୍ତେ ମରିଗଲେ ।

*** *** ***

ଏକା ସାଂଗରେ ମରିବା ଗୋଟିଏ କଥା, ଏବଂ ଏକରୂପ ହୋଇ ମରିବା ଆଉ ଗୋଟିଏ କଥା । ଏକରୂପ ମରଣ ସମସ୍ତେ ମରି ପାରିବେ ନାହିଁ । ଏକାପ୍ରକାର ସମସ୍ତେ ଜନ୍ମ ମଧ ହେବେ ନାହିଁ । ଏକା ସମୟରେ ଅନେକ ଜନ୍ମ ହୋଇ ପାରନ୍ତି । ଏବଂ ଅନେକ ଲୋକଙ୍କ ମୃତ୍ୟୁ ମଧ ଏକାସାଂଗେ ହୋଇପାରେ । ଅର୍ଥାତ୍ ମୃତ୍ୟୁର ସମୟ ଗୋଟିଏ ହୋଇ ପାରେ । କିନ୍ତୁ ଯେଉଁ ପ୍ରକାର ମୃତ୍ୟୁ ମୋତେ ପ୍ରାପ୍ତ ହେବ ସେ ପ୍ରକାର ମୃତ୍ୟୁ ଆପଣଙ୍କୁ ଯେ ପ୍ରାପ୍ତ ହେବ ଏହା ହୋଇ ପାରେ ନାହିଁ । ସୁତରାଂ ମୃତ୍ୟୁ ଗୋଟିଏ ବ୍ୟକ୍ତିଗତ ବ୍ୟାପାର । ମୃତ୍ୟୁ, ସମାଧି, ସ୍ୱପ୍ନ, ଏବଂ ଜନ୍ମ ଏକାନ୍ତ ବ୍ୟକ୍ତିଗତ ଘଟଣା । କେବଳ ଗାଢ଼ ନିଦ୍ରା ହେଉଛି ଗୋଟିଏ ଅବସ୍ଥା ଯେଉଁଠି ଆମେ ସମସ୍ତେ ସଂପୂର୍ଣ୍ଣ ଭାବରେ ଲୁପ୍ତ ହୋଇଯାଉ । ସେଥିରେ ବ୍ୟକ୍ତିଗତ ଚୈତନ୍ୟ ବୁଡ଼ିଯାଏ । ଏହା ଏପରି ଗୋଟିଏ ଅବସ୍ଥା ଯେ ସେଥିରେ ଆମେ ସମସ୍ତେ ଏକରୂପ ହୋଇଯାଉ । ଏପରି ଅନୁଭବ ଯଦି ଆମର ନହୋଇଥାନ୍ତା ତେବେ କଦାପି ଅଦ୍ୱୈତ୍ୟ ସିଦ୍ଧି ହୋଇ ପାରନ୍ତା ନାହିଁ । ଯଦି ଜାଗୃତି, ସ୍ୱପ୍ନ, ସମାଧି ଏବଂ ମୃତ୍ୟୁ ଏହି ଚାରିପ୍ରକାର ଅନୁଭବ କରିବା ସଂଭବ ହୋଇପାରେ ଏବଂ ଗାଢ଼ ନିଦ୍ରାର ଅନୁଭୂତି ନ ଆସେ, ତାହାହେଲେ ତ ମଣିଷ ପ୍ରତ୍ୟେକଟି ଅବସ୍ଥାରେ ପୃଥକ୍ ଥାଆନ୍ତା । କିନ୍ତୁ ନିଦ୍ରାରେ ଏପରି ଏକ ଅସାଧାରଣ ଅନୁଭୂତି ଆସେ ଯେ, ପଶୁ ତାର ନିଜର ପଶୁ ପ୍ରବୃତ୍ତି ଏବଂ ମଣିଷ ତାର ମଣିଷ ପଣିଆ ହରାଇ ବସେ । ଏପ୍ରକାର ଅନୁଭବର ଆଧାରରୁ ଅଦ୍ୱୈତ ସିଦ୍ଧି ଲାଭ ହୁଏ ।

ମୋର ବକ୍ତବ୍ୟର ସାର ହେଉଛି ଯେ ଅନେକ ପ୍ରକାରର ଅନୁଭବ ଅଛି ଯାହା ଏକାନ୍ତ ଭାବରେ ନିଜର ବ୍ୟକ୍ତିଗତ ହିଁ ରହିବ ଏବଂ ସେଗୁଡ଼ିକ ଏକ ଅପରର ସହିତ ପାରସ୍ପରିକ ବୁଝାମଣା ଦ୍ୱାରା ହୋଇ ପାରିବ । କିନ୍ତୁ ମୋର ଯାହା ତାହା ମୋର ଏବଂ ଆପଣଙ୍କରଟା ଆପଣଙ୍କର ହୋଇ ରହିବ ।

ଏ ଯେଉଁ ଅନୁଭବ କଥା କୁହାଗଲା ସେ ଗୁଡ଼ିକୁ ଏଡ଼େଇ ଯାଇ ଯଦି ଜୀବନର ଅନେକ ବିଷୟ ନେଇ ଆମେ ଚିନ୍ତା କରିବା ତେବେ ଜୀବନ କ୍ଷେତ୍ରରେ କେତେବେଳେ କେଉଁଠି ସମାଧାନ ମିଳିଗଲେ ମଧ ଜୀବନରେ ପୂର୍ଣ୍ଣତା ଲାଭ ହେବ ନାହିଁ । ସମାଧି ହେବ, ସିଦ୍ଧି ହେବ ନାହିଁ । ଏଠାରେ ମୁଁ ସମାଧି ଏବଂ ସିଦ୍ଧି ମଧରେ ପାର୍ଥକ୍ୟ କରିଛି । ସମାଧିଠାରୁ ସିଦ୍ଧି ଭିନ୍ନ ଭିନ୍ନ ଅବସ୍ଥା । ଏଠାରେ ସିଦ୍ଧିର ଅର୍ଥ ଯୋଗ-ସିଦ୍ଧି ନୁହେଁ । ତାହା ଗୋଟିଏ ସ୍ୱତନ୍ତ୍ର ବିଷୟ ହୋଇଯାଏ । ଯାହା ଫଳରେ ମଣିଷ ହାତକୁ କିଛି ଆଶ୍ଚର୍ଯ୍ୟ ଧରଣର ଶକ୍ତି ଆସିଯାଏ, ସେଗୁଡ଼ିକ ଅଷ୍ଟ ସିଦ୍ଧି । ସେଗୁଡ଼ିକ

ମଧ୍ୟରୁ କେଉଁ କେଉଁଟା ଅନେକ ବଡ଼ ଜିନିଷ ହୋଇଥାଏ, ସେଗୁଡିକୁ ଅଷ୍ଟ ମହାସିଦ୍ଧି କୁହାଯାଏ । କିନ୍ତୁ ଏହି ଆଠ ପ୍ରକାର ସିଦ୍ଧିକୁ ଏକତ୍ର କରିବା ପରେ ମଧ୍ୟ ତାହା ଅଳ୍ପ ବୋଲି ଧରାଯାଏ । ବର୍ତ୍ତମାନ ଯେଉଁ ସିଦ୍ଧି କଥା ମୁଁ କହୁଛି, ତାହା ହେଲା ପୂର୍ଣ୍ଣତାର ସିଦ୍ଧି । ଅଣିମା, ମହିମା, ବଶିତ୍ୱ ନୁହେଁ । ତାହା ହେଲା ପୂର୍ଣ୍ଣମା ସିଦ୍ଧି । ତାହା ଗୋଟିଏ ପୂର୍ଣ୍ଣ ତତ୍ତ୍ୱ । ତାର ଅନୁଭବ ପାଇଁ ବ୍ୟକ୍ତିଗତ ଚେତନା ମଧ୍ୟରେ ପରମାତ୍ମା-ଚେତନାର ଉପଲବ୍ଧି ଆସିବା ଦରକାର ।

ଏଥିପାଇଁ ଧ୍ୟାନ ଉପାସନା ଇତ୍ୟାଦିକୁ ଶ୍ରଦ୍ଧାର ସହିତ ଗ୍ରହଣ କଲେ ଅନୁଭୂତିର ଗୋଟିଏ ବିସ୍ତୀର୍ଣ୍ଣ ସୀମା ଖୋଲିଯିବ । ତା ନହେଲେ ଅନୁଭୂତିର ସଂପୂର୍ଣ୍ଣ ଇଲାକା ବନ୍ଦ ରହିବ ।

ଗୁହ୍ୟତତ୍ତ୍ୱର କୌଣସି ପ୍ରୟୋଜନୀୟତା ଅନୁଭୂତ ନ ହେଲାପରି ଯଦି ମନର ସ୍ଥିତି ହୁଏ ତାହାହେଲେ ସେ ଅଲଗା କଥା । କିନ୍ତୁ ଏଥିପାଇଁ ପ୍ରତ୍ୟେକ ବ୍ୟକ୍ତିଙ୍କର ନିଜ ସହିତ ଏବଂ ଅନ୍ୟ ଲୋକଙ୍କ ସହିତ ସତ୍ୟନିଷ୍ଠ ରହିବା ଦରକାର । ପରିସ୍ଥିତି ଯାହାହେବ ସେଇ ପ୍ରକାର ଭାବରେ ରହିବାକୁ ହେବ । ମୋର ଜଣେ ମିତ୍ର ଅଛନ୍ତି, ସେ ବର୍ତ୍ତମାନ ଏପରି ମାନସିକ ଅବସ୍ଥାରେ ରହିଛନ୍ତି ଯେ, ନା ତାଙ୍କୁ କୌଣସି ଚିକିତ୍ସକ ସାହାଯ୍ୟ କରି ପାରିବେ, ନା ତାଙ୍କର କୌଣସି ମିତ୍ର ଏହି ଦୁଃଖରୁ ତାଙ୍କୁ ମୁକ୍ତ କରି ପାରିବେ । ଏହା ଏପରି ଏକ ଗୁରୁତ୍ୱପୂର୍ଣ୍ଣ ଅବସ୍ଥା । ଯେତେବେଳେ କି ଆପଣଙ୍କର ଏକାନ୍ତ ମିତ୍ର ସୁଦ୍ଧା ଆପଣଙ୍କର କୌଣସି କାମରେ ଲାଗିବ ନାହିଁ । ତାଙ୍କର ସହାନୁଭୂତି, ପ୍ରେମ ଇତ୍ୟାଦି ମିଳିପାରିବ । କିନ୍ତୁ ତାହା ତାଙ୍କର କୌଣସି ସାହାଯ୍ୟରେ ଲାଗିବ ନାହିଁ । ଏହି ସମୟରେ କିଛି ଏପରି ବସ୍ତୁ ଅଛି, ଯାହା ଆପଣଙ୍କ ସାହାଯ୍ୟରେ ଆସିପାରେ । ତାଙ୍କ ଉପରେ ଶ୍ରଦ୍ଧା ରଖି ପାରନ୍ତି ତ ଭଲକଥା, ନ ପାରିବେ ତ ସେହିଦିନ କ'ଣ ଘଟିବ କହିହେବ ନାହିଁ ।

### ଖ). ଧ୍ୟାନ ଆରୋପିତ ବସ୍ତୁ ତଥାପି ଉପକାରକ :

* ବାସ୍ତବିକ ଈଶ୍ୱର ଏବଂ ଈଶ୍ୱରଙ୍କର ସଂକେତ ଏ ଦୁଇଟି ମଧ୍ୟରେ ପାର୍ଥକ୍ୟ ।
* ତଥାପି ସଂକେତ ଅସଲ ବସ୍ତୁ ଆଡ଼କୁ ମନଯୋଗ ଆକର୍ଷଣ କରେ ।
* ସ୍ଥୂଳସଂକେତ ଏବଂ ମାନସିକ ଭାବନା ସମୂହର ଉପାଧିଗୁଡ଼ିକୁ ସିଡ଼ି ମନେକରି ତାଠାରୁ ଲାଭ ଗ୍ରହଣ କରିବାକୁ ହେବ ।
* ମୂର୍ତ୍ତି, ଚିତ୍ର, ଜ୍ୟୋତି ତରଂଗର ଧ୍ୟାନ ସାହାଯ୍ୟରେ ଗୁଣ ଚିନ୍ତନ ଓ ଗୁଣ ଗ୍ରହଣ ।

ଆମେ ଉପମା ବ୍ୟବହାର କରୁ, ଉଦାହରଣର ସାହାଯ୍ୟରେ ବିଷୟବସ୍ତୁକୁ ସ୍ପଷ୍ଟ କରିଥାଉ, ରୂପକକୁ ବ୍ୟବହାର କରୁ, ଚିତ୍ର ପ୍ରସ୍ତୁତ କରୁ- ଏ ସବୁଗୁଡ଼ିକ ହେଲା ଧ୍ୟାନର ବିଭିନ୍ନ ପ୍ରକାର ଭେଦ । ଗୋଟିଏ ବସ୍ତୁକୁ ଅନ୍ୟ ବସ୍ତୁ ଉପରେ ଆରୋପ କରିବାକୁ ଧ୍ୟାନ କହନ୍ତି । କୌଣସି ପ୍ରକାର ସଂକେତକୁ ବସ୍ତୁର ପ୍ରତିନିଧି ଭାବରେ ମନେକରିବା ହେଉଛି ଧ୍ୟାନର ତତ୍ତ୍ୱ । ଅର୍ଥାତ୍ ଧ୍ୟାନ ଗୋଟିଏ କଳ୍ପିତ ବସ୍ତୁ । କାଗଜ ଉପରେ ଆମେ ଆଲମାରୀ ଶବ୍ଦ ଲେଖୁ ଏବଂ ତା ଉପରେ କାଠର

ଆଲମାରୀ ଏଇ ଅକ୍ଷର ଗୁଡ଼ିକର ସାହାଯ୍ୟରେ ଆରୋପ କରିଥାଉ । ଏହା ହେଉଛି ଧାନ । ଏହା ଦ୍ୱାରା ଜ୍ଞାନ ବୃଦ୍ଧି ପାଏ ନାହିଁ । ସାହିତ୍ୟ ଛଡ଼ା ତାର ପୃଥକ୍ କୌଣସି ବ୍ୟବହାର ହିଁ ନାହିଁ । ଏହା କେବଳ ମାତ୍ର ଗୋଟିଏ ବସ୍ତୁର ଚିତ୍ର ଅଥବା ପ୍ରତୀକ । ପୃଥକ୍ ପୃଥକ୍ ଭାଷା ଭିତରେ ଏହିପରି ଗୋଟିଏ ପ୍ରକାର ବସ୍ତୁରୁ ଭିନ୍ନ ଭିନ୍ନ ପ୍ରତୀକ ହେବ । କିନ୍ତୁ କୌଣସି ସଂକେତକୁ ବସ୍ତୁର ପ୍ରତିନିଧିତ୍ୱ ଦେବା ଶେଷ ପର୍ଯ୍ୟନ୍ତ କଳ୍ପନା ହିଁ ଅଟେ । ମନେ କରନ୍ତୁ ଆପଣଙ୍କର ଘିଅର ପ୍ରୟୋଜନ । ଆପଣ ଗୋଟିଏ କାଗଜ ଉପରେ ଘିଅ କଥାଟି ଲେଖିଦେଲେ । ଏଥିରେ ଆପଣଙ୍କୁ ଘିଅ ମିଳିବ । ପ୍ରକୃତ ଘିଅ ଏବଂ କାଗଜ ଉପରେ ଲେଖାଥିବା ଘିଅ, ଏ ଦୁଇଟି ମଧ୍ୟରେ କୌଣସି ସାମଞ୍ଜସ୍ୟ ନାହିଁ । ଏ ଦୁଇଟି ବସ୍ତୁ ଭିତରେ ଯେତେଟା ପାର୍ଥକ୍ୟ ଅଛି, ବର୍ତ୍ତମାନ ଯଥାର୍ଥ ଈଶ୍ୱର ଏବଂ ଈଶ୍ୱରଙ୍କର ସଂକେତ ମଧ୍ୟରେ ସେତିକି ପାର୍ଥକ୍ୟ ରହିଛି ।

ଈଶ୍ୱର ଅନନ୍ତ ରୂପମୟ । ଯାହାର ଯେଉଁ ପ୍ରକାର ରୂପରେ ସମାଧାନ ମିଳିବ ତାପାଇଁ ସେହି ରୂପ ଯଥେଷ୍ଟ । କିନ୍ତୁ ରୂପ ମଧ୍ୟରେ ମୋର ସମାଧାନ ନାହିଁ । ରୂପ ଦ୍ୱାରା ଈଶ୍ୱରୀୟ ଭାବ ଜନ୍ମେ । ଏହା ଦ୍ୱାରା ବିକାଶ ଲାଭ ହୁଏ । ତାହାକୁ ଗ୍ରହଣୀୟ ବସ୍ତୁ ବୋଲି ଧରାଯାଏ । କିନ୍ତୁ ଧାନ ପାଇଁ ବସିଲି ଆଉ ଭରତ-ରାମଙ୍କ ରୂପ ଆଖି ସାମନାରେ ଭାସି ଉଠିଲା । ତାହାକୁ ମୁଁ ଶୁଦ୍ଧ ଈଶ୍ୱରଙ୍କ ଧାନ ବୋଲି ମନେ କରେ ନାହିଁ । ତାହା ହେଲା ଈଶ୍ୱରଙ୍କ ସଂକେତର ଧାନ । ତାହା ସଂକେତ, ତାହା ଧାନ । ମୁଁ ଆପଣଙ୍କୁ କାଗଜ ଉପରେ 'ଘିଅ' ଲେଖିଦେଲି । ତଦ୍ୱାରା ଆପଣଙ୍କର ଯେଉଁ ସମାଧାନ କାମ୍ୟ ତାହା କ'ଣ ଏହି ଘିଅ ଶବ୍ଦ ଦ୍ୱାରା ହେବ ? ତଥାପି ସଂକେତର ବ୍ୟବହାର ଅଛି । ସଂକେତ ଦ୍ୱାରା ଆମର ଧାନ ପ୍ରକୃତ ବହୁମୁଖୀ ହୁଏ । କିନ୍ତୁ ଯଦି ଆମର ଧାନ ସେଇଥିରେ କେନ୍ଦ୍ରୀଭୂତ ରହିବ, ତେବେ ପ୍ରକୃତ ବସ୍ତୁ ଦୂରରେ ରହିବ ଏବଂ ସଂକେତ ହିଁ ଆମ ହାତରେ ପଡ଼ି ରହିବ ।

ଏଥିପାଇଁ "ଧାନ ସମୟରେ, ପରମେଶ୍ୱରଙ୍କୁ ଧ୍ୟାନ କରିବା ସମୟରେ ମୁଁ ଗୁଣର କଳ୍ପନା କରିଥାଏ । ଏ ସଂବନ୍ଧରେ ଗୁରୁ ନାନକଙ୍କର ଗୋଟିଏ ବାକ୍ୟ ମୋ ନିକଟରେ ଖୁବ୍ ଆକର୍ଷଣୀୟ ମନେ ହୋଇଛି । "ବିନୁ ଗୁଣ କିତେ ଭଗତ ନ ହୋଇ' - ଗୁଣର ବିକାଶ ନ ହେଲେ ଭକ୍ତି ଲାଭ ହୁଏ ନାହିଁ ।

ଈଶ୍ୱର ଦୟାଳୁ, ଆମେ ଏହିପରି ମନେକରୁ । ତେବେ ଦୟା ଗୁଣର ସାକ୍ଷାତକାର ଆମର ଏହି ଦେହରେ ହେବା ଉଚିତ । ଦୟାଗୁଣ ହେଉ, ପ୍ରେମ ଗୁଣ ହେଉ, ତାହା ସମସ୍ତଙ୍କ ପ୍ରତି ହେଲେ ତେବେ ଯାଇ ତାହା ଈଶ୍ୱରୀୟ ଗୁଣ ହେବ । ଯଦି କୌଣସି ଜଣେ ବ୍ୟକ୍ତି ଉପରେ ହିଁ ସେହି ପ୍ରେମ ଶେଷ ହୋଇଗଲା,ତେବେ ତାହା ଈଶ୍ୱରୀୟ ପ୍ରେମ ନୁହେଁ, ମାନବ ପ୍ରେମୀ, ସୀମାବଦ୍ଧ ପ୍ରେମକୁ ପ୍ରେମ କୁହାଯାଏ ନାହିଁ । ପ୍ରେମ ବ୍ୟାପକ ହେବା ଦରକାର । ଗୋଟିଏ ଗୁଣ ଯଦି ଈଶ୍ୱରୀୟ ଗୁଣପରି ବ୍ୟାପକ ହେବ, ତେବେ ତାହା କେତେବଡ଼ ସାଧନା ଏବଂ ଜଣେ ବ୍ୟକ୍ତି ମଧ୍ୟ ଏଥିରେ ଯଦି ସିଦ୍ଧ ହୁଏ ତାହାହେଲେ ଯଥେଷ୍ଟ । ଚୈତନ୍ୟ ମହାପ୍ରଭୁ ଏ କାର୍ଯ୍ୟ କରି ପାରିଥିଲେ । ପ୍ରେମର ଅପୂର୍ବ ବିକାଶ ତାଙ୍କ ମଧ୍ୟରେ ପରିସ୍ଫୁଟ ହୋଇଥିଲା । ଆମେ ମନେକରୁ ଚୈତନ୍ୟ ମହାପ୍ରଭୁଙ୍କର ସାକ୍ଷାତ

ଦର୍ଶନ ଲାଭ ହୋଇଥିଲା ଏବଂ ସେ ପ୍ରେମଗୁଣର ଆବିଷ୍କାର କରିଥିଲେ । ଆମେ ମାନି ନେଇଛୁ, କୌଣସି ଜଣେ ମାନବ ହୃଦୟରେ କୌଣସି ଗୋଟିଏ ଗୁଣର ପରିପୂର୍ଣ୍ଣ ସାକ୍ଷାତକାର ହୋଇଥିଲା ଏବଂ ସମାଜରେ ତାହା ସ୍ୱୀକୃତିଲାଭ କରିଥିଲା କିନ୍ତୁ ଭଗବାନଙ୍କର ଆହୁରି ଅନେକ ଗୁଣ ଅଛି ଏବଂ ସେଗୁଡ଼ିକ ମଧ୍ୟ ମଣିଷ ପାଇଁ ଅତ୍ୟନ୍ତ ପ୍ରୟୋଜନୀୟ । ତା ଭିତରେ କେତେଗୁଡ଼ିଏ ବିଭିନ୍ନତା ରହିଛି । କେତେଗୁଡ଼ିଏ ପନ୍ଥା ଅଛି । କେହି କେହି ଈଶ୍ୱରଙ୍କୁ ମାତୃ ରୂପରେ ଦେଖନ୍ତି । କେହିବା ପିତୃ ରୂପରେ କେହିବା ଗୁରୁ ରୂପରେ । ଉପାସନା ବା ଧ୍ୟାନ ଏହିପରି ପୃଥକ୍ ପୃଥକ୍ ପ୍ରକାର ବିଭେଦ ଅଛି । ମୋର ଅଭ୍ୟାସ ହେଲା ଈଶ୍ୱରଙ୍କୁ ମାତୃ ରୂପରେ ଚିନ୍ତା କରିବା, ମୋର ଜୀବନରେ ମାତୃ ଭାବନାର ଆଧିକ୍ୟ ରହିଛି । ଗୁରୁଙ୍କ ପ୍ରତି ମଧ୍ୟ ମୋର ଅନ୍ତରରେ ବହୁତ ଶ୍ରଦ୍ଧା । ଈଶ୍ୱରଙ୍କ ପାଇଁ ଗୁରୁଭାବ ରହିଛି । କିନ୍ତୁ ଏହା ମଧ୍ୟ କିଛିଟା ଉପାଧି ପରି । ଏକଥା ବୁଝି ପାରି (୧୯୬୪ ଅଗଷ୍ଟ ମାସରେ) ଟାଇଫଏଡ଼ରେ ଅସୁସ୍ଥ ଥିବା ସମୟରେ ମୁଁ ତିନୋଟି ଭାବନାକୁ ବିସର୍ଜନ ଦେଇଛି । ଏହି ଅସୁସ୍ଥତା ସମୟରେ ମୋର ବହୁପ୍ରକାର ଚିନ୍ତନର ସୁଯୋଗ ହୋଇଥିଲା । ଆରମ୍ଭରେ ଚାରି ପାଂଚ ଦିନ ପାଇଁ ମୁଁ ଧ୍ୟାନରେ ବୁଡ଼ି ରହିଥିଲି । ଏହି ସମୟରେ ଏହି ତିନି ଭାବନାକୁ ଉପାଧି ମନେକରି ଛାଡ଼ିଦେଲି । କିନ୍ତୁ ପୁରୁଣା ଅଭ୍ୟାସ ହେତୁ ଈଶ୍ୱରଙ୍କୁ କେତେବେଳେ ମାତୃରୂପେ, କେତେବେଳେ ଗୁରୁ ରୂପେ ବର୍ଣ୍ଣନା କରୁଥିଲି । ସେଥିରେ ମୋ ଆଖିରୁ ଅନବରତ ଲୁହ ଗଡୁଥିଲା କିନ୍ତୁ ଏହି ଅଶ୍ରୁ ମଧ୍ୟ ଉପାଧି ବୋଲି ବୁଝି ନେବାକୁ ହେବ । ତାହା ଯେତେ ପବିତ୍ର ହେଲେ ମଧ୍ୟ ଯାଏ ଆସେ ନାହିଁ ।

କିନ୍ତୁ ଏହି ପ୍ରକାରର ଉପାଧି ଧ୍ୟାନ ପାଇଁ କାମରେ ଆସେ । ତାହାକୁ ଉପାଧି ମନେକରି ଛାଡ଼ି ଦେଲେ କିଛି ଲାଭ ହେବ ନାହିଁ । କିଛି ବାଟ ପର୍ଯ୍ୟନ୍ତ ମଣିଷ ପକ୍ଷରେ ଏହି ସବୁ ଉପାଧିର ପ୍ରୟୋଜନ ଅଛି । ଏହାର ଯଥାଯୋଗ୍ୟ ବ୍ୟବହାର ଦ୍ୱାରା ମଣିଷ ଆଗେଇ ଯାଇ ପାରେ । ବିଶେଷ କୌଣସି ମହାପୁରୁଷଙ୍କ କଥା ଛାଡ଼ି ଦିଆଯାଉ । ସେ କାମ ଆରମ୍ଭ କରିବା ସମୟରେ ହିଁ ଏସବୁ ଛାଡ଼ି ଦେଇ ଆଗେଇ ଯାଇ ପାରନ୍ତି । ଏଥିପାଇଁ ବୁଝିବା ଦରକାର ଯେ ପ୍ରଥମେ ଭଗବାନଙ୍କ ଗୁଣ ସମୂହର ଧ୍ୟାନ, ତାପରେ ସେ ଗୁଡ଼ିକର ଅନୁଶୀଳନ । ଏଥିପାଇଁ ମୂର୍ତ୍ତିଗୁଡ଼ିକ ମଧ୍ୟ କାମରେ ଲାଗନ୍ତି । ପୂର୍ବକାଳରେ ଅନେକ ଭକ୍ତ ମୂର୍ତ୍ତିର ଧ୍ୟାନ କରିଛନ୍ତି । ମୁଁ ନିଜ କଥା ଜାଣେ -- ମୁଁ ଭରତ-ରାମ ମିଳନର ଧ୍ୟାନ କରିଛି । ପିଲା ଦିନେ ମହାରାଷ୍ଟ୍ରର ସନ୍ଥ ପୁରୁଷ ମାନଙ୍କର ଭଜନ ପଢ଼ିବାର ଅଭ୍ୟାସ ଥିଲା । ଏଥିପାଇଁ କିଛି ବିଠୋବାଙ୍କର ଧ୍ୟାନ ମଧ୍ୟ କରିଛି । ବରୋଦାରେ ଗୌତମ ବୁଦ୍ଧଙ୍କର ଧ୍ୟାନ ମଧ୍ୟ କରୁଥିଲି । ସେତେବେଳରୁ ଏ ପ୍ରକାର ଚାଲୁଛି । ମଝି ମଝିରେ ଛାଡ଼ି ଦେଇଛି । ମଝି ମଝିରେ କରିଛି । ଏଠାରେ 'ବ୍ରହ୍ମ ବିଦ୍ୟା ମନ୍ଦିର' ରେ ମୁଁ ଗଂଗା ମୂର୍ତ୍ତିର ଧ୍ୟାନ କରିଛି । ସେତେବେଳେ ମୁଁ କହିଛି ଯେ ତାଙ୍କ ଦୃଷ୍ଟିରେ କାରୁଣ୍ୟ, ଚେହେରାରେ ପ୍ରସନ୍ନତା ହୃଦୟରେ ବାତ୍ସଲ୍ୟ ଏବଂ କଟିରେ ସାମର୍ଥ୍ୟର ପ୍ରକାଶ ରହିଛି । ସଂପୂର୍ଣ୍ଣ ଗୋଟିଏ ଚିତ୍ର ସମ୍ମୁଖରେ ଦଣ୍ଡାୟମାନ । ପଥର ମୂର୍ତ୍ତିରେ ଏସବୁ ଗୁଣ ଗୁଡ଼ିକର ସମାହାର ପ୍ରାପ୍ତ ହେଲା । ଏସବୁ ହେଲା ଧ୍ୟାନର ପ୍ରକ୍ରିୟା ।

ମୂର୍ତ୍ତି ଯେପରି ଭାବରେ କାର୍ଯ୍ୟରେ ଲାଗେ, ଅବତାରମାନଙ୍କ ଚିତ୍ର ମଧ୍ୟ ସେହିପରି କାର୍ଯ୍ୟରେ ଲାଗେ । ମୋ ଘର ଭିତରେ ଚିତ୍ର ରଖିବା ମୁଁ ପସନ୍ଦ କରେ ନାହିଁ, କିନ୍ତୁ ମାନସିକ ଭାବରେ ପସନ୍ଦ କରେ । ସେଥିରେ ବାଧା ଆସେ ନାହିଁ । ଯୀଶୁଙ୍କ ଧ୍ୟାନ ପ୍ରେମର ପ୍ରକୃଷ୍ଟତାର ପ୍ରତୀକ । ଯୀଶୁ ସମାଜ ପାଇଁ ଆତ୍ମୋତ୍ସର୍ଗ କରିଥିଲେ । ଖ୍ରୀଷ୍ଟାନ୍ ମାନେ ତାଙ୍କର ଧ୍ୟାନ କରନ୍ତି । ସେଥିରୁ ମନେହୁଏ ଦୁନିଆରେ ସେବା ପାଇଁ ଆମର ଜୀବନ ଉତ୍ସର୍ଗ କରିବା ଉଚିତ । ଏ ପ୍ରକାର ଧ୍ୟାନରେ ପ୍ରେମ ଓ ଚରମ ଆତ୍ମ ତ୍ୟାଗର ଚିନ୍ତା କରାଯାଏ । ମୂର୍ତ୍ତିର ଧ୍ୟାନ ହେଉ ବା ଅବତାରର ଚିତ୍ରର ଧ୍ୟାନ ହେଉ, ଧ୍ୟାନ ସମୟରେ ଯେଉଁ ବସ୍ତୁ ସାମନାରେ ରଖାଯାଏ ତାହା ଶେଷ ପର୍ଯ୍ୟନ୍ତ କୌଣସି 'ଗୁଣ' ଯାହା ଲାଭ କରିବାରେ ହିଁ ଧ୍ୟାନର ଉଦ୍ଦେଶ୍ୟ ନିହିତ ।

ଜ୍ଞାନ ଦେବ ଚିନ୍ତନିକା ହେଉଛି ଏ ବିଷୟ ପାଇଁ ଏକ ଉତ୍ତମ ଗ୍ରନ୍ଥ । ଏହି ଗ୍ରନ୍ଥରେ ଆଲୋକର ଦର୍ଶନ ମିଳିବ । କେଉଁଠି ଲାଲ, କେଉଁଠି ହଳଦିଆ, କେଉଁଠି ନୀଳ । ଧ୍ୟାନ ସମୟରେ ରଂଗର ଦର୍ଶନ ହୋଇଥାଏ । ଅଲଗା ଅଲଗା ରଂଗ ଦେଖାଯାଏ । କଳା ରଂଗର ବର୍ଣ୍ଣନା ମଧ୍ୟ ସେଥିରେ ଅଛି । କଳା ରଂଗ ଏପରି ଯେ ଅନ୍ୟ ରଂଗ ତା ଉପରେ ଲଗା ଯାଇ ପାରେ ନାହିଁ । ଏହା ମଧ୍ୟ ଗୁଣ ଉପାସନା । ଏ ଗୁଡ଼ିକ ମଣିଷ ପାଖରେ କିଛି କିଛି ସଂକେତ ସ୍ୱରୂପ । ଗୋଟିଏ ଗୋଟିଏ ସମାଜରେ ଗୋଟିଏ ଗୋଟିଏ ପ୍ରକାର ସଂକେତ । ଆମ ଦେଶରେ ପ୍ରେମର ରଂଗ ଲାଲ । କୌଣସି ମହାପୁରୁଷଙ୍କ ଦର୍ଶନ ପାଇଁ ଗଲେ ଏବଂ ଲାଲ ରଂଗର ଫୁଲ ପ୍ରସାଦ ସ୍ୱରୂପ ପାଇଲେ, ତେବେ ବୁଝିବାକୁ ହେବ ଯେ ଆପଣଙ୍କର ହୃଦୟ ଯେପରି ପ୍ରେମରେ ପୁରି ଉଠୁ ଆପଣ ସେହି ଆଶୀର୍ବାଦ ଲାଭ କରିବେ । ଧଳା ଫୁଲ ମିଳିଲେ ତ ହୃଦୟ ନିର୍ମଳ, ଜ୍ଞାନମୟ ହେଉ ଏହି ପ୍ରକାର ଆଶୀର୍ବାଦ ପାଇଲେ । ପ୍ରତ୍ୟେକ ସମାଜରେ ରଂଗ ସହିତ ଗୁଣର ଉଲ୍ଲେଖ ହୋଇଥାଏ । ତାହାରି ଧ୍ୟାନ କରାଯାଏ । ଗୌତମ ବୁଦ୍ଧଙ୍କ ଦୃଷ୍ଟିରେ ଧ୍ୟାନ ପରେ କରୁଣାର ସର୍ବତ୍ର ପରିବ୍ୟାପ୍ତ ଦର୍ଶନ ଲାଭ ହୁଏ । ତାର ମଧ୍ୟ କିଛି ରଂଗ ଥିବ । ଧ୍ୟାନ ସମୟରେ କୌଣସି ରଂଗ ଦେଖା ଯାଇଥିବ । ଯାହାର ଅର୍ଥକୁ ସେ କରୁଣା ବୋଲି ବୁଝିଥିଲେ । ସୁତରାଂ ଏହା ହେଉଛି ମଧ୍ୟ ଗୁଣ ଚିନ୍ତନ । ଆଲୋକ ଦ୍ୱାରା ଗୁଣ ଚିନ୍ତନ ।

ଅତଏବ, ଧ୍ୟାନ ପ୍ରତୀକାତ୍ମକ । ଏହି ପ୍ରତୀକ ଅନ୍ତରର ହୋଇପାରେ, ବାହାରର ମଧ୍ୟ ହୋଇପାରେ । ଅକ୍ଷର, ମୂର୍ତ୍ତି, ଲିଙ୍ଗ ଏସବୁ ପ୍ରତୀକ ହିଁ ଅଟେ । କିନ୍ତୁ କେତେକ ଲୋକଙ୍କର ଧାରଣା, ଏ ପ୍ରକାର ପ୍ରତୀକ ଗ୍ରହଣ କରିବା ଗୋଟିଏ ପ୍ରକାର ଭ୍ରମ । ସାରା ଦୁନିଆ ହେଉଛି ଭ୍ରମ, ତେଣୁ ତା ସହିତ ଏହି ଭ୍ରମକୁ ମଧ୍ୟ ମୁଁ ମାନିବାକୁ ରାଜି । କିନ୍ତୁ ଦୁନିଆକୁ ସତ୍ୟ ବୋଲି ମାନି ନେଇ ଏହାକୁ ଭ୍ରମ ବୋଲି ମାନି ନେବା କଥାକୁ ମୋର ବୁଦ୍ଧି ଗ୍ରହଣ କରୁନାହିଁ, ଯାହା କିଛି ବାଙ୍ମୟ ଅଛି, ଯାହା କିଛି ସାହିତ୍ୟ ଦେଖାଯାଏ, ତାର ସଂପୂର୍ଣ୍ଣତାଟା ହିଁ ବିକଳ୍ପ, ଯାହାକୁ ଯୋଗ ଶାସ୍ତ୍ରରେ ବସ୍ତୁ ଶୂନ୍ୟ ବା ଅବସ୍ତୁ ବୋଲି ଅଭିହିତ କରା ଯାଇଛି । ଜ୍ଞାନ ହେଉଛି ସବୁ ଯାକ ଶୂନ୍ୟ ।

କିନ୍ତୁ ଅନୁଭବରୁ ଜଣାଯାଏ ଯେ, ମୁଁ ଯଦି ଆପଣଙ୍କୁ ଚିଠି ଲେଖିବି, 'ଆପଣ ଗୋଟିଏ ଘଡ଼ି ପଠାଇ ଦିଅନ୍ତୁ ।' ଆପଣ ଏକଥାରେ ଘଡ଼ିଟିଏ ପଠାଇ ଦେବେ । 'ଘ' ଏବଂ 'ଡ଼ି' ପଠାଇଲେ

ନାହିଁ । ଆପଣଙ୍କ ମନକୁ ଏପରି ପ୍ରଶ୍ନ ଆସିଲା ନାହିଁ ଯେ, 'ଆପଣ ତ 'ଘ' ଏବଂ 'ଡ଼ି' ମାଗିଥିଲେ । ଆଉ 'ଘ' ଏବଂ 'ଡ଼ି' ଏହି ଦୁଇଟି ମଧ୍ୟରେ କ'ଣ ସଂବନ୍ଧ ? ଘଡ଼ି ଲେଖା ହେଲା ତ ଆପଣ ତାର ଅର୍ଥ ଯେ ଘଡ଼ି ତାହା ହିଁ ବୁଝିଗଲେ । ଏହାରି ନାମ ହେଲା ପ୍ରତୀକ ଉପାସନା । ଘଡ଼ି ଏଇ ଅକ୍ଷର ଏକ ପ୍ରତୀକ । ଯାହା ଉପରେ ଘଡ଼ିର ଉପାସନା କରାଯାଏ । ଆମେ ସମସ୍ତେ ଏହି ଆରୋପକୁ ସମର୍ଥନ କରିଛୁ । ଏଥିପାଇଁ ଆପଣଙ୍କର ଏବଂ ଆମ ମଧ୍ୟରେ ଆଦାନ ପ୍ରଦାନ (ବ୍ୟବହାର) ସଂଭବ ହୋଇପାରେ । ଇଂରାଜୀ ଭାଷାରେ ତାର ପ୍ରତୀକ 'ୱାଚ' କରା ଯାଇଛି । ଯଦି ଆମେ ସେମାନଙ୍କୁ କହିବା 'ଘଡ଼ି' ପଠାଇ ଦିଅ ତାହାହେଲେ ସେମାନେ କିଛି ପଠାଇବେ ନାହିଁ । କିନ୍ତୁ ଯଦି 'ୱାଚ' ପଠାଇ ଦିଅ ବୋଲି କହିବା ତେବେ ଘଡ଼ି ପଠାଇବେ; ଅର୍ଥାତ୍ ଘଡ଼ିର ଦୁଇଟି ପ୍ରତୀକ ରହିଛି । କେଉଁଟା ଘଡ଼ି ମୂର୍ତ୍ତି, କେଉଁଟା 'ୱାଚ' ମୂର୍ତ୍ତି । ଏହିପରି କେହି ବୈଷ୍ଣବ ଅଟନ୍ତି, କେହି ଶୈବ୍ୟ ଅଟନ୍ତି, କେହି ପୁଣି ଶାକ୍ତ ବୋଲି ପରିଚିତ । ଏଥିପାଇଁ ଯେଉଁ ସବୁ ଲୋକ ବିରୋଧ କରନ୍ତି ଏବଂ ସାହିତ୍ୟକୁ ଗ୍ରହଣ କରିବା କଥା କହନ୍ତି ସେମାନଙ୍କର ବକ୍ତବ୍ୟ ମୋର ବୋଧଗମ୍ୟ ହୁଏ ନାହିଁ । ପୁଣି ଏହି ସବୁ ଉଦାହରଣ ଛାଡ଼ି କିପରି ଭାବରେ ଶିକ୍ଷାଦାନ ଦିଆ ଯାଇପାରିବ ? ଶିକ୍ଷାଦାନର ପ୍ରକ୍ରିୟା, ସାହିତ୍ୟର ଆଧାର ସାମଗ୍ରିକ ଭାବରେ ଏହି ବିକଳ୍ପ ଉପରେ, ପ୍ରତୀକ ଉପରେ, ମୂର୍ତ୍ତି ଉପାସନା ଉପରେ ପ୍ରତିଷ୍ଠିତ ।

ୟାଠାରୁ ଉନ୍ନତ ଧରଣର କୌଣସି ବସ୍ତୁ ଅଛି କି ନାହିଁ ବୋଲି ଯଦି କେହି ପ୍ରଶ୍ନ କରନ୍ତି, ତେବେ ମୋର ଜବାବ ହେବ 'ଆଜ୍ଞା ହଁ ଅଛି' । ଏହି ବସ୍ତୁ ଯେ ଶେଷ କଥା ଏପରି କୁହାଯାଇ ପାରିବ ନାହିଁ । କିନ୍ତୁ ଏହାର ଅର୍ଥ ନୁହେଁ ଯେ 'ଏ ବସ୍ତୁ କିଛି ନୁହେଁ' । ଯେତେବେଳେ ଏ ଦୁନିଆକୁ ମିଥ୍ୟା ବୋଲି ମାନିବେ ତେବେ 'ଏହାର ଅସ୍ତିତ୍ୱ ନାହିଁ', ଏପରି ଅର୍ଥ କରାଯାଇ ପାରିବ । ଜଗତକୁ ଶୂନ୍ୟ ବୋଲି ମାନିନେବା ପରେ ଯାଇ ଏହାର ସମାପ୍ତି ଘଟିବ ।

ସାବରମତୀ ଆଶ୍ରମର କଥା । ସେଦିନ ସୂର୍ଯ୍ୟଗ୍ରହଣ ବା ଚନ୍ଦ୍ରଗ୍ରହଣ ଥିଲା । ସେଥିପାଇଁ ସେଦିନ ବା' (କସ୍ତୁରବା) ଏବଂ ଅନ୍ୟମାନେ ପୁରାତନ ପଦ୍ଧତି ଅନୁସାରେ ସ୍ନାନ, ଉପବାସ ଇତ୍ୟାଦି କରିଥିଲେ । ଏହି ଦିନମାନଙ୍କରେ ମୁଁ ଅଧ୍ୟାପନାର କାମ କରୁଥିଲି । ପିଲାମାନେ ଆଧୁନିକ ସମୟର ଥିଲେ । ସେମାନେ 'ବା' ଙ୍କୁ ଦେଖି ହସାହସି ହେଲେ, 'କେମ ବା ଗ୍ରହଣ ଥ୍ୟୁଁ ତେମାଁ ଶୁଁ ମୋଟୁଁ ଥଈ ଗୟୁଁ ? ରାହୁ ଚନ୍ଦ୍ରନେ ଖାଈ ଗୟୋ ଏନୁ ଶୁଁ ଥୟୁଁ ?' ଚନ୍ଦ୍ର, ପୃଥିବୀ ଓ ସୂର୍ଯ୍ୟର ମଧ୍ୟବର୍ତ୍ତୀ ସ୍ଥାନକୁ ଆସିଯାଇଛନ୍ତି, ସେଥିରେ କ୍ଷତି କ'ଣ ? ମୋତେ ପିଲାମାନେ ପ୍ରଶ୍ନ କଲେ, ୟା ସହିତ ସ୍ନାନ ଉପବାସର କି ସଂପର୍କ ? ସେତେବେଳେ ମୁଁ କିଛି କହିଲି ନାହିଁ । କିନ୍ତୁ ଦୁଇ ତିନି ଦିନ ପରେ ଗାଧୋଇବା ପାଇଁ ପିଲାମାନଙ୍କୁ ନଦୀକୁ ନେଇଗଲି । ସେମାନଙ୍କ ଭିତରୁ ଗୋଟିଏ ପିଲାକୁ ନେଇ ନଦୀରେ ବୁଡ଼ାଇଲି । ପିଲାଟି ବ୍ୟସ୍ତ ହୋଇ ପଡ଼ିଲା ଏବଂ ଅନ୍ୟ ଲୋକମାନେ ମଧ୍ୟ ଦେଖିବାକୁ ଲାଗିଲେ । ମୁଁ କହିଲି, ଏହାଦ୍ୱାରା କ'ଣ ହେଲା ? ଭିତରର ଆକାଶ ଓ ବାହାରର ଆକାଶ ଏଇ ଦୁଇଟି ମଧ୍ୟରେ ପାଣି ରହିଲା । ତାପରେ ସମସ୍ତେ ବୁଝିଗଲେ ।

ସାର କଥା ହେଉଛି, ଯେ ସହାନୁଭୂତି ନାମକ ଗୋଟିଏ ବସ୍ତୁ ଅଛି । ବିଶ୍ୱ ବ୍ରହ୍ମାଣ୍ଡର ଘଟଣାବଳୀ ସହିତ ସହାନୁଭୂତି ରହିବା ପ୍ରୟୋଜନ । ତାହା ଯଦି ନରହେ ତେବେ ଆମେ 'ସେନ୍‌ସିଟିଭ୍‌ନେସ' (ସଂବେଦନଶୀଳତା) ହରାଇ ବସିବୁ । ଭାଗବତରେ ଗୋଟିଏ ଶ୍ଳୋକରେ କୁହାଯାଇଛି, 'ସହାନୁଭୂତି ସକଳାନୁଭୂତିଃ' -- ବିଶ୍ୱର ଅନୁଭୂତି । ତାର ପ୍ରତିଟି ଅଂଶର ସହିତ ପ୍ରତିଟି ଅଣୁ-ପରମାଣୁ ସହିତ ବିଶ୍ୱାନୁଭୂତି ରହିବା ଦରକାର । ବିଜ୍ଞାନ ଆମକୁ କହିଛି ଯେ, ବିଜ୍ଞାନ ବିରୁଦ୍ଧରେ ଆମର କିଛି କହିବା ଉଚିତ ନୁହେଁ । କିନ୍ତୁ ଏହି ବିଷୟଟି (ଚନ୍ଦ୍ରଗ୍ରହଣ) ବିଜ୍ଞାନ ବିରୁଦ୍ଧ ମଧ୍ୟ ନୁହେଁ ।

ମୁଁ କହୁଥିଲି, ଯାହା କିଛି ବିଷୟ ଅଛି ତାହା ଧ୍ୟାନ ପାଇଁ କାମରେ ଲାଗିବ । ଯେପରି ପୂର୍ଣ୍ଣିମାର ଚନ୍ଦ୍ର । ବୌଦ୍ଧ ଧର୍ମରେ ପୂର୍ଣ୍ଣିମାର ଚନ୍ଦ୍ର ଖୁବ୍ ପ୍ରସିଦ୍ଧ । ତେଣୁ ପ୍ରାକୃତିକ ବସ୍ତୁ ସମୂହ ହେଲା ପ୍ରତୀକ ।

କେହି ମୋତେ ପଚାରି ପାରନ୍ତି, ଯେ ଶେଷ ପର୍ଯ୍ୟନ୍ତ ଧ୍ୟାନରୁ ଏହି ସମସ୍ତ ବସ୍ତୁ ଗୁଡ଼ିକର କ'ଣ ସମାପ୍ତି ଘଟିବ ? ମୁଁ ଏକଥାରେ 'ନା' କହିବି ନାହିଁ । 'ଗୀତାଇ ଚିନ୍ତନିକା' ରେ ମୁଁ ଲେଖିଛି ଯେ, ଶେଷରେ ଆମକୁ ଗୀତାକୁ ମଧ୍ୟ ଦୂରକୁ ଠେଲି ଦେବାକୁ ହେବ । ଆମେ ଶବ୍ଦର ବ୍ୟବହାର କରୁଛୁ । କିନ୍ତୁ ଏଥିରେ କୌଣସି ସନ୍ଦେହ ନାହିଁ ଯେ ଆମକୁ ସେଥିରୁ ମଧ୍ୟ ପୃଥକ ହେବାକୁ ହେବ । ଏଥିପାଇଁ ଆପଣମାନଙ୍କୁ ଉପାସନା, ପ୍ରାର୍ଥନା, ଇତ୍ୟାଦି ବାଟ ଦେଇ ଯିବାକୁ ହେବ କି ନାହିଁ ମୋର ସେଥିରେ କୌଣସି ବ୍ୟଗ୍ରତା ନାହିଁ, କାରଣ, ଯା ଛଡ଼ା ମଧ୍ୟ ମଣିଷ ବଂଚିପାରେ, ଯଦି ଆପଣଙ୍କ ମନ ଏହି ଅବସ୍ଥାରେ ଥାଏ । ମଣିଷ ଏହି ଅବସ୍ଥାରେ ଅଛି କି ନାହିଁ, ତାହା ଆପଣମାନେ ଦେଖି ନିଅନ୍ତୁ । କିନ୍ତୁ ଯଦି କେହି ଶିଶୁର ଭାବନା ନେଇ ମୋତେ ପ୍ରଶ୍ନ କରେ, ମୁଁ ତାକୁ ପରାମର୍ଶ ଦେବି ଯେ, ଏ ବାଟରେ ଗଲେ ଭଲ ହେବ । ଉପାସନା ଇତ୍ୟାଦିରେ କୌଣସି ସାର ନାହିଁ, ଏକଥା କହି ମୁଁ ପ୍ରତାରଣା କରି ପାରିବି ନାହିଁ, ତା ମଧ୍ୟରେ କିଛି ଗଭୀର ତତ୍ତ୍ୱ ଅବଶ୍ୟ ରହିଛି ।

## ୪. ସିଦ୍ଧି, ବିସ୍ମୟ, ସାକ୍ଷାତ୍‌କାର

କ. ଧ୍ୟାନ ଦ୍ୱାରା ସିଦ୍ଧି ବିସ୍ମୟକର ।

ଖ. କୁଣ୍ଡଳିନୀ ।

ଗ. ସାକ୍ଷାର୍ତକାର ନୁହେଁ ଆଶ୍ୱାସନା ।

### କ). ଧ୍ୟାନ ଦ୍ୱାରା ସିଦ୍ଧି ବିସ୍ମୟକର

* ସିଦ୍ଧି ସମାଧି ସମୟରେ ଉପଦ୍ରବ ।
* କେଉଁ କେଉଁ ସିଦ୍ଧି ଉଦ୍ଦେଶ୍ୟ ସହିତ କରାଯାଏ ।
* ଚିତ୍ତ ଶୁଦ୍ଧିର ପରିଣାମ ସ୍ୱରୂପ ସିଦ୍ଧି ଲାଭ ।

* ଶକ୍ତି କ୍ଷୟରେ ମୋର ଅନୁମୋଦନ ନାହିଁ, ମୁଁ ବୁଦ୍ଧି ସାହାଯ୍ୟରେ ଲକ୍ଷ୍ୟରେ ପହଂଚିବାକୁ ଚାହେଁ ।

* ଯୋଗ ସାହାଯ୍ୟରେ ରୋଗମୁକ୍ତ ଅର୍ଥାତ୍ ହରିଙ୍କ କୃପା ହରାଇ ଆରୋଗ୍ୟ ।

* ବିଜ୍ଞାନ ଅନେକ ବିସ୍ମୟକର କାର୍ଯ୍ୟ କରିଛି ।

ପତଞ୍ଜଳୀ ଯୋଗସୂତ୍ରରେ ଏ ବିଷୟରେ ଆଲୋଚନା ହୋଇଥିବା ଦେଖାଯାଏ । ଯୋଗସୂତ୍ରରେ ନାନା ପ୍ରକାର ସିଦ୍ଧିର ବର୍ଣ୍ଣନା ରହିଛି ଏବଂ ନିଜେ ମଧ୍ୟ ଉଲ୍ଲେଖ କରିଛନ୍ତି ଯେ, ସମାଧି କ୍ଷେତ୍ର ଏହିସବୁ ସିଦ୍ଧି ଉପସର୍ଗ ବା ଉପଦ୍ରବ ଭାବରେ ଧରାଯାଏ । 'ତେ ସମାଧୌ ଉପସର୍ଗା ବ୍ୟୁଥିଥାନେ ସିଦ୍ଧୟ-ବ୍ୟୁଥିଥାନ ଅର୍ଥାତ୍ ଅ-ସମାଧି ଅବସ୍ଥାରେ ଏସବୁ ବିଷୟ ଉଠିଲେ ସମାଧି ସମୟରେ କଷ୍ଟ ହୁଏ ।

ପତଞ୍ଜଳୀ ସୂତ୍ରରେ ଚିନ୍ତନ-ମନନ କରିବାର ଅଭ୍ୟାସ ମୋର ବହୁ ବର୍ଷରୁ ଅଛି । ଏଥିରୁ ମୁଁ ଏଇୟା ବୁଝିଛି ଯେ ସେ ଯେଉଁ ସବୁ ସିଦ୍ଧି ବିଷୟରେ ବର୍ଣ୍ଣନା କରିଛନ୍ତି ତା ଭିତରୁ କେଉଁ କେଉଁ ସିଦ୍ଧି 'କାଳ୍ପନିକ' ଏବଂ କେଉଁ କେଉଁ ସିଦ୍ଧି ବାସ୍ତବ 'ସମ୍ମତ' । ଯେଉଁସବୁ କାରଣରୁ ଏହି ସବୁ ସିଦ୍ଧି ହୁଏ ସେସବୁ କାରଣ ଯାହା ହେଉନା କାହିଁକି, ତାର ବିଶ୍ଳେଷଣ ଆମ ମନ ଭିତରେ ହେବା ଦରକାର । ଏ ପ୍ରକାର ସିଦ୍ଧିର ଉଲ୍ଲେଖ ସଂସ୍କୃତ ସାହିତ୍ୟ ଛଡ଼ା ଅନ୍ୟ ଦେଶର ସାହିତ୍ୟରେ ମଧ୍ୟ ଦେଖିବାକୁ ମିଳେ । ଲୋକମାନେ ଯାହାକୁ (ମିଷ୍ଟିସିଜ୍‌ମ୍) ରହସ୍ୟବାଦ ବୋଲି କହନ୍ତି ସେଥିରେ ମଧ୍ୟ ଏହିସବୁ ବିଷୟରେ ଉଲ୍ଲେଖ ଅଛି । ଖ୍ରୀଷ୍ଟ ଧର୍ମ, ଇସ୍‌ଲାମ ଧର୍ମ ସହିତ ଅନ୍ୟାନ୍ୟ ଆଉ କେତୋଟି ଧର୍ମରେ ଏହିସବୁ କଥା କୁହାଯାଇଛି ।

ବିଶ୍ଳେଷଣ କରିବା ପରେ ମନେ ହୁଏ ଯେ ଏମାନଙ୍କ ମଧ୍ୟରେ କିଛି କିଛି ସିଦ୍ଧି ଚିତ୍ତ ଶୁଦ୍ଧିର ପରିଣାମ ସ୍ୱରୂପ ହୋଇଥାଏ, ଅର୍ଥାତ ଏହି ସିଦ୍ଧିର କୌଣସି ପ୍ରୟୋଗ କରି ହୁଏ ନାହିଁ । ଏହିସବୁ ସିଦ୍ଧି ପ୍ରୟୋଗ କରିବାର ଜ୍ଞାନ ଯୋଗୀମାନଙ୍କର ଥାଇପାରେ ନ ଥାଇପାରେ ମଧ୍ୟ ।

ପୁଣି କିଛି କିଛି ସିଦ୍ଧି ଏପରି ଯେ, ଯାହା ଭକ୍ତି ପ୍ରେମ କରୁଣା ଏସବୁର ପୂର୍ଣ୍ଣତାରୁ ଆସିଥାଏ । 'ଉତ୍‌ପୁର' ଶବ୍ଦ ଯୋଗସୂତ୍ରର ଅଟେ । ତାର ଅର୍ଥ ହେଲା ପରିପୂର୍ଣ୍ଣ ପ୍ରେମ । ଭକ୍ତି ଯେତେବେଳେ ପରିପୂର୍ଣ୍ଣତା ଲାଭ କରେ ସେତେବେଳେ ତହିଁରୁ କିଛି ପରିମାଣରେ ସିଦ୍ଧି ଜନ୍ମ ଲାଭ କରେ । କିଛି କିଛି ସିଦ୍ଧି ଧ୍ୟାନ ପାଇଁ ହୋଇଥାଏ । ଏପରି କିଛି କିଛି ସିଦ୍ଧି ଅଛି ଯାହା ଉଦ୍ଦେଶ୍ୟ ପୂର୍ବକ ହୋଇଥାଏ ।

ଯେଉଁ ସବୁ ସିଦ୍ଧି ଧ୍ୟାନ ପାଇଁ ହୋଇଥାଏ ଏବଂ ଉଦ୍ଦେଶ୍ୟ ପୂର୍ବକ ସଂପନ୍ନ କରାଯାଏ ତାହାର ଆବଶ୍ୟକତା କ'ଣ ବୁଝିଲା ପରେ କୌଣସି କୌଣସି ଯୋଗୀ ପୁରୁଷ ଉପଯୁକ୍ତ କାରଣ ଥାଇ ସେଗୁଡ଼ିକର ପ୍ରୟୋଗ କରିଥାନ୍ତି ଏବଂ ସେମାନେ କିଛି କିଛି ଶକ୍ତିର ମଧ୍ୟ ଅଧିକାରୀ ହୋଇଥାନ୍ତି । ବର୍ତ୍ତମାନ କେହି ଯଦି ଏହାର ବୈଜ୍ଞାନିକ ପଦ୍ଧତି ତିଆରି କରିବେ ତେବେ ଏଥିପାଇଁ

ଗବେଷଣା ସହ ପ୍ରୟୋଗ କରିବାକୁ ଚାହିଁଲେ କରିପାରିବେ । କେହି ଯଦି ଏସବୁକୁ ନେଇ ପଡ଼ି ରହିବାକୁ ଚାହାନ୍ତି ତେବେ ତାହା ମଧ କରି ପାରନ୍ତି । କିନ୍ତୁ ଏସବୁ ସହିତ ଆଧାତ୍ମ ବିଦ୍ୟାର ଯେ କୌଣସି ସଂବନ୍ଧ ନାହିଁ ଏକଥା ଭଲ ଭାବରେ ବୁଝି ସେ ବିଷୟରେ ଚେଷ୍ଟା କରିବେ । ଯେଉଁ ସବୁ ସିଦ୍ଧି ଚିତ୍ତ ଶୁଦ୍ଧି କାରଣରୁ ଭକ୍ତି, ପ୍ରେମ, କରୁଣାର ପରିପୂର୍ଣ୍ଣତାର ଫଳରୁ ହୋଇଥାଏ ସେଗୁଡ଼ିକ ପ୍ରତି ମୋର ଆକର୍ଷଣ ଅଛି ଏବଂ ସେଗୁଡ଼ିକ ଆଧାତ୍ମିକ, ମୁଁ ଏପ୍ରକାର ମନେକରେ ।

ଯେଉଁଠାରେ ଗୁଣ ବିକାଶର ପ୍ରଶ୍ନ ଆସିଛି, ସେଠାରେ କିଛି କିଛି ଶକ୍ତି ଓ ସିଦ୍ଧି ପ୍ରକଟ ହୁଏ । ଆମେ କହୁ, 'ଆଜିକାଲି ଆଣବିକ ଯୁଗ' ରେ ଆମେ ଗୋଟିଏ ଜାଗାରେ ବସି 'ବେଲିଷ୍ଟିକ ଓୟେପନ୍' ଯେ କୌଣସି ସ୍ଥାନକୁ ପକାଇ ପାରିବା । ସେହିପରି ଆମ ପାଖରେ ମଧ କିଛି ହତିଆର ଥିବା ଦରକାର ଯାହାଦ୍ୱାରା କି ଆମେ ଗୋଟିଏ ସ୍ଥାନରେ ବସି କିଛି କାମ କଲେ ତାର ପ୍ରଭାବ ସାରା ଦୁନିଆରେ ପଡ଼ିବ । ଏକଥା କୌଣସି ଯୋଗୀ ଶୁଣିଲେ ହୁଏତ ମନେ କରିବେ ଯେ ମୁଁ ଯୋଗ ସିଦ୍ଧି କଥା କହୁଛି । କିନ୍ତୁ ମୁଁ ଯୋଗ ସିଦ୍ଧିର କଥା କହୁନାହିଁ । ଆମର ଏଠାରେ ଏହି ଗବେଷଣା ହେଉଛି ଯେ, ଏପରି କିଛି ସାମାଜିକ ପ୍ରକ୍ରିୟା ଉଦ୍‌ଭାବନ କରାଯାଆନ୍ତା ଯେ ଗୋଟିଏ ସ୍ଥାନରେ ବସି ସେହି ଗବେଷଣାର ବିଷୟ ବିଶ୍ୱର ସବୁସ୍ଥାନରେ ଆଦୃତ ହୋଇ ବିସ୍ତାର ଲାଭ କରି ପାରନ୍ତା ।

ମୁଁ ପିଲାଦିନେ ଭାବୁଥିଲି ଆମକୁ ସ୍ୱରାଜ ଲାଭ କରିବାକୁ ହେବ, ତାପାଇଁ ଶକ୍ତି ଲାଭ କରିବା ପ୍ରୟୋଜନ । ଏଥିପାଇଁ କିଛି ଯୋଗସିଦ୍ଧି ମିଳିଗଲେ ଭଲ ହୁଅନ୍ତା । ଏ ସମୟରେ ଶ୍ରୀ ଅରବିନ୍ଦଙ୍କ ସାଥି ବାରୀନ୍ଦ୍ରଜୀଙ୍କ ବିରୁଦ୍ଧରେ ବୋମା ତିଆରିର ମକଦମା ଚାଲୁଥିଲା । ଶ୍ରୀ ଅରବିନ୍ଦଙ୍କ ବିରୁଦ୍ଧରେ ମଧ ମକଦମା ଚାଲୁଥିଲା । ସ୍ୱାଭାବିକ ଭାବରେ ତାଙ୍କ ପ୍ରତି ଆମ ମନରେ ଅସୀମ ଶ୍ରଦ୍ଧା ଥିଲା । ଦିନେ ଆମେ ଖବରକାଗଜରୁ ପଢ଼ିଲୁ ଯେ ସେ ସମାଧିସ୍ଥ ହୋଇଛନ୍ତି ଏବଂ ସେ ଭୂମିରୁ ଆଠ ଇଞ୍ଚ ବା କିଛି ବେଶୀ ଉଚ୍ଚରେ ଉଠି ବସିଛନ୍ତି । ଅର୍ଥାତ ଭୂମି ବା ଆସନରୁ ସ୍ପର୍ଶ ମୁକ୍ତ ଅବସ୍ଥାନ ।

ତାହାହେଲେ ଯୋଗସିଦ୍ଧି ହେବା ଫଳରେ ବାରୀନ୍ଦ୍ରଜୀ ଶୂନ୍ୟରେ ବସିଛନ୍ତି । ଏ ଖବର ମୁଁ କାଗଜରେ ପଢ଼ିଥିଲି ଏବଂ ମୁଁ ବୁଝି ପାରିଲି ନାହିଁ କାହିଁକି ସେହିଦିନଠାରୁ ଏହି ବିଷୟ ପ୍ରତି ମୋର ଅଶ୍ରଦ୍ଧା ଜନ୍ମିଲା । ପରେ ଆଉ କେବେ ବି ଏହି ଜିନିଷ ପ୍ରତି ମୋର ଶ୍ରଦ୍ଧା ଜନ୍ମିଲା ନାହିଁ ।

ଆନି ବେସାନ୍ତଙ୍କୁ ନେଇ ଆଉ ଗୋଟିଏ ଘଟଣା କଥା କହୁଛି । ଦିନେ ସେ ମାନ୍ଦ୍ରାଜରେ ଭାଷଣ ଦେଉଥିଲେ ଏବଂ ଠିକ୍ ସେହିଦିନ ସେହି ସମୟରେ ସେ ବମ୍ବେର ସାର୍ ଭାଲଚନ୍ଦ୍ର ଭାଟୱାଡ଼େକରଙ୍କ ସହିତ କଥା କହୁଥିଲେ । ଭାଟୱାଡ଼େକର ଜଣେ ଖ୍ୟାତନାମା ଡାକ୍ତର ଥିଲେ । ତାଙ୍କ ଅଫିସରେ ସେହି ଦିନ ସେହି ସମୟରେ ଦୁଇଜଣ ମୁହାଁ ମୁହିଁ ବସି କଥାବାର୍ତ୍ତା କରୁଥିଲେ । ତାଙ୍କର ମାନ୍ଦ୍ରାଜର ବିଷୟ ବସ୍ତୁ ଏବଂ ଏହି କଥାବର୍ତ୍ତାର ବିଷୟ ବସ୍ତୁ ଅଲଗା ଅଲଗା ପ୍ରକାରର ଥିଲା । ଏକଥା ଶୁଣି ମୁଁ ଆଶ୍ଚର୍ଯ୍ୟାନ୍ୱିତ ହୋଇଥିଲି । ଏହାକୁ ମୁଁ ମିଛ କଥା କହିପାରିବି ନାହିଁ, କାରଣ ସେ ନିଜେ କହିଥିଲେ ଯେ ମୁଁ କଥାବର୍ତ୍ତା କରିଛି । ଏହା ଶୁଣି ମୋର ମନେ ହେଲା ଯେ — ଏପ୍ରକାର ହୋଇପାରେ ।

ଏ ଧରଣର ଅନୁଭବ ହେବା ସଂଭବ । ଏହି ସିଦ୍ଧିର ପ୍ରୟୋଗ ଡା: ବେସାନ୍ତ ଯେ କରିଥିଲେ ତାହା ନୁହେଁ, ଏପ୍ରକାର ହୋଇଥିବ । ଡା: ଭାଲଚନ୍ଦ୍ରଙ୍କର ଯେଉଁ ଅଭିଜ୍ଞତା ହୋଇଥିଲା ତାହା ଗଭୀର ଶ୍ରଦ୍ଧା ଏବଂ ଧ୍ୟାନ ଶକ୍ତିର ପରିଣତି । ତାଙ୍କର ଏବଂ ଡା: ବେସାନ୍ତଙ୍କ ମଧ୍ୟରେ ଏତେଦୂର ଘନିଷ୍ଠ ସଂବନ୍ଧ ହେବା ହୁଏତ ସଂଭବ । ଏପରି ହୋଇପାରେ ଯେ ଏହି ସମୟରେ ସେ ତାଙ୍କ ସଂପର୍କରେ ବାରଂବାର ଚିନ୍ତା କରିଛନ୍ତି ଏବଂ ଏହି ଦିନ ସେ ଭାବିଥିବେ ଏପରି ନୁହେଁ ଯେ କୌଣସି ଶକ୍ତିର ପ୍ରୟୋଗ ପାଇଁ ବରଂ, ଏପରି ଭାବରେ ଭାବିବାକୁ ପଡ଼େ । ସେଥିପାଇଁ ତାଙ୍କର ଏ ପ୍ରକାର ଅନୁଭୂତି ହୋଇଥିବ । ହୁଏତ ଏହି ପ୍ରକାରେ ଗୋଟିଏ ଦିଗରେ ଥିଲା ଶ୍ରଦ୍ଧା ଏବଂ ଅପର ଦିଗରେ ଧ୍ୟାନର ପ୍ରୟୋଗ ।

ମୋର ମନେ ହେଲା ଯେ ଏହାକୁ ମାନିବା ଭଳିଆ କିଛି ଅଛି । ଏ କାର୍ଯ୍ୟ ଅସମ୍ଭବ ନୁହେଁ ।

ଅଲୌକିକ ଘଟଣା ନେଇ ମୁଁ ଯଥେଷ୍ଟ ପରୀକ୍ଷା ନିରୀକ୍ଷା କରିଛି । ଯା ଭିତରୁ ଗୁଣ ବିକାଶ ପାଇଁ ଯାହା ଯାହା ଜଣାଯାଏ ତାହା ସତ୍ୟ ହୁଏ । ତାହା ଲାଭଦାୟକ ଏବଂ ଯୌଗିକ ଗୁଣ । ବାକି ସବୁ କାଳ୍ପନିକ । ଏ ଗୁଡ଼ିକ ମଧ୍ୟରୁ କିଛି ଆଶ୍ୱାସନାମୂଳକ ମଧ୍ୟ ହୋଇପାରେ । ଏଥିପାଇଁ ଏହା ଲାଭଦାୟକ ହୁଏ । କିଛି ମଧ୍ୟ କ୍ଷତିକାରକ ହୁଏ । ଏଥିପାଇଁ ଶ୍ରଦ୍ଧାକୁ ସାତ୍ତ୍ୱିକ ରାଜସିକ ଓ ତାମସିକ ଏହି ତିନିଟି ଭୂମିକାରେ ବିଭକ୍ତ କରାଯାଇଛି ।

ଅଲୌକିକତା ସଂପର୍କରେ ମୋର ନିଜର ଗୋଟିଏ ବିଚାର ଅଛି । 'ମହିଷି ପିଠିରେ ଚାବୁକ ମରା ହେଉଥିଲା କିନ୍ତୁ ସେଥିପାଇଁ ଜ୍ଞାନ ଦେବଙ୍କ ପିଠିରେ ଘା' ହେଉଥିଲା ।' ଏପରି ଅଲୌକିକ ଘଟଣା ମୁଁ ମାନିବାକୁ ରାଜି । ଯେହେତୁ ମୁଁ ବୁଝିପାରେ ଯେ, କରୁଣା ପାଇଁ ଜ୍ଞାନ ଦେବଙ୍କ ଚିତ୍ତ ମହିଷିର ଚିତ୍ତ ସହିତ ଏତେ ଏକରୂପ ହୋଇ ଯାଇଥିଲା ଯେ, ତାଙ୍କ ଉପରେ ତାର ପ୍ରଭାବ ପଡ଼ିଥିଲା, ଏବଂ ତାହା ଥିଲା କରୁଣାମୂଳକ । କିନ୍ତୁ ଗୋଟିଏ ପ୍ରାଚୀର ଥିଲା, ଜ୍ଞାନ ଦେବ ତା' ଉପରେ ବସିଥିଲେ ଏବଂ ପ୍ରାଚୀର ଚାଲିବାକୁ ଲାଗିଲା । ଏହାକୁ ଆମେ ପରୀକ୍ଷା କରି ଦେଖି ନାହୁଁ । ପ୍ରାଚୀର ଉପରେ ବସି ଚାଲିବା ପଛରେ କି ଆନନ୍ଦ ଅଛି ? ସାମାନ୍ୟ ଟ୍ରେନ ଲୋକେ ଭର୍ତ୍ତି ହୋଇ ଚାଲୁଥାଏ, ଏହା କ'ଣ କମ୍ ଆଶ୍ଚର୍ଯ୍ୟ ଜନକ କଥା ? ଏଥିରେ ମୋ ମନରେ ଆକର୍ଷଣ ନାହିଁ । ଏହା ଗୋଟିଏ ରୂପକ । ଜ୍ଞାନ ଦେବ ମହାରାଜ ପ୍ରାଚୀରକୁ ଚଳାଇଥିଲେ । କାହା ସମ୍ମୁଖରେ ଚଳାଇଲେ ? ଚାଂଗ ଦେବ ବାଘ ପିଠିରେ ବସି ଦେଖା କରିବାକୁ ଆସିଥିଲେ । ତାଙ୍କୁ ସ୍ୱାଗତ ଜଣାଇବା ପାଇଁ ଆଗେଇଯିବା କଥା । ଚାଂଗ ଦେବ ବାଘ ପିଠିରେ ଆସିଲେ, ତାଙ୍କୁ ସ୍ୱାଗତ ଜଣାଇବା ପାଇଁ ଜ୍ଞାନ ଦେବଙ୍କୁ ମଧ୍ୟ ଅଧିକ କିଛି କରିବା କଥା । ଆମେ ମଧ୍ୟ ଏହିପରି କରୁ । କେହି ଯଦି ଗୋଲାପଜାମ୍ ନେଇ ଆମକୁ ଦେଖା କରିବାକୁ ଆସେ ଆମେ ତାକୁ ଆମ୍ବ ଦେଇ ସ୍ୱାଗତ ଜଣାଉ ।

ଜ୍ଞାନେଶ୍ୱର ମହାରାଜ ସେହି ସମୟରେ ପ୍ରାଚୀର ଉପରେ ବସିଥିଲେ । ସେଥିପାଇଁ ସେ ପ୍ରାଚୀରକୁ ଚଲେଇ ପାରିଲେ । ଏପରି ଏକ କାହାଣୀ ପ୍ରଚଳିତ ଅଛି । କାହାଣୀଟି ରୂପକ ।

ଚାଂଗ ଦେବଙ୍କର ଜୀବନ ଏତେ ଅହିଂସାପୂର୍ଣ୍ଣ ଥିଲା ଯେ ବାଘ ମଧ୍ଯ ତାଙ୍କ ବଶତା ସ୍ୱୀକାର କରିଥିଲା ଏବଂ ସେ ବାଘ ଉପରେ ବସୁଥିଲେ । ଏ ଘଟଣାଟିରେ ତାଙ୍କର ଅହିଂସାର ଚମତ୍କାରୀତା ଦେଖାଯାଏ । ଆଉ ଜ୍ଞାନେଶ୍ୱର ମହାରାଜ ତ ଜଡ଼ ପଦାର୍ଥରେ ଚେତନା ସୃଷ୍ଟି କରିବାର କ୍ଷମତା ସଂପନ୍ନ ଯୋଗୀ ପୁରୁଷ । ଚାଂଗ ଦେବ ହିଂସାକୁ ଅହିଂସାରେ ପରିଣତ କରିବାର କ୍ଷମତା ରଖିଥିଲେ ଏବଂ ଜ୍ଞାନେଶ୍ୱର ଗୋଟିଏ ପାଦ ଆଗକୁ ଯାଇ ଜଡ଼କୁ ଚେତନାଶୀଳ କରିବାର କ୍ଷମତାଶୀଳ ମହାପୁରୁଷ ଥିଲେ ।

ଅନେକ ଦିନ ପୂର୍ବର କଥା । ବମ୍ବେରେ ଜଣେ ମେସ୍‌ମେରିଜିମ୍ କରୁଥିବା ବ୍ୟକ୍ତିଙ୍କ ସହିତ ସାକ୍ଷାତ ହୋଇଥିଲା । ସେ କହୁଥିଲେ ଯେ ତାଙ୍କ ସାମ୍ନାରେ ଯେଉଁ ବ୍ୟକ୍ତି ଅଛନ୍ତି, ସେ ତାଙ୍କ ମନ ଉପରେ ପ୍ରଭାବ ବିସ୍ତାର କରି ଯେ କୌଣସି କାର୍ଯ୍ୟ କରାଇ ପାରିବେ । ମୁଁ କହିଲି, ଯଦି ଏକଥା ହୋଇପାରିବ ତେବେ ମୋ ଉପରେ ପ୍ରୟୋଗ କରନ୍ତୁ । ଆଖିର ପଲକ ନ ପକାଇ ତାଙ୍କ ଆଡ଼କୁ ଏକ ଦୃଷ୍ଟିରେ ଚାହିଁ ରହିବାକୁ ସେ ମୋତେ କହିଲେ । ସେ ତାଙ୍କର ଆଙ୍ଗୁଠିଗୁଡ଼ିକୁ ନଚାଇବାକୁ ଲାଗିଲେ ଆଉ ମୁଁ ଦେଖିବାକୁ ଲାଗିଲି । ପନ୍ଦର ମିନିଟ୍ କଟିଗଲା, କୋଡ଼ିଏ ମିନିଟ କଟିଗଲା, କିନ୍ତୁ ମୋ ଉପରେ କୌଣସି ପ୍ରଭାବ ପଡ଼ିଲା ନାହିଁ । ସେତେବେଳେ ସେ କହିଲେ ଯେ ଆପଣଙ୍କର ସ୍ଥୈର୍ଯ୍ୟ ଶକ୍ତି ଅତ୍ୟନ୍ତ ଦୃଢ଼, ଏଥିପାଇଁ ପ୍ରଭାବିତ ହେଲେ ନାହିଁ । ମୁଁ ତାଙ୍କୁ ଗାଳି ଦେଇ କହିଲି ଦୁର୍ବଳମନା ଲୋକଙ୍କ ଦୁର୍ବଳତାର ସୁଯୋଗ ନେଇ ଆପଣ ଏ କି ପ୍ରକାର ବ୍ୟବସାୟ ଚଳେଇଛନ୍ତି ? କୌଣସି ଦୁର୍ବଳ ବ୍ୟକ୍ତିର ସୁଯୋଗ ନେଇ ତାର କଲ୍ୟାଣର କଥା କହିବାଟାକୁ ମୁଁ ଆଦୌ ସମର୍ଥନ କରେ ନାହିଁ ।

ଆଉ ଗୋଟିଏ 'ଶକ୍ତିପାତ' ଏପ୍ରକାର ଶ୍ରେଣୀର ପାଗଳାମୀ । କାହାରି ମଥା ଉପରେ ହାତ ରଖିବା ବା ଆଲିଙ୍ଗନ କରିବା ଦ୍ୱାରା ସଂଗେ ସଂଗେ ତାର ପରିବର୍ତ୍ତନ ହୋଇଯିବ । ସ୍ପର୍ଶ ମାତ୍ରକେ ଯଦି କେହି ମୁକ୍ତି ଦେଇ ଦିଅନ୍ତି ତେବେ ସେ ମୁକ୍ତିରେ ମୋର ପ୍ରୟୋଜନ ନାହିଁ । ମୁଁ ଭଲ ଭାବରେ ବୁଝିବା ପରେ ଯାଇ ଲକ୍ଷ୍ୟ ସ୍ଥଳରେ ପହଂଚିବାକୁ ଚାହିଁବି । ହୃଦୟ ଓ ମସ୍ତିଷ୍କକୁ ଦୁର୍ବଳ କରି ଦେଇ ଶ୍ରଦ୍ଧା ଶକ୍ତି ଉପରେ ନିର୍ଭର କରି ଯେଉଁ କାର୍ଯ୍ୟ କରାଯାଏ ତାହା ସର୍ବଦା କଲ୍ୟାଣକାରୀ ବୋଲି ପ୍ରମାଣିତ ହୁଏ ନାହିଁ । ତା ଭିତରେ ଯଦି କୃତାର୍ଥତାର ଆଭାସ ଥାଏ ତାହାହେଲେ ତ ସର୍ବନାଶ ! ତେବେ ପ୍ରଗତି ପାଇଁ କୌଣସି ସୁଯୋଗ ଆଉ ରହିବ ନାହିଁ ।

ଯୋଗ ସାଧନା ଦ୍ୱାରା ସିଦ୍ଧି ଲାଭ ହୁଏ କିନ୍ତୁ ତାହା ମୁକ୍ତି ନୁହେଁ । ଏହା ମୁକ୍ତି ମାର୍ଗର ପ୍ରତିବନ୍ଧକ । କେତେ ବା ତାର ମୂଲ୍ୟ ? ରାମକୃଷ୍ଣ ପରମହଂସ ଦେବ ଜଣେ ଯୋଗୀର କାହାଣୀ ଶୁଣିଥିଲେ । ଯୋଗୀ ଜଣକ କୋଡ଼ିଏ ବର୍ଷ ସାଧନା ପରେ ସିଦ୍ଧି ଲାଭ କଲେ ଏବଂ ପାଣି ଉପର ଦେଇ ପାଦରେ ଚାଲି ଚାଲି ଆସି କହିଲେ, 'ଦେଖ, ମୁଁ କିପରି ପାଣି ଉପର ଦେଇ ଚାଲି ଚାଲି ଆସିଲି' । ତାହା ଶୁଣି ରାମକୃଷ୍ଣ ଦେବ କହିଲେ -- 'ଏହାକୁ କ'ଣ ଯୋଗ କହନ୍ତି ? ଏହା କ'ଣ ମୁକ୍ତି ? ଦୁଇପଇସା ଦେଇ ନୌକାରେ ବସି ଯେଉଁ ନଦୀ ପାର କରାଯାଇ ପାରିବ ତାପାଇଁ କୋଡ଼ିଏ ବର୍ଷ ଧରି ସାଧନା କରିବାର କି ପ୍ରୟୋଜନ ଥିଲା ? କୋଡ଼ିଏ ବର୍ଷ ସାଧନାର ମୂଲ୍ୟ ମାତ୍ର ଦୁଇ ପଇସା !'

ଲୋକମାନେ ରୋଗ ନିବାରଣ କରିବା ପାଇଁ ଯୋଗର ଉପକାରିତାର କଥା କହିଥାନ୍ତି । କିନ୍ତୁ ଶାରୀରିକ ଲାଭ ପାଇଁ ଧ୍ୟାନର ବ୍ୟବହାର କରିବା ଆଧ୍ୟାତ୍ମିକ ଦୃଷ୍ଟିରୁ କ୍ଷତିକାରକ ହେବ । ଏଥିପାଇଁ ବଡ଼ ବଡ଼ ଯୋଗୀ ପୁରୁଷମାନେ ରୋଗ ସହ୍ୟ କରନ୍ତି । ରୋଗ ମୋଟେ ହେବ ନାହିଁ, ଏହା ହେଉଛି ଅସଲ ଯୋଗ । ଏହା ତ ଲାଭ ହୋଇ ପାରିନାହିଁ । ଏ ଅବସ୍ଥାରେ ରୋଗ ନିବାରଣ କରିବା ପାଇଁ ତାର ବ୍ୟବହାର କଲେ ହରିଙ୍କର ପାଦ ପଦ୍ମ ହରାଇ ଆରୋଗ୍ୟ ଲାଭ ହେବ ଅର୍ଥାତ୍ 'ଲାହେ କାରଣ ମୂଲ ଗଁଓ୍ୱାୟୋ' -- ଲକ୍ଷ୍ୟ ପାଇଁ ମୂଳକୁ ହରାଇବା ।

କିଛି ଅଲୌକିକ ଅବସ୍ଥା ଚିତ୍ତଶୁଦ୍ଧିର ପରିଣାମ ସ୍ୱରୂପ ଲାଭ ହୁଏ । କିଛି ଆଶ୍ଚର୍ଯ୍ୟ ଜନକ ଶକ୍ତି, ଅନ୍ୟ ଲୋକର ଶ୍ରଦ୍ଧାର ପରିଣାମ ସ୍ୱରୂପ ନିଜର ଅଧିକାରକୁ ଆସେ । ଆଉ କିଛି ଯୋଗ ସିଦ୍ଧିର ପରିଣାମରୁ ଘଟିଥାଏ । ଯାହାର ଚିତ୍ତ ନିର୍ମଳ, ଅହିଂସା ସଂପୂର୍ଣ୍ଣ ଭାବରେ ଆତ୍ମସାତ୍ ହୋଇ ବୈରୀଭାବରେ ଲେଶମାତ୍ର ଅବଶିଷ୍ଟ ନ ରହେ ଏପରି ମଣିଷର ସାପ କିଛି କରେ ନାହିଁ, ବରଂ ଆସି କୋଳରେ ବସେ । ଏହା ଏକ ଅଲୌକିକ ଅବସ୍ଥା ଏବଂ କୌଣସି ଛୋଟିଆ ଚମତ୍କାରୀତା ନୁହେଁ । ଚିତ୍ତ ଯଦି ନିର୍ବିକାର, ନିରହଂକାର ଓ ଅହିଂସାମୟ ହୁଏ ତାହା ହେଲେ ଏପରି ଅବସ୍ଥା ହୋଇପାରେ ।

ଆମେ ଜାଣୁ ଯେ ଏହିସବୁ ଯୌଗିକ ଚମତ୍କାର ଯାହା ଘଟେ, ତାହାଠାରୁ ଅନେକ ବେଶୀ ଚମତ୍କାର ବିଜ୍ଞାନ ଦ୍ୱାରା ସାଧିତ ହୁଏ । ନିରପେକ୍ଷ ଦୃଷ୍ଟିରୁ ଦେଖିବାକୁ ଗଲେ ଜଣାଯାଏ ଯେ, ଏହି ଜିନିଷ କେତେ ଅସାଧାରଣ — ଆଶ୍ଚର୍ଯ୍ୟଜନକ ଏବଂ ଯେ କୌଣସି ବ୍ୟକ୍ତି ଦିଲ୍ଲୀରେ ବସି କଥା କହନ୍ତି ଆଉ ଆମେ ଏଠାରେ ଓ୍ୱାର୍ଦ୍ଧାରେ ବସି ତାହା ଶୁଣିପାରୁ । ୟାଠାରୁ ବଡ଼ ଆଶ୍ଚର୍ଯ୍ୟଜନକ ଘଟଣା କୌଣସି ଯୋଗୀ କ'ଣ କରିପାରିବେ ?

ଖ). କୁଣ୍ଡଳିନୀ

* କୁଣ୍ଡଳିନୀ ଯୋଗ ଅର୍ଥାତ୍ ସୁଷୁମ୍ନାର ଜାଗରଣ ।
* ଚିନ୍ତନ ଶକ୍ତିକୁ ଚିନ୍ତାର କେନ୍ଦ୍ରଭୂମିକୁ ନେଇ ଆସିବା -- ଏହା ହେଉଛି କୁଣ୍ଡଳିନୀର କାମ ।
* କୁଣ୍ଡଳିନୀ-ପ୍ରକ୍ରିୟାର ପ୍ରୟୋଗ ମରଣ ସିଦ୍ଧି ପାଇଁ ।

କୁଣ୍ଡଳିନୀ ଯୋଗର ଅର୍ଥ ହେଲା ସୁଷୁମ୍ନା ନାଡ଼ୀକୁ ଜାଗ୍ରତ କରିବା । ଆମ ଦେହରେ ଏକଶହ ନାଡ଼ୀ କଥା ସ୍ୱୀକାର କରାଯାଇଛି । ସୁଷୁମ୍ନା ହେଉଛି ଏକଶହ ଏକତମ ନାଡ଼ୀ । ତାହା ଜ୍ୟୋତିରେ ପୂର୍ଣ୍ଣ । କିନ୍ତୁ ଶଙ୍କରାଚାର୍ଯ୍ୟ ତାଙ୍କର ବ୍ରହ୍ମସୂତ୍ର ଭାଷ୍ୟରେ କହିଛନ୍ତିଯେ, ନାଡ଼ୀ-ଫାଡ଼ୀ ଦ୍ୱାରା କିଛି ହେବ ନାହିଁ । ଯାହା ହେବ ତାହା ବିଦ୍ୟାର ସାମର୍ଥ୍ୟରୁ ହେବ । ଜ୍ଞାନେଶ୍ୱର, ଜ୍ଞାନେଶ୍ୱରୀର ଷଷ୍ଠ ଅଧ୍ୟାୟରେ କୁଣ୍ଡଳିନୀ ସଂପର୍କରେ ବିସ୍ତୃତ ଆଲୋଚନା କରିଛନ୍ତି । ମୂଳ ଗୀତାରେ ଏପରି ଉଲ୍ଲେଖ ନାହିଁ । ଜ୍ଞାନ ଦେବ କହିଛନ୍ତି ଯେ, "ଆପଣଙ୍କପରି ରସଜ୍ଞ ଶ୍ରୋତା ମିଳିଯିବାରୁ ସବୁ

ଆବରଣ ମୁକ୍ତ ହୋଇ ଘଣ୍ଟାପରେ ଘଣ୍ଟା କହିଗଲି । ମୋର ମନେ ହୁଏ, ତାଙ୍କ ସାମ୍ନାରେ ବୋଧହୁଏ ନିବୃତ୍ତିନାଥ ବସିଥିଲେ । ନିବୃତ୍ତିନାଥଙ୍କର ଯୋଗମାର୍ଗ ସଂବନ୍ଧରେ ଜ୍ଞାନଥିଲା, ସଚ୍ଛିନ୍ଦ୍ରନାଥ, ଗୋରକ୍ଷନାଥ ଏମାନଙ୍କର ପରମ୍ପରା ସୂତ୍ରରେ ଜ୍ଞାନଦେବ ମହାରାଜାଙ୍କର ଯୋଗ ସଂପର୍କରେ ଜ୍ଞାନ ହୋଇଥିଲା । କିନ୍ତୁ ଜ୍ଞାନଦେବଙ୍କର ବୁଦ୍ଧି ଖୁବ୍ ତେଜ ଥିଲା । ଏଥିପାଇଁ ଭକ୍ତି ପ୍ରସଙ୍ଗରେ ସେ କହିଛନ୍ତି ଯେ ଭକ୍ତି ଆଗରେ ଯୋଗ ସାଷ୍ଟାଙ୍ଗ ପ୍ରଣିପାତ କରେ । ଜ୍ଞାନେଶ୍ୱରୀ ସଂପୂର୍ଣ୍ଣ ପଢ଼ି ଶେଷ କରିବାପରେ ମଧ ମୋର କୁଣ୍ଡଳିନୀ ସଂବନ୍ଧରେ କୌଣସି ଆକର୍ଷଣ ହୋଇନାହିଁ ।

କୁଣ୍ଡଳିନୀ ସଂବନ୍ଧରେ ଯାହା ସାର କଥା ତାହା ଏହିପରି ଭାବରେ ମୋର ବୋଧଗମ୍ୟ ହେଲା- ଏହା ହେଲା, ଆମର ଯାହା ବ୍ୟାକ୍‌ବୋନ୍, ଅର୍ଥାତ୍ ମେରୁଦଣ୍ଡ ତାହାହିଁ କୁଣ୍ଡଳିନୀ । ମେରୁଦଣ୍ଡର ହାଡ଼ ମଧରେ ଯେଉଁଠାରେ ଜ୍ଞାନତନ୍ତୁ ଥାଏ ସେଠାରେ ଆମକୁ କୁଣ୍ଡଳିନୀ ଯୋଗ ସାଧନ କରିବାକୁ ହେବ । କୁଣ୍ଡଳିନୀ-ଯୋଗ ସାଧନାର ଅଭିଜ୍ଞତା ମୋର ଅଛି, ଏପରି କଥା ମୁଁ କହୁନାହିଁ, କିନ୍ତୁ ଆମେ ଅତିକମ୍‌ରେ ଦେହକୁ ସିଧାରଖି ବସି ପାରିବା ତ । ଯେତେ ସମ୍ଭବ ହେବ ସେତେ ସିଧା ରଖିପାରିବା । ନଇଁକରି ବସିଲେ ଜ୍ଞାନତନ୍ତୁ ଜାଗରିତ ହୁଏ ନାହିଁ । ଏଥିପାଇଁ ଜ୍ଞାନତନ୍ତୁ ଜାଗରିତ ରଖିବାପାଇଁ ସରଳ ଭାବରେ ବସିବା ଉଚିତ । ଏକଥା ବିଜ୍ଞାନ ମଧ ସ୍ୱୀକାର କରିଛି ।

ଇଡ଼ା ପିଙ୍ଗଳା ଓ ସୁଷୁମ୍ନା ନାକ ବାଟରେ ପ୍ରବାହିତ ହେଉଥିବା ନାଡ଼ୀ, ଶ୍ୱାସ-ପ୍ରଶ୍ୱାସ ପାଇଁ ପ୍ରଶ୍ୱାସରେ ଇଡ଼ା-ପିଙ୍ଗଳା ଏବଂ ଦୁଇଟିର ମଝିରେ ଅଛି ସୁଷୁମ୍ନା । ସୁଷୁମ୍ନା ମେରୁଦଣ୍ଡର ମଧବର୍ତ୍ତୀ ସ୍ଥାନରେ ଅବସ୍ଥିତ । ବ୍ୟାକ୍‌ବୋନ୍ କହିଲେ ହାଡ଼କୁ ବୁଝାଯାଏ । କିନ୍ତୁ ତା ଭିତର ଦେଇ ଏହି ସୁଷୁମ୍ନା ନାଡ଼ୀ ପ୍ରବାହିତ ହୁଏ, ବିସ୍ତୃତ ହୁଏ । ଏପରି କଳ୍ପନା କରାଯାଇଛି । ମୋଟ କଥା ହେଉଛି ଯେ, ତୁମର ସମସ୍ତ ଚିନ୍ତା ସବୁକୁ ଚିନ୍ତନ କେନ୍ଦ୍ରରେ ନେଇ ରଖିଦିଏ । ଚିନ୍ତନ ଶକ୍ତିକୁ ଚିନ୍ତାର କେନ୍ଦ୍ରଭୂମିରେ ନେଇ ରଖିବା ହେଲା କୁଣ୍ଡଳିନୀର କାର୍ଯ୍ୟ । ଚିନ୍ତନ କେନ୍ଦ୍ର ହେଉଛି ଭ୍ରୂ ମଧ । ଦୁଇ ଆଖିର ମଧବର୍ତ୍ତୀ ସ୍ଥାନ । ଏହି ଯେଉଁ ମଧବର୍ତ୍ତୀ ସ୍ଥାନ ଚିନ୍ତନ କେନ୍ଦ୍ର, ସେଠାରେ ସମସ୍ତ ଚିନ୍ତାରାଶୀ ଏକତ୍ରିତ ହୁଏ । ଯୌଗିକ ପ୍ରକ୍ରିୟା ହେଲା ଶରୀରର ସମସ୍ତ ଶକ୍ତିକୁ ଚାରିଆଡୁ ବାହାର କରିନେବା ଏବଂ ତାହାକୁ ସମଗ୍ର ଚିନ୍ତାର କେନ୍ଦ୍ରଭୂମିରେ ଏକତ୍ରିତ କରିବା । ଏହାକୁ କୁଣ୍ଡଳିନୀ ଶକ୍ତି ଜାଗ୍ରତ କରିବା କୁହନ୍ତି । ପୁଣି କଣ ହୁଏ, ଦେହର ଗୋଟିଏ ଗୋଟିଏ ଅଂଶ ଶୁଖିଯାଏ । ପାଣିଅଂଶ, ତେଜ ଅଂଶ, ବାୟୁଅଂଶ ସବୁ ଶୁଖିଗଲା । କୁଣ୍ଡଳିନୀ ଯୋଗ ସାଧନ କରୁଥିବା ପୁରୁଷ ଭୋଜନ କରନ୍ତି ନାହିଁ । ଏହା ତ ଜଣା କଥା । ଉପବାସ କରିବା ସମୟରେ ପ୍ରଥମେ ଚର୍ବି ଶୁଖିଯାଏ । ତାପରେ ଜଳୀୟ ଅଂଶ ଶୁଖିଯାଏ । ଏପରି ହେଉ ହେଉ ମଣିଷ ମୃତ୍ୟୁ ମୁଖରେ ପତିତ ହୁଏ । ଏହା ଯେ ମୃତ୍ୟୁର ପ୍ରକ୍ରିୟା, ଏପର୍ଯ୍ୟନ୍ତ ସମସ୍ତେ ଜାଣନ୍ତି । ଇଂରାଜୀ ଭାଷାରେ ଗୋଟିଏ ଶବ୍ଦ ଅଛି - 'ବ୍ରିଙ୍କ୍‌ମ୍ୟାନସିପ୍' ଯାହାର ଅର୍ଥ ହେଉଛି, ଯୁଦ୍ଧ ହେବାର ପୂର୍ବ ମୁହୂର୍ତ୍ତ ପର୍ଯ୍ୟନ୍ତ ଆଲୋଚନା କରି, ଯୁଦ୍ଧ ହେବାକୁ ନ ଦେବା । ସେହିପରି ମୃତ୍ୟୁର ଦ୍ୱାର ପର୍ଯ୍ୟନ୍ତ ଦେହକୁ ନେଇଯିବା, କିନ୍ତୁ ମୃତ୍ୟୁ ହେବାକୁ ନ ଦେବା । ଏହାର ତାତ୍‌ପର୍ଯ୍ୟ ହେଉଛି ଯେ (ଧିରେ ଧିରେ) ମୃତ୍ୟୁର ନିକଟରୁ ନିକଟତର ହେବା, ମୃତ୍ୟୁ ସମୟରେ କଣ ହୁଏ ସେସବୁ ଅନୁଭବ କରିବା ଏବଂ ଅନୁଭବ କରିବା ପରେ ପୁଣି

ଧିରେ ଧିରେ ଦେହକୁ ସତେଜ କରିବା ଆହାର ନେବା, ପ୍ରକ୍ରିୟାଟି ଏହିପରି ।

କୁଣ୍ଡଳିନୀର ଶକ୍ତିକୁ ଜାଗ୍ରତ କରିବା ହେଉଛି ମୁଖ୍ୟତଃ ହଠ୍ ଯୋଗର ପ୍ରକ୍ରିୟା ବୋଲି ଧରାଯାଏ । ପତଞ୍ଜଳି ରାଜଯୋଗ ପ୍ରକ୍ରିୟାର କଥା କହିଛନ୍ତି । ପତଞ୍ଜଳି ଯୋଗ ଶାସ୍ତ୍ରରେ, ଯାହାକୁ କୁଣ୍ଡଳିନୀ ପ୍ରକ୍ରିୟା କୁହାଯାଏ, ତାହା ମିଳେ ନାହିଁ । ତାଙ୍କ ଭାଗ୍ୟରେ ଏହା ଅଛି । ଏହା ହେଉଛି ଏକେବାରେ ଯୋଗ ପର୍ଯ୍ୟାୟର ପ୍ରକ୍ରିୟା । ଉପବାସ କରିବା ଫଳରେ ଦେହର ମୁକ୍ତ ଅଂଶ ଶୁଖିଯାଉଥାଏ । ଏହି ପ୍ରକାର ଅବସ୍ଥା ଉପସ୍ଥିତ ହେବାପରେ ପୁଣି ଯଦି ଦେହ ରଖିବାକୁ ହେବ ତ ରଖ, ନ ରଖିବାକୁ ଚାହିଁଲେ ଛାଡ଼ିଦିଅ । ଏହାର ଦେହ ତ୍ୟାଗ ପ୍ରକ୍ରିୟା ଏହିପରି । ଜ୍ଞାନଦେବ ମହାରାଜ ଏହି କଥା ଜାଣିଥିଲେ । ସେ ସେଇୟା କରିଥିଲେ । ସେଥିପାଇଁ ତାହା ହେଉଛି ମରଣ ସିଦ୍ଧର ପ୍ରକ୍ରିୟା ।

## ଗ). ସାକ୍ଷାତକାର ନୁହେଁ, ଆଶ୍ୱାସନ (ଆଶ୍ୱାସ ପ୍ରାପ୍ତି)

* ଧ୍ୟାନର ପରିଣାମରୁ ଈଶ୍ୱର ସାକ୍ଷାତକାର ହୁଏ ।
* ମଣିଷର ବାସନା ଅନୁସାରେ ଈଶ୍ୱର ଦର୍ଶନ ଦେଇଥାନ୍ତି ।
* ସାକ୍ଷାତକାର ଦୁଇପ୍ରକାର: ଧ୍ୟାନରୂପ, ପ୍ରେମ ରୂପ ।
* ବୁଦ୍ଧିଗତ ସାକ୍ଷାତକାର, ସମାଧିଗତ ସାକ୍ଷାତକାର ।
* ପରମାତ୍ମା-ସାକ୍ଷାତକାର ଅତ୍ୟନ୍ତ ଗହୀର ବିଷୟ । ସାକ୍ଷାତକାର ଅର୍ଥାତ୍ ସର୍ବତ୍ର ଭଗବତ୍ ଦର୍ଶନ ।
* ଆଶ୍ୱାସନ: ଆକସ୍ମିକ ଦର୍ଶନ ।
* ସାକ୍ଷାତକାର: ସତତ ଦର୍ଶନ
* ଆକସ୍ମିକ ଦର୍ଶନକୁ ଚରମ ପର୍ଯ୍ୟାୟ ମନେକରି ସାକ୍ଷାତକାରର ପଥକୁ ଯେପରି ସଂକୁଚିତ କରା ନ ଯାଏ ।
* ଭଲ ଲାଗିବାର ମୋହରେ ଯେପରି ଶ୍ରେୟକୁ ନ ହରାଇବା ।

ଭଗବାନ୍ ଯେପରି ଅବ୍ୟକ୍ତ ସେହିପରି ବ୍ୟକ୍ତ ମଧ୍ୟ । ସେ ସାକାର ଏବଂ ନିରାକାର ମଧ୍ୟ । ଈଶ୍ୱର ଅଛନ୍ତି ପୁଣି ନାହାନ୍ତି । ସେ ଯେପରି ସଗୁଣ, ସେହିଁପରି ନିର୍ଗୁଣ ମଧ୍ୟ । ସେ ସବୁ ପ୍ରକାର ହୋଇ ପାରନ୍ତି । ଆମ ଆଖି ଆଗରେ ଯେଉଁ ବିଶ୍ୱ ଠିଆ ହୋଇଛି, ସେସବୁ ହେଉଛି ଈଶ୍ୱରଙ୍କ ରୂପ । କିନ୍ତୁ ଆମେ ତାଙ୍କୁ ଏହିପ୍ରକାର ପରିଚୟର ନିଦର୍ଶନ ରୂପରେ ଦେଖୁନାହିଁ, ଆମେ ନିଜର ଚର୍ମଚକ୍ଷୁ ଦ୍ୱାରା ଉପରର ଚେହେରା, ଆଉ ଆକାର ମାତ୍ର ଦେଖୁ । ଅନ୍ତର୍ନିହିତ ତତ୍ତ୍ୱକୁ ଜାଣିବାକୁ ଚେଷ୍ଟା କରୁନାହୁଁ ।

ଏହାଛଡ଼ା ଧ୍ୟାନ ପ୍ରକ୍ରିୟା ସାହାଯ୍ୟରେ ମଣିଷର ଯାହାର ଯେପରି ବାସନା ଥାଏ ସେହି

ରୂପରେ ଭଗବାନ ତାହାକୁ ଦେଖା ଦିଅନ୍ତି । ଉପାସକମାନେ ନିଜ ଚିତ୍ତର ଏକାଗ୍ରତା ପାଇଁ ଏବଂ ଇନ୍ଦ୍ରିୟାସକ୍ତିରୁ ମୁକ୍ତିଲାଭ କରିବାପାଇଁ ଧ୍ୟାନର କଳ୍ପନା କରିଛନ୍ତି । କେହି ବିଷ୍ଣୁଙ୍କର ଚତୁର୍ଭୁଜ ରୂପର କେହି କୃଷ୍ଣଙ୍କର, କେହି ରାମଚନ୍ଦ୍ରଙ୍କର ପୁଣି କେହି ଯୀଶୁଙ୍କର ଧ୍ୟାନ କରନ୍ତି ଏବଂ ଏହି ରୂପରେ ଭଗବାନଙ୍କୁ ମନେ ମନେ ଚିନ୍ତା କରନ୍ତି । କେହି କେହି କୌଣସି ରୂପକୁ ତୀବ୍ର ଭାବରେ ଧ୍ୟାନ କରନ୍ତି । ଦିନରାତି ତାଙ୍କର ଚିନ୍ତକମାନେ, ମନନ କରନ୍ତି, ତାଙ୍କୁ ଭାବନ୍ତି । ଏସବୁ କରିବା ଦ୍ୱାରା ସେମାନଙ୍କର ସମାଧାନ ପାଇଁ ଭଗବାନ ଏସବୁ ରୂପ ଅବଲମ୍ବନ କରି ଆସିପାରନ୍ତି ଏବଂ ଏହି ଭାବରେ ତାଙ୍କର ସମାଧାନର ବ୍ୟବସ୍ଥା କରିପାରନ୍ତି ।

ତାଙ୍କର ଭଗବତ୍ ରୂପର ଦର୍ଶନ ହେଉ ବା ନ ହେଉ, ତାର କୌଣସି କଳ୍ପନା ଅନ୍ୟ ଲୋକଙ୍କ ମନକୁ ଆସି ପାରେନାହିଁ । କିନ୍ତୁ ଧ୍ୟାନ ସମାପ୍ତ ହେବାପରେ ଧ୍ୟାନୀର ଯେଉଁ ବ୍ୟବହାର ସେଥିରୁ ଲୋକମାନଙ୍କୁ ଏହାର ପରିଚୟ ମିଳିବ । ଅବଶ୍ୟ କୌଣସି ବ୍ୟକ୍ତି ପକ୍ଷରେ ତାର ନିଜର କଳ୍ପନା ଅନୁଯାୟୀ ଈଶ୍ୱରଙ୍କୁ ସାକ୍ଷାତ କରିବା ସଂପୂର୍ଣ୍ଣ ଦର୍ଶନ ନୁହେଁ । ତଥାପି ଟିକକରେ ତାର ଚିତ୍ତର ରୂପ ବଦଳିଯିବ । ଯାହାଙ୍କ ଚିତ୍ତରେ ଈଶ୍ୱର ଦର୍ଶନର ସ୍ପର୍ଶ ଲାଗିଛି ତାଙ୍କ ଜୀବନରେ ପ୍ରେମ ଏବଂ କରୁଣା ଅବଶ୍ୟ ଦେଖାଦେବ ।

ଦୁଇ ପ୍ରକାରର ସାକ୍ଷାତକାର ହୋଇଥାଏ । ଗୋଟିଏ ଧ୍ୟାନ ରୂପରେ ଅପରଟି ପ୍ରେମ ରୂପରେ । ଭଗବାନ ବୁଦ୍ଧଙ୍କର କରୁଣାମୟ ରୂପରେ ଯେଉଁ ପ୍ରତ୍ୟକ୍ଷ ଦର୍ଶନ ହୋଇଥିଲା ତାହାଥିଲା ଧ୍ୟାନ ରୂପ । ଶ୍ରୀ ଅରବିନ୍ଦଙ୍କ ଦର୍ଶନ ମଧ୍ୟ ଧ୍ୟାନ ରୂପ ଥିଲା । ତାଙ୍କ ମଧ୍ୟରେ ଧ୍ୟାନ, ଜ୍ଞାନ ଓ କର୍ମର ରୂପ ଦେଖାଯାଏ କିନ୍ତୁ ସେପରି ଭାବରେ ପ୍ରେମର ରୂପ ଦେଖାଯାଏ ନାହିଁ । ଗାନ୍ଧିଜୀଙ୍କର ସାକ୍ଷାତକାର ଭାବନାପୂର୍ଣ୍ଣ ଥିଲା । ଜ୍ଞାନ ଦେବଙ୍କର ସାକ୍ଷାତକାର ପୂର୍ଣ୍ଣ ରୂପରେ ଥିଲା । ଚୈତନ୍ୟ ଦେବ, ଜ୍ଞାନ ଦେବ, ଓ ନାମ ଦେବଙ୍କ ମଧ୍ୟରେ ପ୍ରେମ ରୂପର ସାକ୍ଷାତକାର ପ୍ରକାଶମାନ । ଜ୍ଞାନ ଦେବଙ୍କ ମଧ୍ୟରେ ପ୍ରେମ, ଧ୍ୟାନ, ଜ୍ଞାନ କର୍ମ ସବୁ କିଛିର ସମ୍ମିଳନ ଦେଖାଯାଏ । ସେ ମୂଳରୁ ଧ୍ୟାନ ଯୋଗୀ ଥିଲେ । ସେ ଜ୍ଞାନେଶ୍ୱରୀରେ ତାହାର ବିଶଦ୍ ବର୍ଣ୍ଣନା ଦେଇଛନ୍ତି । କିନ୍ତୁ ତାଙ୍କ ମଧ୍ୟରେ କର୍ମଯୋଗ ନ ଥିଲା । ଏପରି କଥା କୁହାଯାଇ ପାରିବ ନାହିଁ । ଜ୍ଞାନେଶ୍ୱରୀରେ କର୍ମଯୋଗ ନିରୂପଣ କରିବା ବିଷୟରେ ତାଙ୍କର ଏହିପରି ତନ୍ମୟତା ଦେଖାଯାଏ ।

କାର୍ଲ ମାର୍କ୍ସଙ୍କର ଦର୍ଶନ ଅସଂପୂର୍ଣ୍ଣ । କାରଣ ତାଙ୍କ ଦର୍ଶନରେ ସାକ୍ଷାତକାର ନାହିଁ । ଏବଂ ସାକ୍ଷାତକାର ବ୍ୟତୀତ ଜଗତର ଯଥାର୍ଥ ଦର୍ଶନ ହୁଏ ନାହିଁ । ଏହି କାରଣରୁ ତାଙ୍କ ଅନୁଗାମୀ ମାନଙ୍କର ତାଙ୍କ ଦର୍ଶନରେ ସନ୍ତୋଷ ଲାଭ ହୁଏ ନାହିଁ । ଚରମ ସତ୍ୟ, ବାହ୍ୟିକ, ଭୌତିକ ଆବିଷ୍କାର ଦ୍ୱାରା ମିଳିବ ନାହିଁ । ସେଥିପାଇଁ ଶରୀର, ସମାଜ, ପୃଥିବୀ ସବୁଥିରୁ ଅଲଗା ହୋଇ ଅନୁଭୂତି ଲାଭ କରିବାକୁ ହେବ ।

କୌଣସି କଥା ବୁଝିବା ପାଇଁ ସାଧାରଣ ବୁଦ୍ଧିର ପ୍ରୟୋଜନ ହୁଏ । ଯେତେବେଳେ କୌଣସି ପ୍ରଶ୍ନ ବାବଦରେ ନିଃସଂଶୟ ହେବା ଆବଶ୍ୟକ ହୁଏ, ସେତେବେଳେ କୌଣସି ସଂଶୟ କିମ୍ବା ପ୍ରଶ୍ନର ସମାଧାନ ମୂଳକ ଉତ୍ତର ଦେବାର କ୍ଷମତା ରଖିବା ଏବଂ ସେ ସଂପର୍କରେ ସଂପୂର୍ଣ୍ଣ

ବିଶ୍ୱାସ ରଖିବା -- ଏହାକୁ ନିଶ୍ଚୟାତ୍ମକ ବା ବ୍ୟବସାୟତ୍ମିକା ବୁଦ୍ଧି କୁହାଯାଏ । ଏହାକୁ ବୁଦ୍ଧିଗତ ସାକ୍ଷାତକାର କହନ୍ତି । ଅନ୍ୟଟି ହେଲା ସମାଧିଗତ ସାକ୍ଷାତକାର । ସେଠାରେ ତର୍କ ବିତର୍କର କୌଣସି ଅବକାଶ ନାହିଁ । ଦୁଇ ପ୍ରକାରର ସାକ୍ଷାତକାରରେ ହିଁ ବ୍ୟାପକ ଭାବରେ ଜ୍ଞାନ ରହିଛି ।

ପରମାତ୍ମାଙ୍କର ଦର୍ଶନ ହେବା, ସାକ୍ଷାତକାର ହେବା ଅତ୍ୟନ୍ତ ନିଗୁଢ଼ ପ୍ରଶ୍ନ । ମନର ସ୍ତରର ବାହାରକୁ କିପରି ଭାବରେ ଯାଇ ହେବ ତାର ଉତ୍ତର ଯେ ପର୍ଯ୍ୟନ୍ତ ନ ମିଳିବ, ସେ ପର୍ଯ୍ୟନ୍ତ ଏହି ପ୍ରଶ୍ନର ଉତ୍ତର ମଧ୍ୟ ମିଳିପାରିବ ନାହିଁ । ଜାଗରଣ, ସ୍ୱପ୍ନ ସବୁଯାକ ମନ ଭିତରେ ରହିଛି । ମନର ଉପରକୁ ଉଠିଗଲେ ତେବେଯାଇ ଈଶ୍ୱରଙ୍କର ସ୍ୱରୂପ ଦର୍ଶନ ହେବ । ଈଶ୍ୱର ଦର୍ଶନ ପାଇଁ ଦୂରକୁ କୁଆଡ଼କୁ ଯିବାକୁ ହେବନାହିଁ । ତାଙ୍କର ଅନୁଭୂତି ଅନ୍ତରରେ ହିଁ ହୋଇଥାଏ । ଆପଣମାନେ ସମସ୍ତେ ଏଠାରେ ବସିଛନ୍ତି । ଏଇଠି ଗଛ ଅଛି, ସେଠାରେ ପଶୁଟିଏ ରହିଛି । ଏସବୁ କିଛିର ମଧ୍ୟରେ ଏକ ଈଶ୍ୱରଙ୍କୁ ଦେଖି ହୁଏ, ସର୍ବତ୍ର ହରି ଦର୍ଶନ ହୁଏ । ତେବେ ଯାଇ ପ୍ରକୃତ ଈଶ୍ୱର ଦର୍ଶନ ହୁଏ । ଆପଣ ଜଣେ ଚୈତନ୍ୟମୟ ପୁରୁଷ । ଆପଣଙ୍କ ପାଦରେ ଗୋଟିଏ ଛୋଟ ପିଂପୁଡ଼ି ଆସି ବସିଲା । ପିଂପୁଡ଼ିଟି ମଣିଷର ପାଦ ଉପରେ ଚଢ଼ିଗଲା, ତଥାପି ତାର ଜ୍ଞାନ ନାହିଁ ଯେ ସେ ଗୋଟିଏ ଜୀବନ୍ତ ବସ୍ତୁର ସ୍ପର୍ଶ ପାଉଛି । ତାର ଅନୁଭବ ଅନୁଯାୟୀ ମଣିଷର ପାଦ ମଧ୍ୟ ଗୋଟିଏ ପଦାର୍ଥ ମାତ୍ର । ଆମ ପାଇଁ ମଧ୍ୟ ଏଇ କଥା ପ୍ରଯୁଜ୍ୟ । ପିଂପୁଡ଼ିର ଜୀବନ୍ତ ସ୍ପର୍ଶର ଜ୍ଞାନ ନାହିଁ । ପାଦ ଉପରେ ଚଢ଼ି ଯାଇଛି ତଥାପି ମନେ କରୁଛି ଯେ ସେ ଗୋଟିଏ ମାଟି ପିଣ୍ଡୁଳା ଉପରେ ଚଢ଼ି ଯାଇଛି । ତାର ଏତିକି ମାତ୍ର ଜ୍ଞାନ । ଏହିପରି ଭାବରେ ଆମେ ଈଶ୍ୱରଙ୍କୁ ଆଲିଙ୍ଗନ କରି ବସିଅଛୁ । କିନ୍ତୁ ଆମ ଦୃଷ୍ଟିରେ ଘରକୁ ଘର, ଗଛକୁ ଗଛ, ଜମିକୁ ଜମି ବୋଲି ମନେ ହେଉଛି । ଏସବୁ ଭିତରେ ଆମର ଈଶ୍ୱର ଦର୍ଶନ ହେଉନାହିଁ । ଅଥଚ ଈଶ୍ୱରଙ୍କ କୋଳରେ ସମସ୍ତେ ବସିଛୁ । ସ୍ପର୍ଶ ଅଛି, କିନ୍ତୁ ଅନୁଭବ ନାହିଁ ।

ତୁକାରାମଙ୍କର ଗୋଟିଏ ଭଜନ ଅଛି -- "ସାକର ଦିସେ ପରୀ ଗୋଡ଼ୀ ନ ଦିସେ --" ଚିନି ଦୃଷ୍ଟିଗୋଚର ହୁଏ କିନ୍ତୁ ତାର ମିଷ୍ଟତା ଦୃଷ୍ଟିଗୋଚର ହୁଏ ନାହିଁ । ମଧୁରତା ଚାଖିଲେ ଯାଇ ଜଣାଯାଏ । ଏପରି ଭାବରେ ଅଭିମାନ (ଅହଂଭାବ) ଛାଡ଼ି ଦେଲେ ଯାଇ ପ୍ରତ୍ୟେକ ବସ୍ତୁରେ ଈଶ୍ୱରଙ୍କ ରୂପ ଦେଖାଯିବ । ଯାହାକିଛି ଦେଖିବ ସବୁ ଈଶ୍ୱରମୟ ଦେଖିବ । ବୁଦ୍ଧି ଦ୍ୱାରା ବୁଝି ହେବ ନାହିଁ କିନ୍ତୁ ଅନୁଭବ ଦ୍ୱାରା ବୁଝି ହେବ ।

ସାକ୍ଷାତକାରର ଅର୍ଥ ହେଲା -- ଯା ଚିନ୍ତନ ଦ୍ୱାରା (ଚିତ୍ତ ମାନି ନେଇଛି) ହେଉଛି ତାକୁ ଆଖିରେ ଦେଖି ପାରିବା ଦରକାର । ଚିନ୍ତନ ଦ୍ୱାରା ଅନୁଭୂତ ହୋଇଛି -- ପ୍ରାଣୀମାନେ ଏକ । ଆଖିରେ ଏହି ପ୍ରକାର ଦେଖିପାରିବା ଦରକାର । ପିଂପୁଡ଼ି ଘୁରି ବୁଲୁଛି, ଯେପରି ଭଗବାନ ଘୁରି ବୁଲୁଛନ୍ତି ଏପରି ଭାବରେ ଦେଖିବାକୁ ହେବ । ମଣିଷ, ଗାଈ, ଗଛ, ପଥର ସବୁ କିଛି ଭିତରେ ଭଗବାନ ରହିଛନ୍ତି, ପ୍ରଥମେ ଏହି ଜ୍ଞାନ ଅର୍ଜନ କରିବାକୁ ହେବ । ଜ୍ଞାନ ଅର୍ଜନ ହେଲା ତ ଗୋଟିଏ ଅବସ୍ଥା ପ୍ରାପ୍ତ ହେଲା । କିନ୍ତୁ ତାଠାରୁ ଆହୁରି ଆଗକୁ ଯିବାକୁ ହେବ । କେହି କେହି ମଣିଷ ଭରତ-ରାମ ମୂର୍ତ୍ତିଙ୍କ ଆଗରେ ଠିଆ ହେଲେ ଏହି ମୂର୍ତ୍ତି ଭିତରେ ତାଙ୍କର

ଦର୍ଶନ ଲାଭ ହୁଏ । କିନ୍ତୁ ଅନ୍ୟ ଜଣେ ମଣିଷର ଏହି ମୂର୍ତ୍ତି ଭିତରେ ଏପରି ଦର୍ଶନ ହୁଏ ନାହିଁ । ଏହାର ଅର୍ଥ ସାକ୍ଷାତକାର ହେଲା ନାହିଁ । ଶ୍ରଦ୍ଧା ପାଇଁ ଗୋଟିଏ ଜାଗାରେ ଆସ୍ଥା ସ୍ଥାପିତ ହୋଇଛି, ସେଥିପାଇଁ ସେଠାରେ ଦର୍ଶନ ଲାଭ ହୋଇଛି । ସାକ୍ଷାତକାରର ଅର୍ଥ ହେଲା -- ସବୁକିଛି ଭିତରେ ଈଶ୍ୱର ଦର୍ଶନ ।

ସାକ୍ଷାତକାର ଯାହାର ହୋଇଛି, ତାର ପରିଚୟ ଜଣାଯିବ ନାହିଁ, କ୍ୱଚିତ୍ ପାତ୍ରୀଭୂତଃ କ୍ୱଚିଦବମତଃ କ୍ୱାପ୍ୟୟିଦିବଶ୍ ଚରତ୍ୟେବଂ ପ୍ରାଜ୍ଞଃ ସତତ - ପରମାନନ୍ଦ - ସୁଖିତଃ ।

କେତେବେଳେ ଲୋକମାନେ ସମ୍ମାନ କରିବେ, କେତେବେଳେ ଅପମାନ କରିବେ, ପଥର ପକାଇବେ, କେଉଁଠି ବା ଉପେକ୍ଷା ଲାଭ ହେବ । କେତେବେଳେ ବା ସେ ଆସିଛି କି ନ ଆସିଛି, ଯାର ଖବର ହିଁ ଲୋକମାନେ ରଖିବେ ନାହିଁ । ତଥାପି ପ୍ରାଜ୍ଞ ବ୍ୟକ୍ତି, ଜ୍ଞାନୀ ବ୍ୟକ୍ତି ପରମାନନ୍ଦ ପ୍ରାପ୍ତିରେ ସୁଖୀ ହୋଇ ଆନନ୍ଦରେ ବିଚରଣ କରିବେ । ଏହି କାରଣରୁ ତାଙ୍କୁ ଚିହ୍ନି ହେବ ନାହିଁ । ଅନ୍ଧ ବ୍ୟକ୍ତି ଆଖି ଥିବା ଲୋକକୁ ଜାଣିପାରିବ ନାହିଁ । ଏପରି ଭାବରେ ସାକ୍ଷାତକାରୀ ପୁରୁଷକୁ ଅନ୍ୟ ବ୍ୟକ୍ତିମାନେ ଚିହ୍ନି ପାରିବେ ନାହିଁ । ଯଦି ଅମୁକ ବ୍ୟକ୍ତିର ଈଶ୍ୱର ଦର୍ଶନ ହୋଇଛି ବୋଲି ଜଣାଯିବ ତେବେ ସେ ସାକ୍ଷାତକାରୀ ନୁହେଁ, ଏପରି ବୁଝି ନେବାକୁ ହେବ ।

ଜଣେ ସଜ୍ଜନ ମୋତେ ଲେଖିଥିଲେ, ସ୍ୱପ୍ନରେ ମୋର ଭଗବାନ କୃଷ୍ଣଙ୍କର ଦର୍ଶନ ହୋଇଛି, ସାକ୍ଷାତକାର ହୋଇଛି । ତାଙ୍କ ସହିତ ମୋର କଥାବାର୍ତ୍ତା ହୋଇଛି, ତାଙ୍କର ଆଶୀର୍ବାଦ ଲାଭ ହୋଇଛି ଇତ୍ୟାଦି । ମୁଁ ତାଙ୍କୁ ଲେଖିଲି, ସ୍ୱପ୍ନରେ ଦର୍ଶନ ହୋଇଚି ଏହା ଆଶ୍ୱାସନା ମାତ୍ର, ସାକ୍ଷାତକାର ନୁହେଁ । ଆପଣଙ୍କ ଚିତ୍ତରେ ଆଗ୍ରହ ଥିଲା ଯେ କୃଷ୍ଣ ରୂପରେ ଭଗବାନ ଆପଣଙ୍କର ସମ୍ମୁଖରେ ପ୍ରକଟ ହୁଅନ୍ତୁ । ଏଥିପାଇଁ ଭଗବାନ କୃଷ୍ଣଙ୍କ ରୂପ ଗ୍ରହଣ କରି ସ୍ୱପ୍ନରେ ଆପଣଙ୍କୁ ଦର୍ଶନ ଦେଲେ । କୃଷ୍ଣ ଭକ୍ତିର ସମ୍ବନ୍ଧରୁ ଆପଣଙ୍କର କୃଷ୍ଣଙ୍କର ଦର୍ଶନ । ଯୀଶୁଙ୍କୁ ଧ୍ୟାନ କରିବା ଫଳ ପାଇଁ ମଧ୍ୟ ଯେଉଁମାନେ ଧ୍ୟାନ କରନ୍ତି ତାଙ୍କର ଏହି ପ୍ରକାର ଅନୁଭବ ହୁଏ । ଆପଣ ଯଦି ମୁରଲୀଧର କୃଷ୍ଣଙ୍କର ଧ୍ୟାନ କରନ୍ତି ତାହାହେଲେ ସେ ଯଦି ମୁରଲୀ ଛାଡ଼ିଦେବେ ତାହାହେଲେ ଆପଣଙ୍କର ଧ୍ୟାନ ଭଂଗ ହୋଇଯିବ । ମନେହେବ ଏ ମୋର କୃଷ୍ଣ ନୁହନ୍ତି । ଯଦି 'ବାଳକୃଷ୍ଣ' ହୁଅନ୍ତି ତାହାହେଲେ ମୋର ନୁହନ୍ତି । ଏହି ଉପାଧି ସହ ଧ୍ୟାନ ହୁଏ । ଏପରି ଧ୍ୟାନର ପରିଣାମ ସ୍ୱରୂପ ଈଶ୍ୱରଙ୍କର ଯେଉଁ ସାକ୍ଷାତକାର ହୋଇଥାଏ, ତାହା ମଧ୍ୟ ଆଶ୍ୱାସନା ମାତ୍ର ବୋଲି ଧରି ନିଆଯିବ ।

ଏହି ଭାଇଙ୍କ ସାମ୍ନାରେ ମୁଁ ପରୀକ୍ଷା ହିସାବରେ ଚାରୋଟି କଷଟି ପଥର ରଖିଥିଲି ।

୧. ଭଗବାନ କୃଷ୍ଣ ସ୍ୱପ୍ନରେ ଆପଣଙ୍କୁ ଦର୍ଶନ ଦେଇଛନ୍ତି । ଯେତେବେଳେ ସ୍ୱପ୍ନ ଦେଖନ୍ତି ସେତେବେଳେ ଏହି ସ୍ୱପ୍ନ କ'ଣ ଆସେ ?

୨. ଜାଗ୍ରତ ଅବସ୍ଥାରେ ମଧ୍ୟ ଏହି ରୂପ କ'ଣ ଦେଖନ୍ତି ?

୩.   ଜାଗ୍ରତ ଅବସ୍ଥାରେ କ'ଣ ସବୁ ସମୟରେ ଏହା ଦେଖାଯାଏ ?

୪.   ଆପଣଙ୍କ ଠାରୁ ଅଲଗା ଭାବରେ କ'ଣ ଦେଖନ୍ତି ? ନା ଆମେ ସବୁ ସେହି ରୂପରେ ପରିଣତ ହୋଇଛୁ, ଏପରି ଦେଖାଯାଏ ?

ବର୍ତ୍ତମାନ ଏହି ଚାରୋଟି ମାନଦଣ୍ଡର ବିଚାରରେ ଯଦି ଏହି ଚମତ୍କାର ଅଭିଜ୍ଞତା ଜଣାଯିବ, ତେବେ ପରୀକ୍ଷାରେ ଉତ୍ତୀର୍ଣ୍ଣ ହେଲେ ତ ଠିକ, ତା ନ ହେଲେ ଏହାକୁ ଆଶ୍ୱାସନ ମାତ୍ର ହିଁ ଭାବିବାକୁ ହେବ । ଏତିକି ମାତ୍ର ହେଲା ଯେ, ଆସିଲା ଏବଂ ଚାଲିଗଲା ।

ସତ୍ ପୁରୁଷମାନଙ୍କର ଜୀବନ ଚରିତ୍ରରେ ଈଶ୍ୱରଙ୍କର ସାକାର ଦର୍ଶନର ଅନୁଭୂତି ବିଷୟ ଦେଖିବାକୁ ମିଳେ । କିନ୍ତୁ ଏ ପ୍ରକାରର ଅନୁଭବକୁ ମୁଁ ଦର୍ଶନ ବୋଲି ମନେକରେ ନାହିଁ । ଏହାକୁ ଆଶ୍ୱାସନ କୁହାଯାଏ । ଯଦି ଦର୍ଶନ ହେଲା ତେବେ ତାହା ୨୪ ଘଣ୍ଟା ରହିବ । ତାହା ଆରୋହଣ କିମ୍ବା ଅବରୋହଣ କରିବ ନାହିଁ । 'ସ୍ଥିତପ୍ରଜ୍ଞ' ଦର୍ଶନରେ ମୁଁ କହିଛି -- ଧ୍ୟାନ-ସମାଧି ଆଦିରେ ଉଠିବା ଓ ପଡ଼ିବା କ୍ରିୟା ରହିଛି । ଏ ଅବସ୍ଥାକୁ କୁହାଯାଏ ଏକ ପ୍ରକାର ସତ୍‌ବୃତ୍ତି, ନିବୃତ୍ତି ନୁହେଁ କିମ୍ବା ସ୍ଥିତି ନୁହେଁ । ଏ ଅବସ୍ଥାରେ ସାଧକର ଆଶ୍ୱାସ ଲାଭ (ଭରସା) ହୁଏ । କିନ୍ତୁ କ୍ରମଶଃ ତାର ନିତ୍ୟାବସ୍ଥାର ସ୍ଥିତି ହେବାକୁ ହେବ । ଯେଉଁଠାରେ ଦୃଷ୍ଟି ପଡୁ ନା କାହିଁକି, ସବୁ ଗୁଡ଼ିକ ଈଶ୍ୱରମୟ ବୋଲି ଦେଖା ଯିବ । ପ୍ରସ୍ତର ଖଣ୍ଡ, ବୃକ୍ଷ, ପଶୁ, ପକ୍ଷୀ ସବୁକିଛିରେ ଈଶ୍ୱର ବିଦ୍ୟମାନ । ଏହି ଭାବନା ଦୃଢ଼ ହୋଇଯିବ, ଏବଂ ଚବିଶ ଘଣ୍ଟା ଏହା ରହିବ । ପୁଣି ହାତ ଦ୍ୱାରା ଯେଉଁ ସବୁ କାମ ହେବ ସେଥିରେ ମଧ୍ୟ ହରି ଭାବନାର ପ୍ରଭାବ ରହିବ ।

ଯେଉଁ ସବୁ ଅନୁଭବକୁ ମୁଁ ଆଶ୍ୱାସ କହୁଛି ତାହା ମିଥ୍ୟା ନୁହେଁ । ସେ ସବୁକୁ ମୁଁ ଯଥାର୍ଥ ବୋଲି ମନେକରେ । ସବୁ ସାଧକମାନଙ୍କର ଏପ୍ରକାର ଅନୁଭବ ଆସିବ ନାହିଁ । କିନ୍ତୁ କୌଣସି କୌଣସି ସାଧକଙ୍କର ବିଶେଷ ଅବସ୍ଥାରେ ଏପ୍ରକାର ଅନୁଭବ ହୋଇଥାଏ ।

ଆଶ୍ୱାସନମାନେ ସାବାସ୍ । ତୁମେ ଉତ୍ତମ କାମ କରିଛ, ସନ୍ତାନ ଭଲ କାମ କରେ, କିନ୍ତୁ ତାର ନିଜ ମନରେ ବିଶ୍ୱାସ ହୁଏ ନାହିଁ, ସେ ମା' ଙ୍କ ପାଖକୁ ଯାଏ । ମା' ତାର ପିଠି ଚାପୁଡ଼ାଇ ଦିଅନ୍ତି । ଆଉ କହନ୍ତି, ସାବାସ୍ ପୁଅ ! ଶିଶୁ ମନରେ ବିଶ୍ୱାସ ସୃଷ୍ଟି କରାହୁଏ । ସେତେବେଳେ ସେ ଆଗେଇ ଯାଇପାରେ । କିନ୍ତୁ ଯଦି ଶିଶୁ କୁହେ, ନା ମୁଁ ଏହି ସ୍ତରରେ ଅଟକି ରହିବି, ଆଗେଇ ଯିବି ନାହିଁ, ତାହାହେଲେ ମା' କହିବେ, ମହାମୂର୍ଖ ତୁ । ଏହାକୁ ସାକ୍ଷାତକାର ମନେ କରି ଯଦି ବସି ଯାଅ, ତେବେ ଅଗ୍ରବର୍ତ୍ତୀ ସାକ୍ଷାତକାରକୁ କୁଣ୍ଠିତ କରି ପକାଇବ । ଏଥିପାଇଁ ଆକସ୍ମିକ ଦର୍ଶନ ବା ଆଶ୍ୱାସନ ସବୁବେଳେ ଦର୍ଶନ ପଥରେ ସେ ପର୍ଯ୍ୟନ୍ତ ବାଧକ ହେବ ନାହିଁ ଯେ ପର୍ଯ୍ୟନ୍ତ ଆମେ ଆକସ୍ମିକ ଦର୍ଶନକୁ ହିଁ ଅନ୍ତିମ ଦର୍ଶନ ବୋଲି ମନେ ନ କରିବା । କେବେ କେବେ ଶ୍ରେଷ୍ଠ ଶ୍ରେଷ୍ଠତର ବିରୁଦ୍ଧରେ କାର୍ଯ୍ୟ କରେ, ଏହାର କାରଣ ଆମ୍ଭମାନଙ୍କର ମୂର୍ଖତା ।

# ୫. ସମାଧି

## କ). ସହଜ ସମାଧି ଉତ୍ତମ :

* ଅନ୍ତର୍ମୁଖ-ବହିର୍ମୁଖ — କୌଣସି ନୟନ ନାହିଁ ।
* ଯାତ୍ରୀ-ମାନସ-ଭଗବାନଙ୍କୁ ତୀର୍ଥ ସ୍ଥାନକୁ ଠେଲି ଦିଏ ।
* ଧ୍ୟାନୀ-ମାନସ ଭଗବାନଙ୍କୁ ସାମ୍ନାରୁ ଠେଲି ଦେଇ ଅନ୍ତର୍ମୁଖୀ କରିଥାଏ ।
* ବାହାରେ ବ୍ରହ୍ମ ଅଛି, ଭିତରେ ବ୍ରହ୍ମ ଅଛି, ମଧ୍ୟବର୍ତ୍ତୀ ସ୍ଥାନରେ ଭ୍ରମ ହେଉଛି - ଚିତ୍ତ ।

ପ୍ରଶ୍ନ ପଚରା ଯାଇଛି ଯେ, କ୍ଷେତ୍ରରେ କାମ କରିବା ବେଳେ ଅନ୍ତର୍ମୁଖତାର ଅନୁଭବ ଆସୁନାହିଁ । ଏହା ପାଇଁ ଏକାନ୍ତର, ଧ୍ୟାନର ଆବଶ୍ୟକତା ଅନୁଭବ ହେଉଛି ତ କ'ଣ କରିବାକୁ ହେବ ? ବୁଝିବା ଆବଶ୍ୟକ ଯେ, ଯେ ପର୍ଯ୍ୟନ୍ତ ଅନ୍ତର୍ମୁଖ ଓ ବହିର୍ମୁଖ, ଏହି ବିରୋଧ ରହିବ, ସେ ପର୍ଯ୍ୟନ୍ତ 'ମୁଖ' ହିଁ ହୋଇ ପାରିବ ନାହିଁ । ଆମେ ଭିତର ଓ ବାହାର ଭିତରେ ପାର୍ଥକ୍ୟ କରୁ ଏବଂ କହୁ ବ୍ରହ୍ମ ଭିତରେ ଅଛନ୍ତି । ବାହାରେ ଯାହା ଅଛି ତାହା ବ୍ରହ୍ମ ଠାରୁ ଭିନ୍ନ ବସ୍ତୁ । ଏହାର ଅର୍ଥ ଏଇୟା ହେବ ଯେ, ଆମେ ବ୍ରହ୍ମକୁ ଦୁଇ ଖଣ୍ଡରେ ବିଭକ୍ତ କରୁଛୁ । ଏହା ବାସ୍ତବିକ୍ ସତ୍ୟ ନୁହେଁ । ଯେ ପର୍ଯ୍ୟନ୍ତ ଅନ୍ତର୍ମୁଖ ଏବଂ ବହିର୍ମୁଖ ଏଇ ବିରୋଧ ରହିବ, ସେ ପର୍ଯ୍ୟନ୍ତ ମୁଖ ହିଁ ରହିବ ନାହିଁ । ବୁଝିବାକୁ ହେବ ଯେ ପରମାତ୍ମା ଭିତରେ ଅଛନ୍ତି, ସେ ବାହାରେ ମଧ୍ୟ ପରିବ୍ୟାପ୍ତ । ବାହାରେ ଯାହା ଦୃଶ୍ୟ ହେବ, ଭିତରେ ମନ ଭିତରେ ସେହି ବୋଧ ଜନ୍ମିବ । ବାହାରେ ପରମାତ୍ମା ବିରାଜମାନ, ତାଙ୍କୁ --

ଖୋଲା ଆଖିରେ ଦେଖି ନିଅ,
ହସ ହସ ସୁନ୍ଦର ରୂପ ଦେଖ,
ଆଖି ବନ୍ଦ କର ନାହିଁ, କାନ ରୁଦ୍ଧ କର ନାହିଁ,
ସାମାନ୍ୟ କଷ୍ଟ ମଧ୍ୟ ସହିବାକୁ ହେବ ନାହିଁ ।
ସହଜ ସମାଧି ସାଧନ କର --

ମୁଁ ସର୍ବଦା ଯାତ୍ରୀ-ମାନସିକତାର କଥା କହିଥାଏ । ଭଗବାନ ଆମ ପାଖରେ ଅଛନ୍ତି । ତାହାଙ୍କୁ ଆମେ ଦୂରକୁ ଠେଲି ଦେଉ ଏବଂ କହୁ - ଭଗବାନଙ୍କ ଦର୍ଶନ ପାଇଁ ଆମେ କେଦାର-ବଦ୍ରୀ ଯାଉଛୁ । ପୁଣି ସେଠାରେ ପହଞ୍ଚିବାପରେ କହୁ - ଆମେ କାଶୀ ଯାତ୍ରାପାଇଁ ପ୍ରସ୍ତୁତ ହେଉଛୁ । ସେଠାରୁ ରାମେଶ୍ୱର ଯିବା । ଅର୍ଥାତ୍ ଯେଉଁ ଭଗବାନ ପାଖରେ ଅଛନ୍ତି ତାଙ୍କୁ ଦୂରକୁ ଠେଲି ଦେବା । ଏଟା ଯେପରି ଯାତ୍ରୀ-ମାନସିକତା ସେହିପରି ପୁଣି ଗୋଟିଏ ଧ୍ୟାନୀ-ମାନସିକତା ମଧ୍ୟ ଅଛି । ଈଶ୍ୱର ଅନ୍ତରରେ ଓ ବାହାରେ ସବୁଠାରେ ଅଛନ୍ତି । ଆଖି ତାହା ଦେଖୁଛି । କିନ୍ତୁ ଆମେ କହୁ ଆଖି ବନ୍ଦ କରି ତାଙ୍କୁ ଦେଖିବୁ । ଆମେ ଭଗବାନଙ୍କୁ ନିଜ ସମ୍ମୁଖରୁ ଦୂରକୁ ଠେଲି ଦେଉ ଏବଂ କେତେବେଳେ ବି ଭିତରେ ପୁରେଇ ରଖୁ । ବୁଝିବାକୁ ଗଲେ ଭିତର ବାହାର ବୋଲି କିଛି ନାହିଁ ।

ଏଥିପାଇଁ ଯେପର୍ଯ୍ୟନ୍ତ ଦ୍ୱୈତ ଥିବ, ସେ କାର୍ଯ୍ୟକୁ ତତ୍ତ୍ୱଦର୍ଶନ ହେବ ନାହିଁ। ହରି ସର୍ବତ୍ର ବିରାଜମାନ ଏହି ବିଷୟଟିର ଅଭ୍ୟାସ କରିବାକୁ ହେବ। ବାହାରେ ଆମର ଭୟ ନାହିଁ। ଭିତରେ ମଧ୍ୟ ଭୟ ନାହିଁ। ଭୟହେଲା ଆମ ନିଜ ମନରେ। ଏଥିପାଇଁ ଆମେ ଠେଲି ଦେଇ ପାରିବା ନାହିଁ। ବାହାରକୁ ମଧ୍ୟ ଘୁଞ୍ଚେଇ ନେବାର କ୍ଷମତା ଆମର ନାହିଁ। ଘୁଞ୍ଚେଇ ଦେବାର ବସ୍ତୁଟି ହେଲା ଆମର ଚିତ୍ତ। ବାହାରେ ବ୍ରହ୍ମ, ଭିତରେ ବ୍ରହ୍ମ, ମଧ୍ୟବର୍ତ୍ତୀ ସ୍ଥାନରେ ଭ୍ରମରୂପୀ ଚିତ୍ତ ରହିଛି। ଚିତ୍ତ ଠାରୁ ମୁକ୍ତ ହୋଇ ପାରିଲେ କାମ ଶେଷ।

ଆମର ଆଖ ପାଖରେ ନାନାପ୍ରକାର ଦର୍ଶନ ହୋଇଥାଏ। ଭିନ୍ନ ଭିନ୍ନ ସ୍ୱଭାବର ଲୋକ ଅଛନ୍ତି। ସୃଷ୍ଟିର ନାନା ରୂପ ରହିଛି। ସେ ସବୁରେ ଭଗବାନ ପୂର୍ଣ୍ଣ ରୂପରେ ଅଛନ୍ତି, ଏପରି ଦର୍ଶନ ଯେ ପର୍ଯ୍ୟନ୍ତ ନ ହୋଇଛି, ସେପର୍ଯ୍ୟନ୍ତ ଆତ୍ମା ସାକ୍ଷାତକାର ହେବନାହିଁ।

ପ୍ରତ୍ୟେକ ସ୍ଥାନରେ ରାମଙ୍କୁ ଦେଖନ୍ତୁ। ପର୍ବତ ଦେଖିଲେ ଭାବନ୍ତୁ ସ୍ଥାବରାଣାଂ ହିମାଳୟଃ ନଦୀ ଦେଖିଲେ। ବୁଝିବ - ଶ୍ରୋତସାମସ୍ମି ଜାହ୍ନବୀ। ଧିରେ ଧିରେ ସବୁଠାରେ ରାମଙ୍କୁ ଦେଖନ୍ତୁ ଏବଂ ସବୁକାମରେ ରାମଙ୍କ ପୂଜା ହୋଇପାରେ। ଯେଉଁଠାକୁ ଯିବୁ ସେଠାରେ ପରିକ୍ରମା ହେବ ଏବଂ ଯାହା କରିବୁ ସବୁ ସେବା ହେବ। ଏହିପରି ମନୁଷ୍ୟମାନଙ୍କ ଭିତରେ ଭଗବାନଙ୍କ ଦର୍ଶନ ହେବା ଉଚିତ। ଆଖପାଖରେ ଯେତେ ସୃଷ୍ଟି ରହିଛି, ତହିଁରେ ଭଗବାନ ଦର୍ଶନ ହେବା ଦରକାର। ଆଖି ଖୋଲି ସୃଷ୍ଟିରେ ଯେଉଁ ପରମାତ୍ମା ପୁରି ରହିଛନ୍ତି ତାହାକୁ ଦର୍ଶନ କର।

ଖ). ନିଦ୍ରା – ସମାଧି ସ୍ଥିତି :

* ବୀଜ ବୁଣାହେଲା- ମାଟି ଢଂକାହେଲା, ଅଙ୍କୁର ଫୁଟି ବାହାରିଲା।
* ଧ୍ୟାନ ଚିନ୍ତନ ଉପରେ ନିଦ୍ରାରୂପୀ ମାଟି ଚାପାଦେଲେ ବିଚାରର ବୀଜ ଅଙ୍କୁରିତ ହୁଏ।
* ଧ୍ୟାନର ସ୍ୱରୂପ ହେଲା ଜାଗ୍ରତ ଗାଢ଼ ନିଦ୍ରା।

ଆମେ ସବୁ ପ୍ରତିଦିନ ଶୋଉଛୁ। କିନ୍ତୁ ଶୋଇବାର ଅର୍ଥ କଣ ? ଶୋଇବା ଅର୍ଥାତ୍ କରିଥିବା କର୍ମର ବିଶ୍ରାନ୍ତି ଏବଂ ଭବିଷ୍ୟତର କାମର ପ୍ରସ୍ତୁତି। ଏହି ଦୃଷ୍ଟିରୁ ଶୋଇବା ଅର୍ଥାତ୍ ଏକ ସମାଧି। କାହିଁକି ? ଏଥିପାଇଁ ସମାଧିର ଅର୍ଥ ଦେଖିବାକୁ ହେବ। ସମାଧିର ଅର୍ଥ ହେଲା, ମନ ବୁଦ୍ଧି ପରମାତ୍ମାଙ୍କଠାରେ ଲୀନ ହେବା। ସମାଧି ଏପରି ଏକ ଅବସ୍ଥା, ଯେଉଁଥିରେ ଆତ୍ମଶକ୍ତିର ଆବିର୍ଭାବ ହେବ। ସମାଧିରେ ମନ ବୁଦ୍ଧି ପରମାତ୍ମାରେ ଲୀନ ହୋଇ ଆତ୍ମଶକ୍ତିର ଆବିର୍ଭାବ ହୁଏ। ସମାଧିପରେ ମନ-ବୁଦ୍ଧି, ଯାହା ଆତ୍ମଶକ୍ତିରେ ଆବିର୍ଭୂତ ହୋଇ ଯାଇଛି, ପବିତ୍ର ହୋଇଯାଇଛି, ତାହା ଆମ ବ୍ୟବହାରକୁ ପବିତ୍ର କରିବ। ନିଦ୍ରାର ଏହି ଅର୍ଥ। ନିଦ୍ରାର ପରବର୍ତ୍ତୀ କାଳରେ ଆମ କାର୍ଯ୍ୟ ଅଧିକ ପବିତ୍ର। ଆବିର୍ଭୂତ ଉତ୍ସାହଯୁକ୍ତ ହେବା ଦରକାର। ପ୍ରକୃତ କର୍ମଯୋଗୀ ପାଇଁ ନିଦ୍ରା ଏକ ସମାଧି ଅଟେ।

ଶୋଇବା ଅର୍ଥାତ୍ 'ସୁନା' ସହିତ ତୁଳନୀୟ । ଜାଗରଣ ହେଉଛି "ରୂପା" । କର୍ମଯୋଗୀର ନିଦ୍ରା ସମାଧିର ରୂପ ନେଇଥାଏ । ସେ ସ୍ୱପ୍ନ ଦେଖେ ନାହିଁ । ଏଥିରେ ବିଚାରର ବିକାଶ ହୋଇଥାଏ । ଏହା ତମୋଗୁଣର ଚିହ୍ନ ନୁହେଁ । ସାମ୍ୟାବସ୍ଥାର ଚିହ୍ନ ଅଟେ । ନିଦରୁ ଉଠିବାପରେ ନିଦ୍ରା କିମ୍ବା ତନ୍ଦ୍ରାର କୌଣସି ପ୍ରଭାବ ରହିବା ଉଚିତ ନୁହେଁ । ଏହାର ଉଦ୍ଦେଶ୍ୟ ଏହା ନୁହେଁ ଯେ, ଜାଗ୍ରତ ଅବସ୍ଥାରେ ଚିତ୍ତରେ ସର୍ବଦା କିଛି ନା କିଛି ବିଚାର ଚକ୍ର ଚାଲିଥିବ । ସହଜ ଭାବ ରହିବ, ଏହା ହେଉଛି ବୁଦ୍ଧି ଜାଗୃତିର ଲକ୍ଷଣ ।

ଭାରତବର୍ଷର ଲୋକଙ୍କର ଧାରଣା ହେଉଛି ଯେ, ଯଦି କେହି ଧ୍ୟାନ କରୁଛି ତେବେ ସେ ଆଧ୍ୟାତ୍ମିକ ସାଧନା କରୁଛି । ଏମିତିରେ ଦେଖିବାକୁଗଲେ ଗାଢ଼ ନିଦ୍ରାଠୁ ବଳି କୌଣସି ଧ୍ୟାନ ହୋଇପାରେ ନାହିଁ । ମୋର ନିଜ ଅନୁଭବ ହେଉଛି ଯେ, ଗାଢ଼, ନିଃସ୍ୱପ୍ନ, ନିର୍ଦ୍ଦୋଷ ନିଦ୍ରା ଦ୍ୱାରା ଯେତେ ଉତ୍ତମ ବିଚାର ହୋଇଥାଏ ସେହି ପରିମାଣରେ ବିକାଶ "ନିର୍ବିକଳ୍ପ ସମାଧି"କୁ ଛାଡ଼ି ଅନ୍ୟ କୌଣସି ସାଧାରଣ ସ୍ଥିତିରେ ହୋଇପାରିବ ନାହିଁ । ନିଃସ୍ୱପ୍ନ, ନିର୍ଦ୍ଦୋଷ ନିଦ୍ରା ଏକ ଆଧ୍ୟାତ୍ମିକ ବସ୍ତୁ ହୋଇପାରେ ଏବଂ ଏପରି ଭାବରେ ଏହା ଏକ ଭୌତିକ ବସ୍ତୁ ହୋଇପାରେ । ପଶୁମାନେ ନିଦ୍ରାଗଲେ ତାହାକୁ ଆଧ୍ୟାତ୍ମିକ ବସ୍ତୁ କୁହାଯାଏ ନାହିଁ କିନ୍ତୁ ନିଷ୍କାମ କର୍ମଯୋଗୀ ଦିନସାରା କାମକରି ଯଦି ଶୋଇଯାଏ, ତେବେ ତାର ସ୍ୱପ୍ନହୀନ ନିର୍ଦ୍ଦୋଷ ନିଦ୍ରା ମଧ୍ୟରେ ଏହି ସବୁ ଅନୁଭବ ଆସିବା ସମ୍ଭବ, ଯାହା ନିର୍ବିକଳ୍ପ ସମାଧି ବ୍ୟତୀତ ଅନ୍ୟ କୌଣସି ପ୍ରକାର ଭାବରେ ଆସିବା ସମ୍ଭବ ନୁହେଁ ।

ଜମିରେ ମଞ୍ଜି ବୁଣିସାରି ତା ଉପରେ ମାଟି ଘୋଡ଼େଇ ଦେଲେ ମଞ୍ଜି ଦେଖାଯାଏ ନାହିଁ । ତଥାପି ଭିତରେ ଭିତରେ ତାହା ବିକଶିତ ହେଉଥାଏ । ଯେତେବେଳେ ତହିଁରୁ ଗଜା ବାହାରେ ସେତେବେଳେ ଜଣାଯାଏ ଭିତରେ କେତେ ସୂକ୍ଷ୍ମ କ୍ରିୟା ସଂପନ୍ନ ହୋଇଛି । ଏହିପରି ପ୍ରାର୍ଥନା ଧ୍ୟାନ ଚିନ୍ତନ କରୁଥିବା ମନୁଷ୍ୟ ଉପରେ ନିଦ୍ରା ରୂପକ ମାଟି ଯଦି ଢାଂକି ଦିଆଯାଏ,ତେବେ ଜାଗରଣରେ ଯେଉଁ ସମସ୍ୟାର ସମାଧାନ କରି ନ ହୁଏ ତାହା ନିଦ୍ରାସମୟରେ ହୋଇଯାଏ । ଅଥବା କେତେବେଳେ ସକାଳୁ ଉଠିବାମାତ୍ରେ ବଡ଼ ସୁନ୍ଦର ନିର୍ଣ୍ଣୟ ମଧ୍ୟ କରିହୁଏ । ସମାଧିରେ ଗଭୀରକୁ ଗଲେ ବିଚାରର ବିକାଶ ହୋଇଥାଏ । କିନ୍ତୁ ଗଭୀରକୁ ଯିବାପରେ କେବେ କେବେ ଯେଉଁଫଳ ମିଳି ପାରେ ନାହିଁ, ତାହା ନିଦ୍ରାପରେ ହୋଇଯାଏ । ଏହାର ଅନୁଭବ ମୋତେ ଏକାଧିକ ଥର ମିଳିଅଛି । ସେ ସମୟରେ ମୋ ଆଗରେ ଶଂକରାଚାର୍ଯ୍ୟଙ୍କ ତଥ୍ୟ ପ୍ରକଟ ହୋଇଯାଏ, ଯାହା ନିଦ୍ରା ସମାଧି-ସ୍ଥିତିଃ ଅଟେ । ନିଦ୍ରା - ଏହି ଘଟଣାକୁ ଆମେ ଆଜି ପର୍ଯ୍ୟନ୍ତ ସ୍ପଷ୍ଟ ରୂପେ ବୁଝି ପାରିନାହୁଁ । ବୈଜ୍ଞାନିକମାନେ କହନ୍ତି ଯେ- ଏତେଥର ନାଡ଼ୀର ଗତି ହେଲେ ତେବେ ଗାଢ଼ ନିଦ୍ରା ହୁଏ ବୋଲି ଜାଣିବ । ଜାଗରଣରେ ଏକ ମୂହୁର୍ତ୍ତ ନିଦ୍ରା ଓ ନିଦ୍ରାରେ ଏକମୂହୂର୍ତ୍ତ ପାଇଁ ଜାଗୃତି ରହିଥାଏ । ଏହା ସବୁ ଉପର ଉପର କଥା କିନ୍ତୁ ନିଦ୍ରା ଆସେ, ଅର୍ଥାତ୍ କଣ ଘଟେ । ତାହା କେହି କହିପାରନ୍ତି ନାହିଁ । ଭିତରର ତତ୍ତ୍ୱ କୁଆଡ଼େ ଯାଏ ? ଏହି ଆଧାର ଉପରେ ସମଗ୍ର ବ୍ରହ୍ମ ବିଦ୍ୟା ଦଣ୍ଡାୟମାନ । ଏବିଷୟରେ ଚିନ୍ତନ ମନନ କରି ଆଗେଇ ଯିବାକୁ ହେବ । ଗୋରୁ ଅଛି, ସିଂହ ଅଛି, ମଣିଷ ଅଛି, ଗୋରୁ ଶୋଇଛି, ସିଂହ ଶୋଇଛି, ମଣିଷ ମଧ୍ୟ ଶୋଇଗଲା । ଏପରି ଗାଢ଼ ନିଦ୍ରା ସମୟରେ ମୁଁ

ମଣିଷ ଏ କଥା କଣ ଅନୁଭବ କରିହୁଏ ? ନା ହୁଏ ନାହିଁ । ସ୍ୱପ୍ନରେ ଆସିବ, ଗାଢ଼ ନିଦ୍ରାରେ ଆସିବ ନାହିଁ । ଗାଈ ପାଖରେ ମୁଁ ଗାଈ, ସିଂହ ପାଖରେ ମୁଁ ସିଂହ ଏପରି ଅନୁଭବ ଆସି ନପାରେ । ଛାନ୍ଦୋଗ୍ୟ ଉପନିଷଦରେ କୁହାଯାଇଛି ଏହି ସବୁ ପ୍ରଜାମାନେ ପ୍ରତିଦିନ ବ୍ରହ୍ମଲୋକକୁ ଯାଆନ୍ତି । କିନ୍ତୁ ଜାଣିପାରନ୍ତି ନାହିଁ -- ବ୍ୟାଘ୍ରୋ ବା ସିଂହୋ ବା ବୃକୋ ବା ବରାହୋ ବା କିଟୋ ବା, ପତଙ୍ଗୋବା ଯଦ୍ ଯଦ୍ ଭବନ୍ତି ତଦ୍ ଆଭବନ୍ତି - ନିଦ୍ରାବସ୍ଥାରେ ବ୍ୟାଘ୍ର ବ୍ୟାଘ୍ର ରହେ ନାହିଁ । ବିନୋବା ବିନୋବା ରହେ ନାହିଁ । ଗାଢ଼ ନିଦ୍ରାରେ ସମସ୍ତେ ସତ୍‌ରେ ମିଶି ଯାଆନ୍ତି ଏବଂ ପରିଣାମ ଏହା ହୁଏ ଯେ ସମସ୍ତେ ସୁଖ ଅନୁଭବ କରନ୍ତି ।

ନିଦ୍ରା ମଧ୍ୟରେ ମୁଁ ରହେ ନାହିଁ । ଆନନ୍ଦ ଅନୁଭବ ହୁଏ । ସେଥିପାଇଁ ଆତ୍ମାର ସ୍ୱରୂପ ଆନନ୍ଦମୟ । ଏହା ପ୍ରମାଣିତ ହେଲା । ତାପରେ ଏହା ମଧ୍ୟ ପ୍ରମାଣିତ ହେଲା ଯେ ଆତ୍ମା ସତ୍ୟ ଅଟେ । ଅର୍ଥାତ୍ ଅସ୍ତିସ୍ୱରୂପ ଅଟେ କାରଣ ନିଦ୍ରାବସ୍ଥାରେ "ମୁଁ" ରହିଯାଏ । ତହିଁଆରଦିନ ନିଦରୁ ଉଠି ଆମେ କହୁ, "କାଲି ମୋତେ ଭଲନିଦ ହେଲା ।" ମୁଁ ଶୋଇଗଲି । ମୁଁ କିଏ ? ଅନୁଭୂତି ହେଲା ଯେ ମୁଁ ଶୋଇଥିଲି ଏବଂ ମୁଁ ଉଠିଲି । ଅସ୍ତିତ୍ୱ ସନାତନ । ଅବସ୍ଥା ବଦଳିଥାଏ, କିନ୍ତୁ ସତ୍ୟ, ଅସ୍ତିତ୍ୱ ବଜାୟ ରହେ ।

ଶୋଇବା ସମୟରେ ବୁଦ୍ଧିକୁ ତାଲା ଲଗାଇ ଦେବା ଦରକାର । ଗାଢ଼ ନିଃସ୍ୱପ୍ନ ନିଦ୍ରାରେ ମନୁଷ୍ୟ ନିଜର ସ୍ଥୂଳ ସ୍ୱରୂପ ମଧ୍ୟରେ ଲୀନ ହୁଏ । କେବଳ ଅଜ୍ଞାନ ବାକି ରହିଥାଏ । ସେଥିପାଇଁ ଫେରିଆସେ । ଯଦି ଅଜ୍ଞାନ ଚାଲିଯିବ, ତାହାହେଲେ ମନୁଷ୍ୟ ଏକେବାରେ ପରମେଶ୍ୱରଙ୍କ ନିକଟରେ ପହଞ୍ଚିଯିବ । ମୁକ୍ତ ହୋଇଯିବ । କିନ୍ତୁ ଯେତେ ଗାଢ଼ ନିଃସ୍ୱପ୍ନ ନିଦ୍ରା ହେବ, ସେତିକି ପରିମାଣରେ ପରମେଶ୍ୱରଙ୍କ ସହିତ ଲୀନ ହେବାର ସୁଯୋଗ ମିଳିବ । ତାକୁ ହରାଇବା ଦରକାର କ'ଣ ?

ଯଦି ନିଦ୍ରା ସମୟରେ ଆତ୍ମା ପରମାତ୍ମାଙ୍କ ସହିତ ଲୀନ ହୋଇଥାଏ, ତେବେ ଫେରିଆସେ କିପରି ? ଏଥିପାଇଁ ଶଂକରାଚାର୍ଯ୍ୟ ପ୍ରଶ୍ନର ସମାଧାନ କରିଛନ୍ତି । ଯଦି ଗଙ୍ଗା ପାଣି ପୂର୍ଣ୍ଣ ହୋଇଥିବା ଲୋଟାର ମୁହଁ ବନ୍ଦ କରି ତାକୁ ଗଙ୍ଗାନଦୀରେ ପକେଇ ଦେବ ଏବଂ ପୁଣି ବାହାରକୁ ନେଇ ଆସିବ, ତେବେ ଲୋଟାଟି ଠିକ୍ ସେହିପରି ରହିବ । ଆତ୍ମାରେ ଅହଂରୂପୀ ସିଲ୍ ଲାଗିଛି । ସେ ସିଲ୍ ଭାଙ୍ଗିଯିବ । ତେବେ ଯାଇ ପରମାତ୍ମାଙ୍କ ସହିତ ଏକରୂପ ହୋଇଯିବ ।

ଗାଢ଼ ନିଦ୍ରାରେ ବ୍ରହ୍ମର ଅନୁଭୂତି ହୁଏ । ଜାଗରଣରେ ଯଦି ଏହି ପ୍ରକାର ଅନୁଭୂତି ହେବ ଯେ ମୁଁ ବ୍ରହ୍ମ, ତାହାହେଲେ ଯଥେଷ୍ଟ ହେଲା । ଜାଗ୍ରତ ଅବସ୍ଥାରେ, ନିଦ୍ରାବସ୍ଥାର "ଭେକେଣ୍ଟ ମାଇଣ୍ଡ୍" (ଶୂନ୍ୟମନ)ର ଅନୁଭବ ଆଣିବାକୁ ହେବ । ଜାଗୃତିରେ ଅଲିପ୍ତ ରହିବା, ଆଖି ଆଗରେ ଗଛ, ଘାସ, ପିମ୍ପୁଡ଼ିକୁ ଦେଖି ସେଗୁଡ଼ିକୁ ଦ୍ରଷ୍ଟାରୂପେ ଦେଖିବାକୁ ହେବ ।

ଶୋଇବା ମଧ୍ୟରେ ଅନିୟମିତତାର ଅର୍ଥ ହେଉଛି ସମାଧି ପ୍ରତି ଅନାଦର । କର୍ମଯୋଗୀ ନିକଟରେ ନିଦ୍ରା ସହଜଲଭ୍ୟ ସମାଧି । ସମାଧିରେ ବିଚାରର ଯେତେ ବିକାଶ ହୋଇଥାଏ, ସେତେ

ବିକାଶ ଜାଗ୍ରତ ଅବସ୍ଥାର ଚିନ୍ତନରେ ହୁଏ ନାହିଁ । ଏ ପ୍ରକାର ଅନୁଭୂତି ମୋର ଭଲ ଭାବରେ ଅଛି । ସେଥିପାଇଁ ମୁଁ ଯେତବେଳେ ଶୋଇବାକୁ ଯାଏ, ସେତେବେଳେ ମୁଁ ଶେଷଥର ପାଇଁ ଶୋଇଛି । ଏପରି ଅନୁଭୂତି ମୋର ହୁଏ । ନିଃସ୍ୱପ୍ନ ପ୍ରଗାଢ଼ ନିଦ୍ରାରେ ଜୀବାତ୍ମା ନିଜ ମୂଳ ସ୍ୱରୂପରେ ଲୀନ ହୋଇଥାଏ । ସେଠାରେ ତାହାକୁ ଶକ୍ତି ପ୍ରାପ୍ତ ହୋଇଥାଏ । ସେଥିପାଇଁ ସତ୍ୟାନୁସନ୍ଧାନକାରୀକୁ ନିଦ୍ରା ବାବଦରେ ଆଗ୍ରହ ରଖିବାକୁ ହେବ ।

ସ୍ୱପ୍ନ ଏକ ଅତ୍ୟନ୍ତ ସୂକ୍ଷ୍ମ ବିଷୟ ଅଟେ । ସେଥିରେ ଅନେକ କଥା ରହିଛି । କିଛି ଶାରୀରିକ କିଛି ମାନସିକ, କିଛି ପୂର୍ବଜନ୍ମର ଅର୍ଥାତ୍ ନିଜ ଆୟତ୍ତର ବାହାରର ବିଷୟ ମଧ୍ୟ ସ୍ୱପ୍ନ ଆସେ । ଆପଣ ଶୋଇଛନ୍ତି । ଆପଣଙ୍କ ଘୋଡ଼େଇ ହୋଇଥିବା ଚାଦର ଆପଣଙ୍କ ନାକ ପର୍ଯ୍ୟନ୍ତ ଆସି ଯାଇଛି । ଆପଣଙ୍କୁ ସ୍ୱପ୍ନରେ ଗଳାବନ୍ଧ ହୋଇଗଲା ଭଳି ଦେଖାଯିବ । ଏହି ଛୋଟ ଘଟଣା ସ୍ୱପ୍ନରେ ବିକଟ ରୂପ ଧାରଣ କଲା । ଭିତରେ ଯେଉଁ ମନ ଅଛି ସେ ବିଲ୍‌କୁଲ ଛୋଟପିଲା ଅବସ୍ଥାରେ ରହିଛି । ବୁଦ୍ଧିର ତାଡ଼ନା ନାହିଁ । ଏ ଅବସ୍ଥାରେ ସେ କବି ଭାବରେ ବିଭିନ୍ନ କବିତା ତିଆରି କରେ । ଯାହା ଆମକୁ ସ୍ୱପ୍ନରେ ଦେଖାଦିଏ । ଶାରୀରିକ ବେମାରୀ, ଆଳସ୍ୟ ଭୋଜନରେ ଅନିୟମିତତା, ଖାଇବାରେ ଅସଂଯମ, ଏହି ସବୁ କାରଣରୁ ମଧ୍ୟ ସ୍ୱପ୍ନ ଆସିଥାଏ । ନିଦ୍ରା ଗୋଟିଏ ସମାଧି । ଗାଢ଼ ନିଦ୍ରାରେ ସମାଧିର କାର୍ଯ୍ୟ ହୋଇଥାଏ । ଏହା ପାଇଁ ଗୋଟିଏ ଉପାୟ ଅଛି । ଶୋଇବା ପୂର୍ବରୁ ଯେତେ ଭଲ ବ୍ୟବସ୍ଥା ହୋଇ ପାରିବ ତାହା କରି ସାରି ନାମ ସ୍ମରଣ କରୁ କରୁ ଶୋଇ ଯିବା ଦରକାର । ନାମ ସ୍ମରଣ କରିବା ଦ୍ୱାରା ମନ ଉପରେ ତାର ପ୍ରଭାବ ପଡ଼ିବ ଓ ସ୍ୱପ୍ନ ଆସିବ ନାହିଁ ।

ସ୍ୱପ୍ନ ଜୟ ଦୁଇ ପ୍ରକାରର ଅଟେ । (୧) ସୁସ୍ୱପ୍ନତା, (୨) ନିଃସ୍ୱପ୍ନତା । ସୁସୁପ୍ତି ଜୟର ଅର୍ଥ ସୁସୁପ୍ତିରେ ବିଚାରର ନିତ୍ୟ ବିକାଶ ।

ନିଦ୍ରା ଏବଂ ଜାଗୃତି, ଏହି ଦୁଇଟିର ଗୁଣ ମିଶି ସମାଧି ହୋଇଥାଏ । ଦୁଇଟିର ଦୋଷ ମିଶିଲେ ସ୍ୱପ୍ନ ହୁଏ ।

ନିଃସ୍ୱପ୍ନ ଗାଢ଼ ନିଦ୍ରା କିପରି ଆସିବ ଏହା ଏକ ସନାତନ ପ୍ରଶ୍ନ । ଏହି ପ୍ରଶ୍ନ ପୂର୍ବ କାଳରୁ ଚାଲି ଆସିଛି । ବେଦରେ ଋଷି ପ୍ରାର୍ଥନା କରିଛନ୍ତି — ପରା ଦୁଃସ୍ୱପ୍ନ୍ୟଂ ସୁବହେ ଭଗବାନ ! ମୋର ଦୁଃସ୍ୱପ୍ନ ଗୁଡ଼ିକୁ ନେଇ ଯାଅ । ବିଷ୍ଣୁ ସହସ୍ର ନାମରେ -- ପୁଣ୍ୟୋ ସୁଃସ୍ୱପ୍ନ ନାଶନଃ -- ସେ ପୁଣ୍ୟ ସ୍ୱରୂପ, ଆମର ଦୁଃସ୍ୱପ୍ନ ଗୁଡ଼ିକୁ ନାଶ କରି ଦିଅନ୍ତୁ । ରବିନ୍ଦ୍ରନାଥ ଲେଖିଛନ୍ତି — ଦୁଃସ୍ୱପ୍ନେ ଆତଂକେ ରକ୍ଷା-କରିଲେ ଅଂକେ, ସ୍ନେହମୟୀ ତୁମି ମାତା — ହେ ସ୍ନେହମୟୀ ମା' - ଦୁଷ୍ଟା ସ୍ୱପ୍ନରେ, ଆତଂକରେ ଆମକୁ ତୁମେ କୋଳରେ ନେଇ ରକ୍ଷା କରିଛ ।

ନିଦ କିପରି ହେବ ? ଉପନିଷଦ କହିଛି -- ଯଥା କୁମାରୋ ବା, ମହାରାଜୋବା, ମହା ବ୍ରାହ୍ମଣୋ ବା, ଅତି ଘ୍ନାଂ ଆନନ୍ଦସ୍ୟ ଗତ୍ୱା ଶୟୀତ । ଯେପରି ସୁକୁମାର ଶିଶୁ, ବା ଜନକଙ୍କ ପରି ରାଜା, ବା ବଶିଷ୍ଠଙ୍କ ପରି ମହାଜ୍ଞାନୀ ଆନନ୍ଦର ଶେଷ ସୀମାରେ ପହଂଚି ଶୟନ କରନ୍ତି — ଯେପରି ନିଶ୍ଚିନ୍ତ, ସ୍ୱପ୍ନହୀନ, ଗଭୀର ।

ସ୍ୱପ୍ନହୀନ ନିଦ୍ରା ପାଇଁ -- (୧) ଦିନସାରା କାମ କରି ଶରୀର ସଂପୂର୍ଣ୍ଣ ଭାବରେ କ୍ଳାନ୍ତ ହୋଇଗଲେ, ଶୋଇବା ମାତ୍ରେ ହିଁ ନିଦ ଆସବ -- ଗଭୀର ଆଉ ନିଃସ୍ୱପ୍ନ, (୨) ଦିନସାରାର କାମ ପୁରା ହେଲା, ଏହି ସମାଧାନ ଫଳରେ ଶାନ୍ତ ନିଦ୍ରା, (୩) ଦୀର୍ଘ ଶ୍ୱାସ-ପ୍ରଶ୍ୱାସର ଉତ୍‌ଥାନ-ପତନ, ମିନିଟକୁ ୧୨ ଥର କରିବା ଆବଶ୍ୟକ, ଦୀର୍ଘ ଶ୍ୱାସ-ପ୍ରଶ୍ୱାସ ଯିବା ଆସିବା କରିବା ଫଳରେ କାମ-କ୍ରୋଧ ବିଚାର ଚକ୍ର ସବୁ ଶେଷ ହୋଇଯିବ, (୪) ନାମ ସ୍ମରଣ, (୫) ଖାଇବା ପରେ ସଂଗେ ସଂଗେ ଶୋଇବା କଥା ନୁହେଁ, ପେଟରେ କ୍ରିୟା ଚାଲୁଥିବା ପର୍ଯ୍ୟନ୍ତ ନିଦ ଆସିବ ନାହିଁ ।

ଧ୍ୟାନାବସ୍ଥାରେ ଜାଗ୍ରତ ନିଦ୍ରା ହେବା ପ୍ରୟୋଜନ । ଗାଢ଼ ନିଦ୍ରାରେ ସଂପୂର୍ଣ୍ଣ ଭାବରେ ବିସ୍ମୃତି ଆସିଥାଏ ଦେହର, ମନର ଏବଂ ଇନ୍ଦ୍ରିୟର । ସ୍ୱପ୍ନ ମଧ୍ୟରେ ଚେତନାର ଆଭାସ ଥାଏ । ଗଭୀର ନିଦ୍ରାରେ ଏହି ଆଭାସ ମଧ୍ୟ ରହେ ନାହିଁ । ଗାଢ଼ ନିଦ୍ରାରେ କ'ଣ ହୁଏ ? ଇନ୍ଦ୍ରିୟ ସବୁ ରହେ ନାହିଁ । ମନ ରହେ ନାହିଁ । ଧିରେ ଧିରେ ସବୁ କାମ ଶେଷ ହୋଇ ଯାଏ ଏବଂ ଆମେ କେବଳ ସାକ୍ଷୀ ରୂପରେ ଅବସ୍ଥାନ କରୁ । ଏହା ଏକପ୍ରକାର ସମାଧି । ଏହି ପରି ଆମେ ଧ୍ୟାନରେ ଯଦି ଅନୁଭବ କରିବୁ ତେବେ ସମାଧିର ଅନୁଭବ ମିଳିବ । ପୁଣି ଏହି ଅନୁଭବ ପରେ ଆସିବ ଅର୍ଥାତ୍ କାମ କରୁ କରୁ ମଧ୍ୟ ଅନୁଭୂତ ହେବ ଆଉ ତାହା ସହଜ ହେବ ।

ନିଦ୍ରାବସ୍ଥାରେ ଆମେ ଆମର ଭିନ୍ନ ଭିନ୍ନ ବିବିଧତାକୁ ଭୁଲି ଏକରୂପ ହୋଇଯାଉ । ସେହିପରି ଅନୁଭବ ଧ୍ୟାନରେ ଆସିଥାଏ । ନିଦ୍ରା ସମୟରେ କୌଣସି ପ୍ରକାର ନ୍ୟୂନତା ବା ଉଚ୍ଚତା ରହେ ନାହିଁ । ଧ୍ୟାନରେ ମଧ୍ୟ ଏହି ପରି ଅନୁଭୂତି ଆସେ । କିନ୍ତୁ ଧ୍ୟାନାବସ୍ଥାରେ ଅନୁଭୂତି ନିଦ୍ରାବସ୍ଥାର ଅନୁଭୂତି ଠାରୁ ଉଚ୍ଚକୋଟୀର ହୋଇଥାଏ । କାରଣ ନିଦ୍ରା ସମୟର ଅନୁଭୂତି ବେଳେ ମନୁଷ୍ୟ ପ୍ରାୟ ଶୂନ୍ୟ ଅବସ୍ଥାରେ ପହଂଚି ଥାଏ । କିନ୍ତୁ ଜାଗ୍ରତ ଅବସ୍ଥାର ଧ୍ୟାନ ସମୟରେ ଆମର ନିଜ ଅସ୍ତିତ୍ୱର ଅନୁଭବ ବଜାୟ ରହେ । ଏଥିପାଇଁ ଏହି ଧ୍ୟାନକାଳୀନ ଅନୁଭୂତି ମଣିଷର ବ୍ୟାବହାରିକ ଜୀବନରେ ଅନେକ କାମରେ ଆସେ ।

## ଗ). ଧ୍ୟାନ - ସମାଧି ଏବଂ ଜ୍ଞାନ - ସମାଧି :

* ଧ୍ୟାନ ସମାଧି ହେଲା ବୃତ୍ତି, ତାର ଅରୋହଣ, ଅବରୋହଣ ଅଛି ।
* ଜ୍ଞାନ ସମାଧି ସ୍ଥିର, ତାର ଆରୋହଣ ଅବରୋହଣ ନାହିଁ ।
* ପାତଞ୍ଜଳିର ଶେଷ ଶବ୍ଦ 'ଯୋଗ', ସମାଧି ନୁହେଁ ।
* ଯୋଗର ସାଧନ ପ୍ରଜ୍ଞା ।
* ଧ୍ୟାନ ସମାଧିକୁ ପ୍ରଜ୍ଞା ଲାଭର ସାଧନ କୁହାଯାଏ ।

ପତଞ୍ଜଳିଙ୍କର ଯୋଗ ଶାସ୍ତ୍ର ପାଇଁ 'ସମାଧି' ଶବ୍ଦର ଅର୍ଥ 'ଧ୍ୟାନ ସମାଧି' ନାମରେ ପ୍ରସିଦ୍ଧି ଲାଭ କରିଛି ।

ପତଞ୍ଜଳି ନିଜେ ମଧ ଧ୍ୟାନ ସମାଧିକୁ ଶେଷ ପର୍ଯ୍ୟାୟ ବୋଲି ମାନି ନାହାନ୍ତି । ପାତଞ୍ଜଳିଙ୍କ ସୂତ୍ର ସୁବ୍ୟବସ୍ଥିତ ଏବଂ ଉପଲବ୍ଧି ଆଧାରିତ ଶାସ୍ତ୍ର । ତାଙ୍କର ସମୁଦାୟ ଏକଶହ ପଞ୍ଚାନବେଟି ସୂତ୍ର ମଧ୍ୟରୁ ପ୍ରଥମ ତିନୋଟି ସୂତ୍ର ସାର ସ୍ୱରୂପ । ବ୍ରହ୍ମ ସୂତ୍ରର ଚତୁଃସୂତ୍ରୀ ପରି ଯୋଗ ସୂତ୍ରରେ ଏହା ହେଉଛି ତ୍ରିସୂତ୍ରୀ ।

(୧) ଅଥ ଯୋଗାନୁ ଶାସନମ୍ ।

(୨) ଯୋଗଶ୍ଚିତ୍ତ ବୃତ୍ତି-ର୍ନିରୋଧଃ ।

(୩) ତଦା ଦ୍ରଷ୍ଟୁଃ ସ୍ୱରୂପେ ସ୍ୱସ୍ଥାନମ୍ ।

ଏହି ତିନୋଟି ସୂତ୍ର ଦ୍ୱାରା ସମଗ୍ର ଶାସ୍ତ୍ର ସଂକ୍ଷେପରେ ସମାପ୍ତ ହୋଇଯାଇଛି । କିନ୍ତୁ ଏଥିରେ କେଉଁଠି ସମାଧିର ନାମ ପର୍ଯ୍ୟନ୍ତ କରା ହୋଇ ନାହିଁ । ଏଥିରେ ଅଛି -- ପ୍ରାପ୍ତବ୍ୟ ହେଲା ଯୋଗ ଏବଂ ଚିତ୍ତବୃତ୍ତି ନିରୋଧ ହେଲା ତାର ବ୍ୟାଖ୍ୟା । ସମାଧି ଅର୍ଥାତ୍ ଧ୍ୟାନ ସମାଧି ଏକ ବୃତ୍ତି ଏବଂ ତାର ବ୍ୟବହାର ବୃତ୍ତି-ନିରୋଧ ରୂପୀ ଯୋଗ ସିଦ୍ଧି ପାଇଁ ଶିରୋମଣି ସାଧନ ପଦ୍ଧତି ରୂପେ ପତଞ୍ଜଳି ବର୍ଣ୍ଣନା କରିଛନ୍ତି । ଶ୍ରଦ୍ଧା, ବୀର୍ଯ୍ୟ ସ୍ମୃତି-ସମାଧି-ପ୍ରଜ୍ଞା ପୂର୍ବକଃ -- ଏସବୁ ହେଲା ତାଙ୍କ ମତରେ ଯୋଗାହୁତ ହେବାର ସୋପାନ । ଆରମ୍ଭରେ ଶ୍ରଦ୍ଧା, ତାଠାରୁ ବୀର୍ଯ୍ୟ, ଅର୍ଥାତ୍ ଉତ୍ସାହ । ତାପରେ ସ୍ମୃତି ଅର୍ଥାତ ଆତ୍ମସ୍ମରଣ ସିଦ୍ଧ ହେଲେ ତନ୍ମୟତା ରୂପ ଧ୍ୟାନ-ସମାଧି । ତାପରେ ପ୍ରଜ୍ଞା ଏବଂ ପ୍ରଜ୍ଞା ସ୍ଥିର ହେଲେ ଯୋଗ । ଏହି ସବୁ ସୋପାନ ଅତିକ୍ରମ କରିପାରିଲେ ଯୋଗ ପ୍ରାପ୍ତି ହୁଏ । ଏହାର ଅର୍ଥ ହେଉଛି, ଯୋଗ ପ୍ରାପ୍ତି ପାଇଁ ସମାଧି ପରେ ପ୍ରଜ୍ଞା କଥା କହିଛନ୍ତି । ଯୋଗ ହିଁ ହେଲା ପାତଞ୍ଜଳି ଦର୍ଶନର ସର୍ବଶେଷ କଥା । ତାର ସାଧନ ହିସାବରେ ସେ ପ୍ରଜ୍ଞାର କଥା କହିଛନ୍ତି ଏବଂ ସମାଧିକୁ ପ୍ରଜ୍ଞା ଲାଭର ଉପାୟ ସ୍ୱରୂପ ବର୍ଣ୍ଣନା କରିଛନ୍ତି । ସମାଧିର ଧ୍ୟାନାବସ୍ଥା ଚାଲିଯାଇ ଯେତେବେଳେ ତାହା ସବୁ ସମୟ ପରି ସ୍ୱାଭାବିକ ସ୍ଥିତିର ଅବସ୍ଥା ପ୍ରାପ୍ତ ହୁଏ ସେତେବେଳେ ତାହା ପ୍ରଜ୍ଞାର ଅବସ୍ଥା ।

ଧ୍ୟାନ ସମାଧି ହେଉଛି ଆରୋହଣ, ଅବରୋହଣ ଧର୍ମୀ ସମାଧି । ସ୍ଥିତପ୍ରଜ୍ଞର ସମାଧି ତା ଠାରୁ ଭିନ୍ନ । ତାହା ହେଲା ଜ୍ଞାନ ସମାଧି । ତାର ଆରୋହଣ ନାହିଁ ଅବରୋହଣ ମଧ ନାହିଁ । 'ନୈନାଂ ପ୍ରାପ୍ୟ ବିମୁହ୍ୟତି' — ଏହି ଭାବରେ ତାର ବର୍ଣ୍ଣନା କରାହୋଇଛି । ଅର୍ଥାତ୍ ସ୍ଥିତପ୍ରଜ୍ଞର ଗୋଟିଏ ସ୍ଥିତିଶୀଳ ଅବସ୍ଥା । ଏହା ବୃତ୍ତି ନୁହେଁ । ଧ୍ୟାନ ସମାଧି ଏକପ୍ରକାର ବୃତ୍ତି । ଚାରି-ପାଞ୍ଚ ଦିନ ସ୍ଥାୟୀ ରହିବା ପରେ ମଧ ତାହା ଓହ୍ଲାଇ ଯିବାର ଅପେକ୍ଷାରେ ଥାଏ ।

ସମାଧି ଶବ୍ଦରେ 'ସମ୍' ଓ 'ଆ' ଉପସର୍ଗ ଅଛି ଆଉ 'ଧା' ଧାତୁ ଅଛି । ସମାଧାନ ଶବ୍ଦର ବ୍ୟୁତ୍ପତ୍ତି ମଧ ଏହିପରି । ଚିତ୍ତର ସମାଧାନର ସ୍ଥିତି ଅର୍ଥାତ୍ ସମାଧି । ସମାଧାନମାନେ ଚିତ୍ତ ସାମ୍ୟ ଅବସ୍ଥାରେ, ସମାନ ଅବସ୍ଥାରେ ରହିବା । ସମାଧାନର ସ୍ୱରୂପ ହେଲା -- ଚିତ୍ତ କେଉଁଥିରେ ଲାଗି ରହିବ ନାହିଁ, କୌଣସି ଥିରେ ସଂବନ୍ଧ ରଖିବ ନାହିଁ, କେଉଁଥିରେ ବୁଡ଼ି ପଡ଼ିବ ନାହିଁ କିମ୍ବା କୌଣସି ପଦାର୍ଥ, ଶରୀର, ସ୍ଥୂଳ ବିଷୟ-ବାସନା ବା କଳ୍ପନା ସହିତ ଆସକ୍ତ ହେବ

ନାହିଁ । ଏହା ହେଲା ସମାଧାନର ସ୍ୱରୂପ । ପଲା ଦଣ୍ଡୀର ଦୁଇପାଖର ପଲା ,ଏକେବାରେ ସମାନ ହେଲେ ସେତେବେଳେ ନିକିତି ଓଜନ ସମାନ ବୋଲି କୁହାଯାଏ । ଏହା ହେଉଛି ପାଲା ଦଣ୍ଡୀର ସମାଧାନ । ତୁଳା ଦଣ୍ଡର ଦଣ୍ଡଟି ପରି ଚିତ୍ତର ଅବସ୍ଥାନ ସମତୁଲ । ଅଚଳ ଏବଂ ଶାନ୍ତ ହୋଇଗଲେ ତାର ସମାଧାନ ହୋଇଯାଏ । ଏହି ସମାଧି ସବୁବେଳ ପାଇଁ ସ୍ଥିତିଶୀଳ ହୁଏ । କେତେବେଳେ ସୁଦ୍ଧା ଭାଂଗି ଯିବାର ସଂଭାବନା ରୁହେ ନାହିଁ । ସମାଧିରେ ଏହିପରି ଏକ ସ୍ଥିତିରେ ରହିଲେ ଚିତ୍ତ ସର୍ବଦା ଅଚଞ୍ଚଳ, ଶାନ୍ତ ସ୍ଥିତିଶୀଳ ଅବସ୍ଥାରେ ରହେ । ଏ ଜୀବନରେ ଯାହାକୁ ସବୁଠାରୁ ବଡ଼ ପ୍ରାପ୍ତି ବୋଲି କହୁହାଯାଏ ତାହାହେଲା ଅନ୍ତଃ ସମାଧାନ । ତାହା କେବେଳ ପ୍ରାପ୍ତି ନୁହେଁ ବରଂ ଏକ କର୍ତ୍ତବ୍ୟ । ଯାହାଦ୍ୱାରା (ଜୀବନର) ସମାଧାନ ପ୍ରାପ୍ତି ହୁଏ ତାହା ହିଁ ମଣିଷର କର୍ତ୍ତବ୍ୟ । ତାହାକୁ ଶାସ୍ତ୍ରରେ ସମାଧି ବୋଲି ଉଲ୍ଲେଖ କରାଯାଇଛି ।

ସ୍ଥିତପ୍ରଜ୍ଞ ଅବସ୍ଥାରେ ଯେଉଁ ସମାଧି ହୁଏ ତାହା ବୃତ୍ତି ନୁହେଁ, ତାହା ହେଲା ନିବୃତ୍ତି । 'ନିବୃତ୍ତି' ଶବ୍ଦ ଶୁଣିଲେ ଲୋକ ବିବ୍ରତ ହୋଇ ପଡ଼ନ୍ତି । ସେମାନେ କହନ୍ତି, ଏହା ତ ମୌନ ହୋଇ ବସିଯିବା କଥା । କିନ୍ତୁ ଏକଥା ଠିକ୍ ନୁହେଁ । ଶେଷ ପର୍ଯ୍ୟନ୍ତ ଚୁପ୍ ହୋଇ ବସିଯିବା ମଧ୍ୟ ଏକ ବୃତ୍ତି । ସ୍ଥିତପ୍ରଜ୍ଞ ମଧ୍ୟରେ ସେହି ବୃତ୍ତି ମଧ ରୁହେ ନାହିଁ । ସେ ସବୁ ବିଷୟରୁ ନିବୃତ୍ତ । ଏହାର ଅର୍ଥ ନୁହେଁ ଯେ ସେ ଧ୍ୟାନ କରିବ ନାହିଁ । କୌଣସି ସେବା କାର୍ଯ୍ୟ ବିଷୟରେ ଚିନ୍ତା କରିବା ପାଇଁ କିମ୍ବା ଅବସର ସମୟରେ କିଛି କିଛି ଧ୍ୟାନ ସେ କରିବ, କିନ୍ତୁ ତାହା ତାର ଲକ୍ଷଣ ନୁହେଁ । ତାର ଲକ୍ଷଣ ହେଲା -- ସେ ସ୍ଥିର ବୁଦ୍ଧି । କର୍ମଯୋଗ ଯେପରି ଏକ ଉପଯୋଗୀ ସାଧନ, ଧ୍ୟାନ ମଧ ସେହିପରି ଏକ ପ୍ରୟୋଜନୀୟ ସାଧନ । କିନ୍ତୁ କର୍ମ ଯୋଗ ପରି ଧ୍ୟାନ ସ୍ଥିତପ୍ରଜ୍ଞର ସ୍ଥିତି ନୁହେଁ ।

ଯୋଗ ଶାସ୍ତ୍ରରେ ପାଞ୍ଚ ପ୍ରକାର ବୃତ୍ତିର ଉଲ୍ଲେଖ ରହିଛି । ଏହି ପାଞ୍ଚ ପ୍ରକାର ବୃତ୍ତିରୁ ପୃଥକ୍ ହେବା ହିଁ ଯୋଗ ଅଟେ । ପଞ୍ଚବିଧ ବୃତ୍ତି ବନ୍ଦ କରିବାର ଅର୍ଥ କ'ଣ ? ପଞ୍ଚବିଧ ବୃତ୍ତିରେ ପ୍ରମାଣ, ବିକଳ୍ପ, ନିଦ୍ରା, ସ୍ମୃତି ଓ ବିପର୍ଯ୍ୟୟ ଆସିଥାଏ । ନିଦ୍ରା କ'ଣ ବନ୍ଦ କରାଯାଇ ପାରିବ ? ବିକଳ୍ପ କ'ଣ ବନ୍ଦ କରାଯାଇ ପାରିବ ? ବହି ପଢ଼ିବାକୁ ଗଲେ ବିକଳ୍ପର ଆବଶ୍ୟକତା ରହିଛି । 'ଗୋ', 'ରୁ' ଏହି ଦୁଇଟି ଅକ୍ଷରରୁ ଆପଣ ଗାଈ ବୁଝି ପାରିବେ । ଆପଣଙ୍କୁ ମୁଁ 'ଚିନି ପଠାଇ ଦିଅନ୍ତୁ' ଏ କଥା ଲେଖିଲେ ଆପଣ ଚିନି ନାମକ ପଦାର୍ଥଟିକୁ ପଠାଇ ଦେବେ । 'ଚି', 'ନି' ଏହିପରି ଦୁଇଟି ଅକ୍ଷରକୁ ପଠାଇବେ ନାହିଁ । ଏହାକୁ ଯୋଗ ଶାସ୍ତ୍ରର ପରିଭାଷାରେ 'ବିକଳ୍ପ' କହନ୍ତି । ଏହା ବିନା ଚଳିବ ନାହିଁ । ବୃତ୍ତିଗୁଡ଼ିକ ମଧ୍ୟରୁ ବ୍ୟବହାରିକ ଜୀବନରେ 'ପ୍ରମାଣ' ସବୁବେଳେ ଉତ୍ତମ । 'ବିକଳ୍ପ' ଭଲ ହୋଇପାରେ, ମନ୍ଦ ମଧ ହୋଇପାରେ । ନିଦ୍ରାର ପ୍ରୟୋଜନୀୟତା ରହିଛି କିନ୍ତୁ ତାହା ପରିମିତ ହେବା ଉଚିତ । 'ସ୍ମୃତି' ଭଲ ହୋଇପାରେ, ମନ୍ଦ ମଧ ହୋଇପାରେ । 'ବିପର୍ଯ୍ୟୟ' ସବୁବେଳେ ମନ୍ଦ ହୁଏ । ଏହି ସବୁ ଭଲ ମନ୍ଦ ବୃତ୍ତି ଗୁଡ଼ିକର ନିରୋଧ ବା ସଂଯମ ହିଁ ହେଉଛି ଯୋଗ । ଏହାର ଅର୍ଥ ହେଉଛି ଯେ, ଯେଉଁ ସମୟରେ ଏହି ବୃତ୍ତିଗୁଡ଼ିକ ମନରେ ଉଦୟ ହେବ ସେତେବେଳେ ଅନ୍ତର୍ଜଗତରେ କୌଣସି ବାଧା ଆସିବ ନାହିଁ । ଏ ପ୍ରକାର ଅବସ୍ଥାକୁ ଯୋଗ କହନ୍ତି । ଯୋଗ ହେଲା ସ୍ୱାଭାବିକ ସ୍ଥିତି ଏବଂ ସମାଧି ହେଲା ବୃତ୍ତି । ତାହା କିଛି ଦିନ ଏକାଦିକ୍ରମେ ଚାଲିପାରେ । କିନ୍ତୁ ତାର ଏତେ ବେଶୀ ପ୍ରୟୋଜନ ନାହିଁ ।

ଯୋଗସୂତ୍ର ସଂପର୍କରେ ଯୋଗଶାସ୍ତ୍ରରେ କୁହାହେଉଛି, ପାଂଚ ପ୍ରକାର ବୃତ୍ତିରୁ ପୃଥକ୍ ହେବା ପାଇଁ ସାଧନ ସ୍ୱରୂପ ଆଠଟି ସୋପାନ -- ଯମ-ନିୟମ-ଆସନ-ପ୍ରାଣାୟାମ-ପ୍ରତ୍ୟାହାର-ଧାରଣା, ଧ୍ୟାନ, ସମାଧି) । ସେଗୁଡ଼ିକ ମଧ୍ୟରେ ସର୍ବଶେଷ ସୋପାନ ହେଲା ସମାଧି । ଅର୍ଥାତ୍ ଧ୍ୟାନ ସମାଧି । କିନ୍ତୁ ଧ୍ୟାନ ସମାଧିକୁ ଯୋଗ କୁହାଯାଏ ନାହିଁ, କାରଣ ତାହା ମଧ୍ୟ ଗୋଟିଏ ପ୍ରକାର ବୃତ୍ତି । ତାହା ସର୍ବଶେଷ ବୃତ୍ତି ହେଲେ ମଧ୍ୟ ତାକୁ ଯୋଗ କୁହାଯାଏ ନାହିଁ । ଯୋଗ ଅର୍ଥାତ୍ ସବୁ ବୃତ୍ତିର ଅଭାବ ଅଥବା ସଠିକ୍ ଭାଷା ପ୍ରୟୋଗ କଲେ କୁହାଯିବ ଯେ ସବୁ ପ୍ରକାର ବୃତ୍ତିର ପ୍ରଭାବର ଅଭାବ । ଧ୍ୟାନ ବୃତ୍ତିର ପରିପକ୍ୱ ପରିଣତି ହେଲା ସମାଧି । ଏମିତିରେ ମଣିଷର ବୃତ୍ତି ବିକ୍ଷିପ୍ତ ଅର୍ଥାତ୍ ଚଞ୍ଚଳ ବା ଗତିଶୀଳ ଶୂନ୍ୟ । ସମାଧି ପ୍ରାପ୍ତ ହେଲେ ତାହା ସେତିକି ସମୟ ପାଇଁ ସ୍ଥିର ହୋଇଥାଏ ।

ସମାଧି ଅବସ୍ଥାରେ ପ୍ରଧାନ ଲାଭ ହେଉଛି ଅନ୍ୟ ସବୁ ବୃତ୍ତିକୁ ଦୂର କରି ଏକମାତ୍ର ଇଷ୍ଟଦେବଙ୍କୁ ଚିନ୍ତା କରିବାର ବୃତ୍ତି ବ୍ୟକ୍ତି ମଧ୍ୟରେ ଅବଶିଷ୍ଟ ରହେ । ଇଷ୍ଟଦେବଙ୍କ ମଧ୍ୟରେ ସବୁ ପ୍ରକାର ମଙ୍ଗଳକାରୀ ଗୁଣ ପରିପୂର୍ଣ୍ଣ । ଏପରି ଆମେ ମନେକରୁ । ଏଥିପାଇଁ ତାଙ୍କ ଚିନ୍ତା ଆମ ହୃଦୟର ଆବର୍ଜନା ଧୋଇ ଦେବା କାମରେ ଅତ୍ୟନ୍ତ ସହାୟକ ବୋଲି ମନେ କରୁ । କିନ୍ତୁ ଏହି ଧ୍ୟାନ ସମାଧି ମଧ୍ୟ କିଛି ସମୟ ପରେ ଶେଷ ହୋଇଯାଏ । ଧ୍ୟାନ ସମାଧି ରୂପ ବୃତ୍ତିକୁ ଅତିକ୍ରମ କରିବାପରେ ବୃତ୍ତିଶୂନ୍ୟ ସ୍ଥିରତାର ଆବିର୍ଭାବ ହୁଏ । ଏହାକୁ ଯୋଗଶାସ୍ତ୍ର 'ପ୍ରଜ୍ଞା' ବୋଲି ଅଭିହିତ କରିଛି । ଏହି ପ୍ରଜ୍ଞା ସ୍ଥିତିଶୀଳ ହେଲେ ଚିତ୍ତ ସ୍ୱଭାବତଃ ହିଁ ନିର୍ମଳ, ପ୍ରସନ୍ନ, ଶାନ୍ତ ଓ ଆତ୍ମନିଷ୍ଠ ହୁଏ । ଏହାକୁ ବ୍ରାହ୍ମୀସ୍ଥିତି ଆଖ୍ୟା ଦିଆଯାଇଛି । ଏହି ସ୍ଥିତି ହିଁ ସ୍ଥିତପ୍ରଜ୍ଞର ସର୍ବଦା ସ୍ଥିତିଶୀଳ ସ୍ୱାଭାବିକ ଅବସ୍ଥା ।

ପତଞ୍ଜଳୀଙ୍କ ମତରେ ସମାଧି ମୁଖ୍ୟତଃ ଦୁଇପ୍ରକାର - ସଂପ୍ରଜ୍ଞାତି ଏବଂ ଅସଂପ୍ରଜ୍ଞାତି । ଆଉ ତା ଭିତରେ ରହିଛି ସବିତର୍କ, ନିର୍ବିତର୍କ, ସବିଚାର, ନିର୍ବିଚାର - ଏହିପରି ଚାରିପ୍ରକାର ଅବସ୍ଥା । କିନ୍ତୁ ଶଂକରାଚାର୍ଯ୍ୟ ଭିତରେ ତିନ୍ ଏବଂ ବାହାରେ ତିନ୍ ଏ ଭାବରେ ଛଅ ପ୍ରକାର ସମାଧିର କଥା କହିଛନ୍ତି ।

ସେ ସମଗ୍ର ବିଶ୍ୱକୁ ପାଞ୍ଚଭାଗରେ ବିଭକ୍ତ କରିଛନ୍ତି ।

ଅସ୍ତିଭାତି ପ୍ରିୟଂ ରୂପଂ ନାମ ଚେତ୍ୟଂଶ ପଞ୍ଚକମ୍ -

ଆଦ୍ୟତ୍ରୟଂ ବ୍ରହ୍ମରୂପଂ ଜଗଦ୍‌ରୂପଂ ତତୋ ଦ୍ୱୟମ୍ ।

ଅସ୍ତି ଭାତି ପ୍ରିୟ- ଏମାନେ ତିନ ଏବଂ ରୂପ, ନାମ ଏମାନେ ହେଲେ ଦୁଇ । ଆଦ୍ୟତ୍ରୟଂ ଅର୍ଥାତ୍ ପ୍ରଥମ ତିନିଟି ବ୍ରହ୍ମର ରୂପ ଏବଂ ଶେଷ ଦୁଇଟି ରୂପ ଏବଂ ନାମ । ଜଗତର ରୂପ । ବ୍ରହ୍ମର ସ୍ୱରୂପ ହେଲା - ଅସ୍ତି - ହେବା, ଭାତି - ପ୍ରକାଶ ପାଇବା, ଦୀପ୍ତ ହେବା, ପ୍ରିୟ - ଭଲ ଲାଗିବା, ଏହାକୁ ସହଜ, ସରଳ ପ୍ରଚଳିତ ଭାଷାରେ ସଚ୍ଚିଦାନନ୍ଦ କୁହାଯାଏ ।

ଶଂକରାଚାର୍ଯ୍ୟଙ୍କ ମତରେ ସଚ୍ଚିଦାନନ୍ଦ ଅଭିନ୍ନ ଏବଂ ଯେଉଁ ଭିନ୍ନତା ଦେଖାଯାଏ, ତାହା ରୂପ ଏବଂ ନାମର ଭେଦ । ଅତଏବ -

ଉପେକ୍ଷ ନାମ ରୂପେ ଦ୍ୱେସଚ୍ଚିଦାନନ୍ଦ ତତ୍ପରଃ
ସମାଧ୍ ସର୍ବଦା କୁର୍ଯ୍ୟାତ୍ ହୃଦୟେ ବାଧବା ବହିଃ ।।

ନାମ ରୂପର ଉପେକ୍ଷା କରି, ସଚ୍ଚିଦାନନ୍ଦରେ ପ୍ରଯତ୍ନଶୀଳ ହୋଇ ତହିଁରେ ମଗ୍ନ ରହି ସର୍ବଦା ସମାଧ୍ ଅବସ୍ଥାରେ ରୁହ । କେଉଁଠି ସମାଧ୍ କରାହେବ ? ହୃଦୟେ ବା ଧବା ବହିଃ - ହୃଦୟରେ ବା ବାହାରର କେଉଁ ବସ୍ତୁକୁ କେନ୍ଦ୍ର କରି, ନାମ-ରୂପର ଉପେକ୍ଷା କରି ସଚ୍ଚିଦାନନ୍ଦ ସାଗରରେ ତନ୍ମୟ ହୋଇଯାଅ । ଅନ୍ତରରେ ଯାହା ବାହାରେ ମଧ ତାହା ହିଁ କର । ପ୍ରକ୍ରିୟା ଏପରି ହେବ ଯେ, ସଚ୍ଚିଦାନନ୍ଦ ରୂପ ଅନ୍ୟ କିଛି ଧ୍ୟେୟ ବସ୍ତୁ ହେବ ନାହିଁ । କିପରି ଭାବରେ ସମାଧିସ୍ଥ ହୋଇପାରିବ ତାର ସାଧାରଣ ନିୟମ ଏଠାରେ କୁହାଗଲା । ତଦନୁସାରେ ଛଅ ପ୍ରକାର ସମାଧିର କଥା ଟିକିଏ ପରେ ଉଲ୍ଲେଖ କରୁଛି । ହୃଦୟ ଏହି ତିନିପ୍ରକାରର ଏବଂ ବାହାର ତିନିପ୍ରକାରର ସମାଧ୍ ସର୍ବଦା କରିବାକୁ ହେବ । ଏକ ମୂହୁର୍ତ୍ତ ମଧ ଏପରି ଭାବରେ ନ ଯାଉ ଯାହା ଏହି ଛଅଟି ମଧ୍ୟରୁ କୌଣସି ଏକ ଶ୍ରେଣୀରେ ନ ପଡ଼ିବ ।

ସବିକଳ୍ପୋ ନିର୍ବିକଳ୍ପଃ ସମାଧ୍ ଦ୍ୱିବିଧେ ହୃଦି ।
ଦୃଶ୍ୟ ଶବ୍ଦାନୁବେଧେନ ସ-ବିକଳ୍ପଃ ପୁନ ଦ୍ୱିଧା ।।

ସବିକଳ୍ପୋ ନିର୍ବିକଳ୍ପଃ ସମାଧ୍ ଦ୍ୱିବିଧୋହୃଦି - ହୃଦୟେରେ ଦୁଇ ପ୍ରକାରର ସମାଧ୍ କରାଯାଇ ପାରିବ । ସବିକଳ୍ପ ଏବଂ ନିର୍ବିକଳ୍ପ । ସବିକଳ୍ପର ଦୁଇଟି ଶ୍ରେଣୀ ଦୃଶ୍ୟାନୁବୋଧ ଏବଂ ଶବ୍ଦାନୁବୋଧ । ଦୃଶ୍ୟାନୁବୋଧ ଅର୍ଥାତ୍ ଦୃଶ୍ୟ ସହିତ ସଂବଦ୍ଧଯୁକ୍ତ । ଅନ୍ୟଟି ଶବ୍ଦାନୁବୋଧ ଯାହା ଶବ୍ଦ ସହିତ ସଂବଧିତ । ପ୍ରଥମଟି ହେଲା ଦୃଶ୍ୟ ସହିତ ସଂପର୍କୀତ ସବିକଳ୍ପ ସମାଧ୍ । ଏହା ବିକଳ୍ପ ମନର ଏକ ସ୍ୱରୂପ । ମନ ସଂକଳ୍ପ ଏବଂ ବିକଳ୍ପ କରିଥାଏ । ବିକଳ୍ପ ଅର୍ଥାତ୍ ସଂଶୟ । କିନ୍ତୁ ଏଠାରେ ବିକଳ୍ପ ଅର୍ଥ କଳ୍ପନା । କେବଳ ମାତ୍ର କଳ୍ପନା, ଏହା ଏକ ପ୍ରକାର ସମାଧ୍ ଯାହାର ଆଧାର କଳ୍ପନା । ଅନ୍ୟଟି ନିର୍ବିକଳ୍ପ ଅର୍ଥାତ୍ କଳ୍ପନାର ଆଧାର ନାହିଁ । ଦୃଶ୍ୟାନୁବୋଧ ଓ ଶବ୍ଦାନୁବୋଧ ଦୁଇପ୍ରକାର ସମାଧ୍ ହୃଦୟରେ କରାହେବ । ଦୃଶ୍ୟ ବାହାରେ ରହିଛି, ତାହାହେଲେ ଭିତରେ କିପରି ଭାବରେ ସମାଧ୍ ହେବ ? ସେଥିରେ ବ୍ୟାଖ୍ୟା କରାଗଲା -

କାମାନ୍ୟାଶ୍ ଚିତ୍ତ-ଗା ଦୃଶ୍ୟାମ୍ ତତ୍ ସାକ୍ଷିତ୍ୱେନ ଚେତନମ୍ ।
ଧାୟେତ୍ ଦୃଶ୍ୟାନୁବିଧୋହୟଂ ସମାଧ୍ ସ - ବିକଳ୍ପକଃ ।।

ଆଜିର ଦୁନିଆରେ ଦୁଇଟି ବାଦ ପ୍ରଚଳିତ - ଗୋଟିଏ ହେଉଛି ଆଇଡ଼ିଆଲିଜିମ୍ (ଆଦର୍ଶବାଦ) ଅନ୍ୟଟି ହେଉଛି ରିୟାଲିଜିମ୍ (ବାସ୍ତବବାଦ) । କାଣ୍ଟ୍ ଏବଂ ହେଗେଲ୍ ଥିଲେ ଆଦର୍ଶବାଦୀ, ମାର୍କସ୍ ଥିଲେ ବାସ୍ତବବାଦୀ । କାଣ୍ଟ୍ କହିଥିଲେ ଯେ ଚିତ୍ତର ବିଷୟ ଗୁଡ଼ିକର ରୂପାନ୍ତର ଘଟେ । ଯାହାର ଚିତ୍ତ ଯେପରି ସେ ସେହିପରି ଦେଖେ । କଳା ଚଷମା ପିନ୍ଧିଲେ ସାରା ଦୁନିଆ

କଳା ଦେଖାଯିବ । ଲାଲ୍ ଚଷମା ପିନ୍ଧିଲେ ଲାଲ ଦେଖାଯିବ । ଯଥା ଦୃଷ୍ଟି, ତଥା ସୃଷ୍ଟିଃ । ସୃଷ୍ଟିର ରୂପ ଗୌଣ । ଚିତ୍ତ ପ୍ରଧାନ । ଚିତ୍ତ ଯେଉଁପ୍ରକାର ଚିନ୍ତା କରିବ ସୃଷ୍ଟି ସେହିପ୍ରକାର ତିଆରି ହେବ । ଏ ପ୍ରକାର କଥା ଯେଉଁମାନେ କହନ୍ତି, ସେମାନଙ୍କୁ ଆଦର୍ଶବାଦୀ କୁହାଯାଏ ଏବଂ ଧେୟବାଦୀ ବା ଆଇଡ଼ିୟାଲିଷ୍ଟ ମଧ୍ୟ କୁହାଯାଏ ।

କେତେକ ଲୋକ ମନେ କରନ୍ତି, ଦୋଷଯୁକ୍ତ ଜିନିଷ ଖାଇଛି, ମଦ୍ୟପାନ କରିଛି ତେଣୁ ଅସୁବିଧା ଆରମ୍ଭ ହୋଇଛି । ଚିତ୍ତ ଉପରେ କିପରି ପ୍ରଭାବ ପଡ଼େ, ବିଷ ଉପରେ ଚିତ୍ତର ପ୍ରଭାବ କାହିଁକି ପଡ଼େ ନାହିଁ । ଏହାର ଅର୍ଥ, ଇନ୍ଦ୍ରିୟ ବାହ୍ୟ ସୃଷ୍ଟି ପ୍ରଧାନ । ଚିତ୍ତ ଗୌଣ - ଯେଉଁମାନେ ଏପ୍ରକାର ଭାବନ୍ତି ସେମାନେ ବାସ୍ତବବାଦୀ । ମାର୍କସ୍ ଏମାନଙ୍କ ମଧ୍ୟରେ ଥିଲେ । ସେ କହୁଥିଲେ ବାହାରେ ପରିବର୍ତ୍ତନ କର ତାହାହେଲେ ଚିତ୍ତ ବଦଳିବ । କାଣ୍ଟ୍ କହନ୍ତି, ଚିତ୍ତକୁ ବଦଳାଅ ତାହାହେଲେ ଦୁନିଆ ବଦଳିବ । ଏବେ ଚିତ୍ତ ପ୍ରଧାନ ଯଥା ଚୈତ୍ୟ - ପ୍ରଧାନର ଉତ୍ତର ଶଂକରାଚାର୍ଯ୍ୟ ଦେଇଛନ୍ତି ।

ଶଂକରାଚାର୍ଯ୍ୟ କହନ୍ତି - ଚିତ୍ତ ଏବଂ ଚୈତ୍ୟ ଦୁଇଟିଯାକ ବାହ୍ୟ ବସ୍ତୁ । ଦୁଇଟି ଯାକକୁ ମୁଁ ଦେଖିପାରେ । ଉଭୟେ ଏକ ଶ୍ରେଣୀଯୁକ୍ତ । ଆଉ ମୁଁ ଏହି ଦୁଇଜଣଙ୍କଠାରୁ ଭିନ୍ନ । ମୁଁ ଆତ୍ମତତ୍ତ୍ୱ । ଘଡ଼ିର ବ୍ୟବହାର ମୁଁ ସାକ୍ଷୀରୂପେ କରେ । ଘଡ଼ି ପଛେଇଗଲେ ତାକୁ ଦୁଇମିନିଟ୍ ଆଗେଇ ଦିଏ, ଆଗେଇଗଲେ ପଛେଇ ଦିଏ । ଘଡ଼ିକୁ ବିଶୃଙ୍ଖଳ ହେବାକୁ ଦିଏ ନାହିଁ । ଆଉ ଯଦି ଘଡ଼ି ଖରାପ ହୋଇଯାଏ ତାହାହେଲେ ତାକୁ ମରାପତି କରେ । ଚିତ୍ତ ବାବଦରେ ଏହିପରି କରିବା ଦରକାର । ଯେତେବେଳେ ଦେଖୁଛ ଯେ ଚିତ୍ତ ବିଷୟାଯୁକ୍ତ, ଯେଉଁଥିରେ ବିଷୟ ଉତ୍ପନ୍ନ ହୁଏ ସେପରି ବସ୍ତୁର ସଂଯୋଗରେ ଆସିବା ଉଚିତ ନୁହେଁ । ତାକୁ କଷ୍ଟ ଦେବାର ସୁଯୋଗ ଦେବାକୁ ହେବ ନାହିଁ । ତାତ୍ପର୍ଯ୍ୟ ହେଉଛି, ଚିତ୍ତ ମୋ ନିକଟରେ ଦୃଶ୍ୟ ସ୍ୱରୂପ । ମୁଁ ତାର ଦ୍ରଷ୍ଟା । ହୃଦୟରେ ସମାଧି କରିବାକୁ ହେଲେ କେଉଁ ଜାତୀୟ ଦୃଶ୍ୟ ହେବ ? ଚିତ୍ତ ସ୍ୱୟଂ ଦୃଶ୍ୟ । ଚିତ୍ତ କଣ ଦୃଷ୍ଟ ହୁଏ । ଚିତ୍ତଗତ, ଅର୍ଥାତ୍ ଚିତ୍ତ ମଧ୍ୟରେ ଥିବା କାମ ଇତ୍ୟାଦି ଯେଉଁ ବିକାର, ସେଗୁଡ଼ିକ ଦେଖିବାର ଧ୍ୟାନ କର । ଏହା ହେଲା ଦୃଶ୍ୟାନୁବିଦ୍ଧ ସବିକଳ୍ପ ସମାଧି ।

ତତ୍ ସାକ୍ଷିତ୍ୱେନ - ତାହାକୁ ସାକ୍ଷୀରୂପେ ମାନିନେଇ ନିଜର ଧ୍ୟାନ କରନ୍ତୁ । ଆମେ ଯେ ଚୈତନ୍ୟ ସ୍ୱରୂପ ତାହାର ଧ୍ୟାନ କରନ୍ତୁ । ଆମେ ନିରପେକ୍ଷ ସାକ୍ଷୀ ସ୍ୱରୂପ । ବୃତ୍ତିଗୁଡ଼ିକ ମନରେ ଉଦୟ ହୁଅନ୍ତି । ପୁଣି ଚାଲି ଯାଆନ୍ତି । ଆମେ ସେଗୁଡ଼ିକଠାରୁ ଅଲଗା । ତାହାହେଲେ ନିଜର ସମାଧି ହୋଇଗଲା । ବର୍ତ୍ତମାନ ଆଗ ରାସ୍ତାଦେଇ ସାଇକେଲ୍ ଆସିଲା ଆଉ ଗଲା । ମୋ ଉପରେ ତାର କି ପ୍ରଭାବ ପଡ଼ିଲା ? ଆମେ ଆଉ ଆପଣମାନେ ତନ୍ମୟ ହୋଇ ଶୁଣୁଛୁ । ଏହିପରି ଚିତ୍ତରେ କିଛି ଆସିଲା - ରାମ ଗଲେ ତ ରାମ ଆସିଲେ, ଗଲେ, ଆମେ ସାକ୍ଷୀ ରୂପେ ରହିଲୁ । ଆମ ଉପରେ ତାର ପ୍ରଭାବ ପଡ଼ିବ ନାହିଁ । ଏହାରି ନାମ ଦୃଶ୍ୟାନୁବିଦ୍ଧ ସମାଧି । ସାକ୍ଷୀର ରୀତି ଅନୁଯାୟୀ ଚେତନାର ଅର୍ଥାତ୍ ନିଜର ଧ୍ୟାନ କରିବା । ଦୃଶ୍ୟର ସହିତ ମିଶିଯାଇ ହୃଦୟରେ ସବିକଳ୍ପ ସମାଧି କରିବା । ଏହା ହେଲା ଭିତରର । ଏହିପରି ବାହାରେ ମଧ୍ୟ କରିବାକୁ ହେବ । ତାପରେ ବୁଝାଇ ଦିଆଯାଇଛି ।

ଅସଙ୍ଗ ସଚ୍ଚିଦାନନ୍ଦଃ ସ୍ୱ-ପ୍ରଭୋ ଦ୍ୱୈତ ବର୍ଜିତଃ
ଅସ୍ମୀତି-ଶବ୍ଦବିଦ୍ଧୋହୟଂ ସମାଧିଃ ସ- ବିକଳ୍ପଃ ॥

ଏଠାରେ ଶବ୍ଦାନୁବିଦ୍ଧ ସମାଧି ଦେଖିବାକୁ ହେବ । ଶବ୍ଦାନୁବିଦ୍ଧ ଅଧିକ ସୂକ୍ଷ୍ମଃ । ଏଠାରେ ଦୃଶ୍ୟ ସହିତ ସମ୍ବନ୍ଧ ନାହିଁ । ସମ୍ବନ୍ଧ ଅଛି ଶବ୍ଦ ସହିତ । ମୁଁ କିପରି ଅଛି ? ନିଃସଙ୍ଗ, ସଚ୍ଚିଦାନନ୍ଦ, ଏବଂ ସ୍ୱୟଂପ୍ରଭ । ଏଠାରେ ଶବ୍ଦ ହେଲା ସ୍ୱ-ପ୍ରଭୋ କିନ୍ତୁ ତାହା ସ୍ୱୟଂପ୍ରଭ ଅଛି । ଅର୍ଥାତ୍ ଯାହାର ସ୍ୱୟଂ ପ୍ରଭା ଅଛି । ଯେ ସ୍ୱ ପ୍ରକାଶୀ, (ଯେ ନିଜକୁ ପ୍ରକାଶ କରିବାର ଓ ଦୀପ୍ତିମାନ୍ ହେବାର କ୍ଷମତା ରଖିଛି) ଦ୍ୱୈତ ମୋତେ ଛାଡ଼ି ଦେଇଛି । ଏହି ପଦ୍ଧତିରେ, ଯେଉଁ ସମାଧି ଶବ୍ଦ ସହିତ ସମ୍ବନ୍ଧ ରକ୍ଷାକରେ ତାହାକୁ ଶବ୍ଦ ବିଦ୍ଧ ସମାଧି କୁହାଯାଏ । ହୃଦୟରେ କାମନା ଆଦି ବୃତ୍ତିର ସାକ୍ଷୀ ସ୍ୱରୂପ ଅବସ୍ଥାନ, ଏପରି କଳ୍ପନା ଏଠାରେ ନାହିଁ । ଏଠାରେ ମୁଁ ସ୍ୱାଧୀନ ଭାବରେ ସଂଗହୀନ, ସଚ୍ଚିଦାନନ୍ଦ, ଦ୍ୱୈତ ବର୍ଜିତ ।

ସ୍ୱାନୁଭୂତି-ରସାବେଶାତ୍ ଦୃଶ୍ୟ-ଶବ୍ଦାନ୍‌ଉପେକ୍ଷିତୁଃ
ନିର୍ବିକଳ୍ପ ସମାଧିଃ ସ୍ୟାତ୍ ନିବାତସ୍ଥିତ-ଦୀପବତ୍ ॥

ଦୃଶ୍ୟ ଏବଂ ଶବ୍ଦ ଦୁଇଟିକୁ ଏଠାରେ ଉପେକ୍ଷା କରାଯାଇଛି । ଦୁଇଟିଯାକ ଏଠାରେ ମୁକ୍ତିଲାଭ କରିଛନ୍ତି । କିନ୍ତୁ ଆବେଶ ଏହି ଶବ୍ଦଟି ଆସୁଛି । ଆତ୍ମାନୁଭୂତି ରସର ଆବେଗ । ଅର୍ଥାତ୍ ତାହା ରସରେ ପରିପୂର୍ଣ୍ଣ । ପ୍ରତି କଣାରେ ପୂରି ରହିଛି । ଯେପରି ବାହାର କାନ୍ଧରେ ଭୂତ ସବାର ହୋଇଥାଏ । ସେହିପରି ଏହି ରସ ଆରୋହି ହୋଇ ଚାପି ବସେ । ପୁଣି ଏହି ରସ ଯାହାଉପରେ ସବାର ହୋଇରହେ, ସେ ଦୃଶ୍ୟ ଏବଂ ଶବ୍ଦକୁ ଉପେକ୍ଷା କରି ଆତ୍ମାନୁଭୂତିରେ ମଗ୍ନ ହୋଇଯାଏ । ତାହାର ନିର୍ବିକଳ୍ପ ସମାଧି ଲାଭ ହୁଏ । ସେଥିପାଇଁ ନିବାତ ସ୍ଥିତିଶୀଳ ଦୀପର ଉପମା ଦିଆଯାଇଅଛି । ନିବାତ ଅର୍ଥାତ୍ ନିଶ୍ଚଳ । 'ନି' ଏବଂ 'ନିର' ଦୁଇଟିର ଅର୍ଥ ହେଲା "ନା" । ନିଶ୍ଚଳ ସ୍ଥିତର ଦୀପ ପରି ଏହାର ବୃତ୍ତି ଶାନ୍ତ । ନିଶ୍ଚଳ ଅଟଳ ସ୍ଥିର ହୁଏ । ଅସ୍ଥିର ଜ୍ୟୋତି ନୁହେଁ । ସୁଖ ଆଡ଼କୁ ଆକର୍ଷଣ ନାହିଁ । ଦୁଃଖ ପ୍ରତି ମଧ୍ୟ ଆକର୍ଷଣ ନାହିଁ । ସୁଖ-ଦୁଃଖ-ଭିନ୍ନ ଆନନ୍ଦ ବିରାଜ କରୁଛି । ସୁଖ ଓ ଦୁଃଖ ହେଲା ଦ୍ୱନ୍ଦାତ୍ମକ । ଆନନ୍ଦ ହେଲା ଦ୍ୱନ୍ଦାତ୍ମକ । ଆନନ୍ଦ ଯେପରି ଦୁଃଖର ଅତୀତ, ସେହିପରି ସୁଖର ମଧ୍ୟ ଅତୀତ ।

ରସଲବ୍ଧ ଆନନ୍ଦକୁ ବିଘ୍ନ ସ୍ୱରୂପ କୁହାଯାଏ ଅପରୋକ୍ଷାନୁଭୂତି ପ୍ରସଙ୍ଗ ବେଳେ, ସମାଧି ସମୟରେ ଯେଉଁ ସବୁ ବିଘ୍ନ ଆସିପାରେ ତାର ତାଲିକା ପରବର୍ତ୍ତୀ ଆଲୋଚନାରେ ଦିଆଯାଇଛି । ସେଥିରେ ରସସ୍ୱାଦ ଯେ ବିଘ୍ନ ସ୍ୱରୂପ ତାହା କୁହାଯାଇଛି । ଲୟଃ, ତମଃ ଚ ବିକ୍ଷେପଃ ରସାସ୍ୱାଦଶ୍ଚଃ ଶୂନ୍ୟତା । ତାପରେ ଏହି ଶ୍ଳୋକ । ମଗ୍ନତା ଆସେ ଆଖି ଆଗରେ ଅନ୍ଧାର ଦେଖାଯାଏ । ରସାସ୍ୱାଦ, ଆନନ୍ଦମୟ ଅନୁଭବ ଏବଂ ଶୂନ୍ୟତା ସର୍ବଯୋଗୀ ବିଘ୍ନ । ଧ୍ୟାନ ସମାଧିରେ ଏହା ଅତି ବୃହତ୍ ବିଶ୍ରାମ ସ୍ଥାନ ଏବଂ ଗୁଣ ବୋଲି ଧରାଯାଇଛି । କିନ୍ତୁ ଜ୍ଞାନ ସମାଧି ଦୃଷ୍ଟିରୁ ଏହା ହେଉଛି ବିଘ୍ନ ।

ଆତ୍ମାନୁଭୂତ ରସର ଆବେଶ ସାଧାରଣତଃ ଲୋକମାନଙ୍କର ହୁଏ ନାହିଁ । ଏଥିପାଇଁ ଏହା ଏକପ୍ରକାର ବିଘ୍ନ, ଏପ୍ରକାର କଥା ଲୋକମାନଙ୍କୁ କୁହାଯାଏ ନାହିଁ । କିନ୍ତୁ ଯେତେବେଳେ

କୌଣସି ସଂଘର ଆଲୋଚନା ଚକ୍ରରେ ଏକଥା କହିବା ସମ୍ଭବ ଯେ ଏହା ମଧ ଗୋଟିଏ ପ୍ରକାର ବିଘ୍ନ - ତେବେ ଶୂନ୍ୟତାକୁ ମଧ ବିଘ୍ନ କୁହାଯିବ ।

ଉଲ୍ଲେଖ କରାଯାଇଥିବା ଶ୍ଳୋକରେ "ନିବାତସ୍ଥିତ" ଶବ୍ଦଟି ରହିଛି । "ନିବାତ"ର ଦୁଇଟି ଅର୍ଥ ଅଛି । (୧) ନିର୍ବାପିତ ହୋଇଥିବା ପ୍ରଦୀପ ପରି ଏବଂ (୨) ଅଟଳ, ସ୍ଥିର ଜ୍ୱଳନ୍ତ ଦୀପଶିଖା ପରି ଶାନ୍ତ । ବୌଦ୍ଧମାନଙ୍କର (ଶୂନ୍ୟବାଦୀ ବୌଦ୍ଧମାନଙ୍କର) ଅନୁରାଗ ନିର୍ବାପିତ ପ୍ରଦୀପ ପରି, ଏହା ନିର୍ବାଣ ଦୃଷ୍ଟି । ବୈଦିକମାନଙ୍କର ଅନୁରାଗ ଜ୍ୱଳନ୍ତ ପ୍ରଦୀପ ଆଡ଼କୁ ଥାଏ ।

ହୃଜୀବ ବାହ୍ୟେ—ଦେଶେହପି ଯସ୍ମିନ୍ କସ୍ମିଂଷ୍ଚ ବସ୍ତୁନି ।
ସମାଧିର ଆଦ୍ୟଃ ସନ୍‌ମାତ୍ରାତ୍ ନାମରୂପ-ପୃଥକ୍ କୃତି ॥

ଯେପରି ହୃଦୟ ମଧରେ ଦୁଇ ପ୍ରକାରର ସମାଧି ହୁଏ, ସେହିପରି ବାହାରେ ମଧ ଦୁଇ ପ୍ରକାର ସମାଧି କରିବାକୁ ହେବ । ବାହାରେ କୌଣସି ବସ୍ତୁକୁ କେନ୍ଦ୍ର କରି ସମାଧି ହୁଏ । ଯେପରି ଏହି ଘଡ଼ିଟି । ଏହାର ଘଡ଼ି ନାମ ଏବଂ ଗୋଲାକାର ରୂପକୁ ଘଡ଼ି ଠାରୁ ଅଲଗା କରାଗଲା । ଘଡ଼ିର ମୂଳ ସ୍ୱରୂପ ହେଲା ସତ୍ (ଅସ୍ତିତ୍ୱ) ଏହି ସତ୍ ରୂପ ଉପରେ ଘଡ଼ି ନାମ ଏବଂ ଗୋଲାକାର ରୂପର ଆରୋପ ହୋଇଛି, ଯେଉଁ କାରଣରୁ ଏହି ବସ୍ତୁ ଅନ୍ୟ ବସ୍ତୁଠାରୁ ଅଲଗା ହୋଇଛି । ନାମ ଏବଂ ରୂପର ଆରୋପ ଦୂର କରି ଦେଲେ ଅବଶିଷ୍ଟ କ'ଣ ରହିବ ? 'ଅସ୍ତି' ଅର୍ଥାତ୍ 'ସତ୍' ବଂଚିବ । ଘଡ଼ି ବେଳକୁ ଯାହା ପେନ୍‌ସିଲ୍ କ୍ଷେତ୍ରରେ ମଧ ସେଇଆ । ନାମ ଏବଂ ରୂପକୁ ଅଲଗା କରି ତାହାର ସତ୍ ସ୍ୱରୂପର ଧାନ କରନ୍ତୁ । ସତ୍ ରୂପରୁ ନାମ ଏବଂ ରୂପକୁ ଧାନ କରନ୍ତୁ । ଏହା ହେଲା ପୃଥକ୍ କୃତି ।

ସାଧାରଣ ଭାବରେ ଧାନ ପାଇଁ ଯେଉଁ ସବୁ ବାହ୍ୟ ବସ୍ତୁକୁ ନିର୍ବାଚନ କରାଯାଏ ତାହା ପରମ୍ପରା ଅନୁଯାୟୀ ହୋଇଥାଏ । ଶୈବମାନେ ଶିବଲିଂଗଙ୍କୁ ବାଛି ନିଅନ୍ତି, ବୈଷ୍ଣବମାନେ ଶାଳଗ୍ରାମ ଶିଳା, ଗଣେଶ ଭକ୍ତମାନେ ଗଣପତିଙ୍କୁ ବାଛି ନିଅନ୍ତି । ଧାନ ପାଇଁ ଯଦି ଶିବଲିଂଗ, ସ୍ୱସ୍ତିକ, ତ୍ରିକୋଣ, ଓଁ ଅକ୍ଷର ରାମ ଅକ୍ଷର ବ୍ୟବହାର କରାଯିବ, ତେବେ ଘଡ଼ିକୁ ମଧ ନିଆଯାଇ ପାରିବ । ଘଡ଼ି ତ ସବୁବେଳେ ପାଖରେ ଥାଏ । ଯାହାର ଧାନ ଯେପରି, ତାର ମନ ସେହି ପ୍ରକାର ହୁଏ । ଘଡ଼ିର ଧାନ କଲେ ଧାନାବସ୍ଥାରେ ଘଡ଼ିରେ ଲୀନ ହୋଇଯିବେ । ତାପରେ ସମାଧି ଶେଷ ହୋଇଗଲେ ମଣିଷ ଘଡ଼ି ପରି ନିୟମିତ ହୋଇଯିବ, ଜୀବନରେ ଏହି ଗୁଣର ପ୍ରତିଫଳନ ହେବ ।

ସାରାଂଶ ହେଉଛି, ଧାନ ପାଇଁ କି ପ୍ରକାର ବସ୍ତୁ ବାଛି ନେବାକୁ ହେବ ତାହା ଗୌଣ । ଯେଉଁ ବସ୍ତୁର ବ୍ୟବହାର ଅଭ୍ୟାସଗତ ତାହା ନିର୍ବାଚନ କରନ୍ତୁ । କିନ୍ତୁ ଏପରି ବସ୍ତୁ ମଧ ନେଇ ପାରିବେ ଯାହା ଆପଣଙ୍କୁ ମୋହଗ୍ରସ୍ତ କରିଛି ଏବଂ କଷ୍ଟ ଦେଇଛି । ଏହି ବସ୍ତୁର ସତ୍ ରୂପ ଦେଖନ୍ତୁ । ଦୃଶ୍ୟ ମଧ ପରିତ୍ୟାଗ କରାଗଲା, ଶବ୍ଦ ମଧ ଗଲା, ନାମ ରୂପ ମଧ ଗଲା, ସେତେବେଳେ ସଚ୍ଚିଦାନନ୍ଦ ମୂର୍ତ୍ତିମାନ ହୋଇ ଉଠିବ ।

ଅଖଣ୍ଡୈ କରମଂ ବସ୍ତୁ ସଚ୍ଚିଦାନନ୍ଦ-ଲକ୍ଷଣମ୍,
ଇତ୍ୟ ବିଚ୍ଛିନ୍ନ-ଚିନ୍ତେୟଂ ସମାଧିର ମଧ୍ୟମୋ ଭାବେତ୍ ।

ଇତି ଅବିଚ୍ଛିନ୍ନ ଚିନ୍ତା ଇୟମ୍ । ଏଠାରେ ଚିନ୍ତା ଅର୍ଥ ଚିନ୍ତନ କରିବା । ଅଖଣ୍ଡ ଚିନ୍ତନ କରନ୍ତୁ । ଯେହେତୁ ବସ୍ତୁ ଅଖଣ୍ଡ ଏକରସ । ତାର ଲକ୍ଷଣ ହେଉଛି ସଚ୍ଚିଦାନନ୍ଦ । କେବଳ ମାତ୍ର ସତ୍ ରୂପ ନୁହେଁ, ଚିତ୍ ରୂପ ମଧ୍ୟ । ପୁଣି ସେ ମଧ୍ୟ ଆନନ୍ଦ ରୂପ । ଧ୍ୟାନ ପ୍ରକ୍ରିୟା ଅନେକ ପ୍ରକାରର ହୁଏ । ତାରି ଆଧାରରେ ଗୀତାର ଦଶମ ଅଧ୍ୟାୟ ପ୍ରତିଷ୍ଠିତ । ବିଭୂତି-ଚିନ୍ତନରେ ଅନେକ ପ୍ରକାର ବିଭୂତିର କଥା କୁହାଯାଇଛି । ଏପରିକି ଦ୍ୟୁତଂଛଳୟତାମସ୍ମି -- ଦ୍ୟୁତ ପର୍ଯ୍ୟନ୍ତ ଏକ ପ୍ରକାର ବିଭୂତି । କେତେ ଲୋକଙ୍କୁ ଚଳାଉଛି । ଏହାର ଅର୍ଥ ହେଉଛି ଯେ, ଯେଉଁ ବସ୍ତୁ ହେଉନା କାହିଁକି, ତାର ନାମ, ରୂପ ଅଲଗା କରି ନେଲେ ଯାହା ବାକି ରହିବ ତାହା ହେଲା ସଚ୍ଚିଦାନନ୍ଦ ।

ସ୍ତବଧୀ ଭାବୋ ରସାସ୍ୱାଦାତ୍ ତୃତୀୟଃ ପୂର୍ବବନ୍ ମତଃ ।
ଏତୈଃ ସମାଧିଭିଃ ଷଡ଼ଭିର୍ ନୟେତ୍ କାଳଂ ନିରନ୍ତରମ୍ ॥

ବର୍ତ୍ତମାନ ତୃତୀୟ ନିର୍ବିକଳ୍ପ ସମାଧି । ରସାସ୍ୱାଦନ ଫଳରେ ଚିତ୍ତ ସ୍ତବ୍ଧ ହୋଇଯାଏ । ସ୍ତବ୍ଧୀଭାବଃ ଅର୍ଥାତ୍ ସ୍ତମ୍ଭିତ ହୋଇଯିବା । ଏଠାରେ ରସାସ୍ୱାଦନ ଫଳରେ ସ୍ତବ୍ଧ ହେବାର ଅର୍ଥ ହେଲା ସଂକୁଚିତ ହେବା ।

ଏହି ଛଅ ପ୍ରକାରର ସମାଧି ମଧ୍ୟରେ ଚବିଶ ଘଣ୍ଟା ସମୟ ଅତିବାହିତ କରନ୍ତୁ । ତାତ୍ପର୍ଯ୍ୟ ହେଉଛି, ଖାଇବାକୁ ବସିବେ, କଥା କହିବେ, ପ୍ରତିଟି କାର୍ଯ୍ୟରେ ସମାଧି ହେବ । କେଉଁ ଖାଦ୍ୟ ବସ୍ତୁ ମୁହଁରେ ଦେଇ ସମାଧିସ୍ଥ ହେବେ, ତାହାକୁ ଦୃଶ୍ୟାନୁବିଦ୍ଧ ସମାଧି କୁହାଯିବ । କିନ୍ତୁ ଏହି ତୃତୀୟଟି ନିର୍ବିକଳ୍ପ ସମାଧି । ଅର୍ଥାତ୍ ମୁହଁରେ କୌଣସି ବସ୍ତୁ ରଖି ମଧ୍ୟ ସମାଧିସ୍ଥ ରହିବେ । ଏହାର ଅର୍ଥ ସବୁ ପ୍ରକାର କାର୍ଯ୍ୟ ସହିତ ସମାଧି ହେବା । ଏହି ଛଅ ପ୍ରକାର ସମାଧି ବାହାରେ ସମୟ ଅତିବାହିତ କରିବେ ନାହିଁ । କଥା କହିବା ବେଳେ ସମାଧି, ଶୋଇବାକୁ ଯିବାବେଳେ ସମାଧି, ଖାଇବା ସମୟରେ, ପିଇବା ସମୟରେ ସମାଧିସ୍ଥ ରହିବା । ଗୋରା କୁମ୍ଭାର ଏହିପରି ସମାଧି ଅବସ୍ଥାରେ ଥିଲା, କାମ କରୁଥିଲା, ମାଟି ତିଆରି କରିବାରେ ବ୍ୟସ୍ତ ଥିଲା, ଦୁଇ ପାଦରେ ମାଟି ମାଡୁଥିଲା ଏଇ ସମୟରେ ପିଲାଟି ମଝିକୁ ଚାଲି ଆସିଲା ଆଉ ମାଟିରେ ପେଶି ହୋଇଗଲା । ସମାଧି ଅବସ୍ଥାରେ ହୁଏତ ସେ ଏକାମ କରିଥିବ । କିନ୍ତୁ ଯାହାକୁ ଜ୍ଞାନ ସମାଧି କୁହାଯାଏ, ଯାହା ମଣିଷ ପାଇଁ ଭଲ, ଯାହା ଲାଭ କରିବା ବାଞ୍ଛନୀୟ, ଗୀତାରେ ଯାହାକୁ ସ୍ଥିତପ୍ରଜ୍ଞ ବୋଲି ଅଭିହିତ କରା ହୋଇଛି, ସେଥିରେ ଏହି ପ୍ରକାର ସମାଧିକୁ ବାଧାସୃଷ୍ଟିକାରୀ ବୋଲି ଉଲ୍ଲେଖ କରାହୋଇଛି ।

ଏପ୍ରକାର ସମାଧି ସର୍ବଦା ଅର୍ଥାତ୍ ଚବିଶ ଘଣ୍ଟା କରିବା ପାଇଁ କୁହାଯାଏ, ଏହି ସମାଧି ପରିଣାମରେ ଜ୍ଞାନ ସମାଧିରେ ରୂପାନ୍ତରିତ ହେବା ବାଞ୍ଛନୀୟ । ପରେ କୁହାଯାଇଛି --

ଦେହାଭିମାନେ ଗଲିତେ ବିଜ୍ଞାତେ ପରମାତ୍ମନି ।
ଯତ୍ର ଯତ୍ର ମନୋ ଯାତି ତତ୍ର ତତ୍ର ସମାଧୟଃ ॥

ଉପରେ ଯେଉଁ ସମାଧି କଥା କୁହାଯାଇଛି ତାହା କରୁ କରୁ ଦେହାଭିମାନ ରହିବ ନାହିଁ । ଦେହାଭିମାନ ଯେପରି ଦ୍ରବୀଭୂତ ହେବ, ତାପାଇଁ ଉପରେ ବର୍ଣ୍ଣନା କରାଯାଇଥିବା ସମାଧି କରିବାକୁ ହେବ । ଦେହାଭିମାନ ଦୂର ହେବା ପରେ ପରମାତ୍ମାଙ୍କୁ ଭଲ ରୂପେ ଜାଣିବା ସଂଭବ ହେବ, ଅର୍ଥାତ୍ ଆତ୍ମସାକ୍ଷାତକାର ହେବ । ଆତ୍ମ-ଅନୁଭବ ହେବ । ପୁଣି ଯେଉଁଠି ଯେଉଁଠି ମନ ଭ୍ରମଣ କରିବ ସେହି ସବୁ ଜାଗାରେ ସମାଧି ହେବ । ଏହା ଲାଭ କରିବାକୁ ହେବ । ଉପରେ ଯେଉଁ ଛଅ ପ୍ରକାର ସମାଧିର କଥା ଉଲ୍ଲେଖ କରାଯାଇଛି ତାହା ଏଇଥି ପାଇଁ ।

## ଘ). ସାମୂହିକ - ସାଧନ, ସାମୂହିକ - ସମାଧି :

* ସାମୂହିକ ସାଧନା, ବିଜ୍ଞାନର ଆବାହନ ।
* ବିନ୍ଦୁ ସିନ୍ଧୁରେ ଲୀନ ହୋଇଗଲେ ତେବେ ଯାଇ ତାର ମହତ୍ୱ ।
* ସମାଧିରେ ସମତା ଆଣିବାକୁ ହେବ ।
* ଭେଦାଭେଦହୀନ ସମାଜ ବ୍ୟବସ୍ଥାର ମୂଳଦୁଆ ଉପରେ ସାମାଜିକ ସମାଧି ରଚିତ ହେବ ।
* ସମୂହ ରୂପରେ ଆଧାତ୍ମିକ ଦର୍ଶନ ଲାଭର ଯୁଗ ।

ଯୋଗୀ ନିର୍ଜନରେ ବସି ଧାନ ଚିନ୍ତନ କରନ୍ତି । ଏହି ଚିନ୍ତନ ମଧ ସମସ୍ତେ ଏକାଠି ବସି କରିବା ସଂଭବ । ଏହି ସାମୁହିକ ଚିନ୍ତନ ଦ୍ୱାରା ଯେଉଁ ଲାଭ ହୁଏ ତାହା ସୀମାହୀନ । ଯେ କୌଣସି ସାଧନା ଯେ ପର୍ଯ୍ୟନ୍ତ ବ୍ୟକ୍ତିଗତ ହୋଇ ରହିଥାଏ, ସେ ପର୍ଯ୍ୟନ୍ତ ତାହାର ଶକ୍ତି ଥାଏ ସୀମିତ । ଯେତେବେଳେ ତାହା ସାମୂହିକ ରୂପରେ ପରିବର୍ତ୍ତନ ହୁଏ ସେତେବେଳେ ତାର ଯଥାର୍ଥ ପ୍ରକାଶ ହୋଇଥାଏ । ବସ୍ତୁତଃ ଆମେ କୌଣସି ଏକ ଦେହ ମଧରେ ବନ୍ଦୀ ନୋହୁଁ, ଆମେ ବ୍ୟାପକ, ଆମେ ଯେତେବେଳେ କୌଣସି ବଂଚଳାରେ ରହୁ ସେତେବେଳେ ସେଠାକାର କୌଣସି ଗୋଟିଏ କୋଠରୀ ନିବାସସ୍ଥଳ ରୂପେ ବ୍ୟବହୃତ ହୁଏ । ଏହିପରି ସବୁ ଦେହରେ ଥିବା ସତ୍ୱେ ଓ ଗୋଟିଏ ଏକ ବିଶେଷ ଦେହରେ ଆମେ ସ୍ଥିତିଶୀଳ ହୋଇଥାଉ । କିନ୍ତୁ ଯଦି କେହି ଆମକୁ ପଚାରେ ଯେ ତୁମେ କେଉଁଠାରେ ରୁହ ? ତାହାହେଲେ ଉତ୍ତର ମିଳିବ, ଏଇ ଅମୁକ ବଂଗଳାରେ । ଏକଥା ସତ୍ୟ ଯେ, ଏଇ ଘରର ଗୋଟିଏ କୋଠରୀରେ ଆମର ନିବାସ, ତଥାପି ସେହି ବଂଗଳାରେ ଯେତେ ଘର ଅଛି; ସବୁ ଗୁଡ଼ିକୁ ଆମେ ନିଜର ବୋଲି ମନେ କରୁ ।

ଏଥିରେ କୌଣସି ସନ୍ଦେହ ନାହିଁ ଯେ, ଆମେ ଯେଉଁ ଘରେ ବାସ କରୁ ତାର ଦାୟିତ୍ୱ ଆମ ଉପରେ ରହିଛି । ସେଥିପାଇଁ ତାକୁ ପରିଷ୍କାର ରଖିବା ଆମର କର୍ତ୍ତବ୍ୟ । ଏହିପରି ଭାବରେ ସବୁଯାକ ଘରର ଦାୟିତ୍ୱ ଆମର । କିନ୍ତୁ ସେହି ନିର୍ଦ୍ଦିଷ୍ଟ ଘରଟିର ପରିଷ୍କାର ଦାୟିତ୍ୱ ଅନେକ ବେଶୀ । ସେହିପରି ଯଦିଓ ବ୍ୟକ୍ତିଗତ ସାଧନାର ଦାୟିତ୍ୱ ପ୍ରତ୍ୟେକଙ୍କ ଉପରେ ବିଶେଷ ଭାବରେ ଥାଏ, ତଥାପି ଯେତେବେଳେ ସାମୂହିକ ସାଧନା ହୁଏ ସେତେବେଳେ ସାଧନାର ଦୋଷ କଟିଯାଏ ।

ସେଥିପାଇଁ ଭକ୍ତି, ଧ୍ୟାନ, ଯୋଗ, ଚିନ୍ତନ ସବୁ ସଦ୍‌ଗୁଣ ଇତ୍ୟାଦି ସାମୂହିକ ହେବା ଦରକାର । ଏକଥା ଠିକ୍ ଯେ, କୌଣସି ବିଷୟ ସାମୂହିକ ହେବା ପୂର୍ବରୁ ବ୍ୟକ୍ତିର ପ୍ରୟୋଗଶାଳାରେ ତାର ପ୍ରୟୋଗ ହୋଇଥାଏ । କିନ୍ତୁ ପ୍ରୟୋଗଶାଳାରେ ଯେଉଁ ଗବେଷଣା ହୋଇଥାଏ ତାହା ସମଗ୍ର ସମାଜ ପାଇଁ ହୋଇଥାଏ ।

ଉପନିଷଦ କୁହେ -- ପ୍ରାଣୋ ବ୍ରହ୍ମେତି, ମନୋ ବ୍ରହ୍ମେତି, ବିଜ୍ଞାନ ବ୍ରହ୍ମେତି । ତାହାହେଲେ ସେ ଯୁଗରେ ବ୍ୟକ୍ତିଗତ ବିକାଶ କରିବା ମଧ୍ୟ ଦେଇ ମଣିଷ ବିଜ୍ଞାନ ସ୍ତରରେ ପହଂଚି ଯାଇଥିଲା । କିନ୍ତୁ ତାର ସବୁ ଯାକ ଥିଲା ବ୍ୟକ୍ତିଗତ ବିକାଶର ବିଚାର ଧାରା । ଆଜି ସମସ୍ତଙ୍କୁ ନିଶ୍ଚିତ ଭାବରେ ବିଜ୍ଞାନର ଭୂମିକାକୁ ଆସିବାକୁ ଚେଷ୍ଟା କରିବାକୁ ହେବ । ଏହି ବିଜ୍ଞାନ ଯୁଗରେ ଆମ ସମସ୍ତଙ୍କୁ ନିଜ ନିଜ ମନରେ ଭୂମିକା ଭୁଲିଯିବାକୁ ହେବ ତାହାକୁ ଆଧ୍ୟାତ୍ମିକ ପ୍ରଚେଷ୍ଟା ଦ୍ୱାରା ଭୁଲିବାକୁ ହେବ ।

ମୋର ସ୍ୱାର୍ଥ, ମୋର ସୁଖ ବିଷୟରେ କହିବା ମଧ୍ୟରେ ଯେପରି ଭ୍ରାନ୍ତି ବିଚାର ରହିଛି, ସେହିପରି ନିଜର ମୁକ୍ତି ବିଷୟରେ କହିବା ହେଉଛି ଆଧ୍ୟାତ୍ମିକ ବ୍ୟକ୍ତିବାଦ, ବା ସ୍ୱାର୍ଥବାଦ । ପ୍ରଥମରୁ ଧ୍ୟାନ ବାବଦରେ ଏହି ଦୋଷ ଆସି ଯାଇଥିଲା ଏବଂ ଅନେକ ବଡ଼ ବଡ଼ ମହାପୁରୁଷ ଏହି ପ୍ରକାର ବ୍ୟାଖ୍ୟା କରିଛନ୍ତି । ପ୍ରହ୍ଲାଦ କହିଥିଲେ --

ପ୍ରାୟେଣ ଦେବ ମୁନୟଃ ସ୍ୱବିମୁକ୍ତିଃ କାମାଃ ।
ମୌନଂ ଚରନ୍ତି ବିଜନେନ ପରାର୍ଥନିଷ୍ଠାଃ ।
ନୈତାନ୍ ବିହାୟ କୃପଣାନ୍ ବିମୁମୁକ୍ଷୁରେକଃ ।

ନିଜ ମୁକ୍ତିର ସଂକୁଚିତ କାମନା କରୁଥିବା ଇଚ୍ଛା ପ୍ରଣୋଦିତ ବ୍ୟକ୍ତି ନିର୍ଜନକୁ ଯାଇ ମୌନ ବ୍ରତାଦିର ଆଶ୍ରୟ ଅବଲମ୍ବନ କରେ । କିନ୍ତୁ ମୁଁ ଏହି ସବୁ ଦୁଃଖୀ ମଣିଷମାନଙ୍କୁ ଛାଡ଼ି ଦେଇ ଏକାକୀ ମୁକ୍ତ ହେବାକୁ ଚାହେଁ ନାହିଁ । ଭାଗବତରେ ଏହା ଗୋଟିଏ ଆଶ୍ଚର୍ଯ୍ୟଜନକ ଓ ଅଭୂତପୂର୍ବ ଭକ୍ତି । କେବଳ ମାତ୍ର ନିର୍ଜନରେ ବାସ କରି ଧ୍ୟାନ, ଧାରଣା, ଚିନ୍ତନ, ଉପାସନା ଦ୍ୱାରା ଭକ୍ତର ସମାଧାନ ହୁଏ ନାହିଁ । ସେ ଏହି ସବୁ ବାଣ୍ଟିବାକୁ ଯାଇ ନିଃଶେଷ ହୋଇଯାଏ । ପ୍ରହ୍ଲାଦଙ୍କର ଏହି ନୀତିକୁ ଶ୍ରେଷ୍ଠ ନୀତି କୁହାଯାଏ । ମୋର ମୁକ୍ତି କହିବାମାତ୍ରେ ମୋର ଶବ୍ଦଟି (ମୁକ୍ତିର) ଅବସାନ ହୋଇଯାଏ । ମୁକ୍ତି ସେତେବେଳେ ହେବ ଯେତେବେଳେ 'ମୋର' ଶବ୍ଦଟି ଟିକି ଟିକି ହୋଇ ଶେଷ ହୋଇଯିବ । ସେଥିପାଇଁ 'ମୋର ମୁକ୍ତି' ଏହି କଳ୍ପନା ହେଉଛି ଭ୍ରମପୂର୍ଣ୍ଣ । ମୁଁ 'ମୁଁ' ରୂପରେ ନ ରହି ସମାଜରୂପ ଧାରଣ କଲେ ତେବେ ଯାଇ ମୁକ୍ତି ଆସି ପାରିବ । ମୁକ୍ତି ଅର୍ଥାତ୍ 'ମୁଁ'ତ୍ୱ (ଅହମ୍ ବୋଧ) ଶେଷ ହୋଇଯିବ, ଅହଂକାର ଅପସରି ଯିବ ଏବଂ ସମାଜ, ସୃଷ୍ଟି ଓ ପରମେଶ୍ୱର ହିଁ ରହିଯିବ ।

ସମାଜ ଗୋଟିଏ ମହା ସମୁଦ୍ର ଏବଂ ଆମେ ଗୋଟିଏ ଗୋଟିଏ ବିନ୍ଦୁ । ବିନ୍ଦୁ ମଧ୍ୟରେ ଯାହା ଶୁଭଙ୍କର ତାହା ସିନ୍ଧୁରେ ଅର୍ପଣ କରିବା ପାଇଁ ହିଁ ରହିଛି । ବିନ୍ଦୁର ସାର୍ଥକତା ହେଉଛି

ସିନ୍ଧୁରେ ମିଶି ଯିବା । ଯଦି ବିନ୍ଦୁ ଅଲଗା ରହିଯିବ ତେବେ ତାହା ଶୁଖି ଯିବ । ସିନ୍ଧୁରେ ଲୀନ ହୋଇଗଲେ ତାହା ମହତ୍ୱ ଅର୍ଜନ କରିବ । ଆମେ ଯଦି ନିଜକୁ ଗୋଟିଏ ଦେହରେ ଆବଦ୍ଧ ବୋଲି ମନେ କରିବା ତେବେ କ୍ଷୁଦ୍ର, ନଗଣ୍ୟ ହୋଇଯିବା । ଆଉ ଯଦି ସମାଜ ସହିତ ନିଜ ବ୍ୟକ୍ତିତ୍ୱକୁ ଲୀନ କରିଦେବା ତେବେ ଆମ ସମସ୍ୟାର ସମାଧାନ ହେବ ।

ମୋର ସ୍ୱାର୍ଥ ଏବଂ ସମାଜର ସ୍ୱାର୍ଥ ଏକ । ସମାଜର ସେବା କରିବା ହେଉଛି ମୋର ସ୍ୱାର୍ଥ । ମୋର ନିଜର କୌଣସି ସ୍ୱତନ୍ତ୍ର ସ୍ୱାର୍ଥ ନାହିଁ । ମୋର ସାଧନା ଓ ସମାଜ ସେବା ଏକ । ସମାଜ ସେବା କରିବା ମାଧ୍ୟମରେ ମୋର ସାଧନା ଚାଲେ । ମୋ ନାମରେ କୌଣସି ସ୍ୱତନ୍ତ୍ର ସାଧନା ନାହିଁ । ମୋର ଏହି ଶବ୍ଦଟିର, ମୁଁତ୍ୱ ର ଲୋପ ହେବା ହିଁ ସାଧନା । ଏହି ପ୍ରକାର ଫଳରେ ଜୀବନରୁ ସାମଞ୍ଜସ୍ୟ ହୀନତା ଦୂର ହୋଇଯାଏ । ସମାଜର ସ୍ୱାର୍ଥ ଏବଂ ବ୍ୟକ୍ତିଗତ ସ୍ୱାର୍ଥ ମଧ୍ୟରେ ଥିବା ଭେଦ ଦୂର ହୋଇଯାଏ ଏବଂ ସ୍ୱାର୍ଥ ପରମାର୍ଥର ପ୍ରଭେଦ ମଧ୍ୟ ଲୁପ୍ତ ହୋଇଯାଏ ।

ଆଧାତ୍ମିକ ସାଧନାରେ ନିଜକୁ ଯୁକ୍ତ କଲେ ଆମର ନିଜତ୍ୱକୁ, 'ମୁଁ' ଭାବନାକୁ ଲୁପ୍ତ କରି ଦେବାକୁ ପଡ଼ିବ ଏବଂ ତୁମେ ବା 'ତୁ' କୁ ଗ୍ରହଣ କରିବାକୁ ପଡ଼ିବ । ତୁମେ (ତୁ) କହିଲେ ପରମେଶ୍ୱରଙ୍କୁ ବୁଝାଏ । କିନ୍ତୁ ପରମେଶ୍ୱରଙ୍କୁ ତ ଆଖିରେ ଦେଖାଯାଏ ନାହିଁ । ତଥାପି ଆମେ ତାହାଙ୍କୁ ଅନ୍ୱେଷଣ କରି ଚାଲିଛୁଁ । ଏ ଅବସ୍ଥାରେ 'ତୁମେ' ରୁ 'ମୁଁ' କୁ ବାଦ ଦେବାକୁ ହେବ । 'ମୁଁ' ତ୍ୱ କୁ କିପରି ଛଡ଼ା ଯାଇ ପାରିବ ? ଏହାର ସହଜ ଉପାୟ ହେଉଛି, ମୁଁ ସ୍ଥାନରେ 'ଆମ୍ଭେମାନେ' ଶବ୍ଦଟି ବସାଇବାକୁ ହେବ । ଆମେ ନିଜକୁ ଗୋଟିଏ ଗୋଟିଏ ଦେହ ମଧ୍ୟରେ ଯେପରି ସୀମାବଦ୍ଧ ମନେ ନ କରି, ସମଗ୍ର ସମାଜରେ, ସମଗ୍ର ସୃଷ୍ଟିରେ ବ୍ୟାପ୍ତ ବୋଲି ଅନୁଭବ କରିବା । ବ୍ୟକ୍ତିତ୍ୱର ଲୋପ, ଅହଂ ବା 'ମୁଁ କାର'ର ଲୋପ ସାଧନର ଅର୍ଥ ହେଲା ସମାଜମୟ ହେବା, ସମାଜ ମଧ୍ୟରେ ମିଶିଯିବା; ଅହଂକାର ମୁକ୍ତ ହୋଇ ସମାଜ ପାଇଁ ବ୍ୟାପକ ଭାବରେ କାର୍ଯ୍ୟ କରିବା । ଯେ ପର୍ଯ୍ୟନ୍ତ ଅହଂକାର ମୁକ୍ତ ହୋଇ ନ ପାରିବ, ସାଧକ ସେ ପର୍ଯ୍ୟନ୍ତ ପାଣି ଭିତରେ ଗୋଡ଼ି ମିଶି ଅଲଗା ହୋଇ ରହିଲା ପରି ହେବ । କିନ୍ତୁ ଅହଂମୁକ୍ତ ହେଲାପରେ ଲୁଣ ପରି ପାଣିରେ ଗୋଳେଇ ହୋଇ ମିଶି ଯିବ, ଅର୍ଥାତ୍ ସେହି ବ୍ୟକ୍ତି ସମାଜମୟ, ସୃଷ୍ଟିମୟ, ଲୋକମୟ ସତ୍ତାର ଅଧିକାରୀ ହେବ । ଏହି ପ୍ରକ୍ରିୟା ହେଉଛି ମୁକ୍ତି ଅର୍ଥାତ୍ ବ୍ୟାପକ ସେବା କାର୍ଯ୍ୟରେ ସୂଚନା ।

ପଶ୍ଚିମ ବଂଗଳାର ବିଷ୍ଣୁପୁରରେ ଏକ ଜଳାଶୟ ନିକଟରେ ଶ୍ରୀରାମକୃଷ୍ଣ ପରମହଂସ ଦେବ ସମାଧିସ୍ଥ ହୋଇଥିଲେ । ସେହି ସ୍ଥାନରେ ବସି ଅତି ନମ୍ରତାର ସହିତ ମୁଁ କହିଥିଲି ଯେ, ରାମକୃଷ୍ଣ ଦେବ ବ୍ୟକ୍ତିଗତ ସମାଧି କ୍ଷେତ୍ରରେ ଯେଉଁ କାର୍ଯ୍ୟ କରିଥିଲେ ସେହି କାମ ମଧ୍ୟ ମୁଁ ସାମାଜିକ ସମାଧି କ୍ଷେତ୍ରରେ ସାମାଜିକ ରୀତିରେ କରିବାକୁ ଚାହେଁ, ଯେଉଁ ସମାଧି ବ୍ୟକ୍ତିଗତ ଭାବରେ କୌଣସି ବ୍ୟକ୍ତି ଦ୍ୱାରା ସଂପନ୍ନ ହୋଇଛି, ତାହା ସମାଜ ମଧ୍ୟ ଲାଭ କରୁ । ରାମକୃଷ୍ଣ ଦେବ ପର୍ବତ ଗୁମ୍ଫାର ଅନ୍ଧକାର ମଧ୍ୟରେ ବସି ସମାଧିସ୍ଥ ହେବାର ଚେଷ୍ଟା କରି ନାହାନ୍ତି, ବରଂ ସଂପୂର୍ଣ୍ଣ ଖୋଲା ପବନରେ, ପ୍ରକୃତିର ମୁକ୍ତ ପରିବେଶରେ, ଆକାଶ ତଳେ ବସି ସାଧନା କରିଛନ୍ତି । କୌଣସି ବସ୍ତୁ ପ୍ରତି ତାଙ୍କର ଭୟ ନଥିଲା । ଯେଉଁ ବ୍ୟକ୍ତି ପ୍ରକୃତିଠାରୁ, ମୁକ୍ତ ପରିବେଶଠାରୁ,

ମଣିଷଠାରୁ ଭୟ କରି ଦୂରର କୌଣସି ଗୁହା ମଧ୍ୟରେ ବସି କହିବ ଯେ, ବର୍ତ୍ତମାନ, ମୋର ଧ୍ୟାନ ହେବ, ସେହି ବ୍ୟକ୍ତି ଏପରି ଦୁର୍ବଳ ମନ ନେଇ କ'ଣ କରିବ ? କେଉଁଠି ଟିକିଏ ଖଟ୍ କରି ଶବ୍ଦ ହେଲା, ଚଢ଼େଇଟିଏ ଫଡ଼ ଫଡ଼ କରି ଡ଼େଣା ହଲାଇଲା ସେଥିରେ ଏହି ବ୍ୟକ୍ତିର ମନ ସେ ଆଡ଼କୁ ଚାଲିଗଲା । ବ୍ରହ୍ମ ବିଦ୍ୟାରେ ସ୍ୱୀକୃତ ହୋଇଛି, ଆପଣଙ୍କର ଏବଂ ମୋର ହୃଦୟ ଏକ ହେଉ ଏବଂ ଆପଣଙ୍କ ସେବା ପାଇଁ ମୋ ମନରେ ସେତିକି ପ୍ରେମ ଜନ୍ମୁ ଯେତିକି ପ୍ରେମ ନିଜ ପାଇଁ ମୋ ମଧ୍ୟରେ ରହିଛି । ମୋ ସହିତ ଅନ୍ୟ ଜଣଙ୍କର କୌଣସି ଭେଦ ନାହିଁ, ଯାହାର ଏହି ଅନୁଭୂତି ହୋଇଛି ତାର ବ୍ରହ୍ମବିଦ୍ୟାର ସ୍ୱାଦ ଆସ୍ୱାଦନ କରିବାର ଅଧିକାର ଲାଭ ହୋଇଛି ।

ବିଷ୍ଣୁପୁରର ସମାଜ ଆଗରେ ଏହି ବିଚାରଟି ଉପସ୍ଥାପିତ କରିବା ସମୟରେ ସାହସ କରି ମୁଁ କହିଥିଲି ଯେ ରାମକୃଷ୍ଣ ପରମହଂସ ଦେବଙ୍କର ଯେଉଁ ସମାଧି ଲାଭ ହୋଇଥିଲା ତା ଉପରେ ତାଙ୍କର ନିଜସ୍ୱ ମାଲିକାନାର ଦାବି ନଥିଲା । ସେହି ସମାଧିକୁ ଆମେ ସାମାଜିକ ରୂପ ଦେବାକୁ ଚାହୁଁ । ସମାଧିର ଅର୍ଥ ପରିପୂର୍ଣ୍ଣ ସମାଧାନ । ପ୍ରତ୍ୟେକ ମଣିଷ ତାହା ଚାହେଁ, କିନ୍ତୁ ଅବିଦ୍ୟା, ପ୍ରତିକୂଳ ପରିସ୍ଥିତି ଇତ୍ୟାଦି ହେତୁ ସେମାନେ ସେହି ଅବସ୍ଥା ଲାଭ କରି ପାରନ୍ତି ନାହିଁ ।

ରାମକୃଷ୍ଣ ଦେବ କାଂଚନ ସ୍ପର୍ଶ କରୁନଥିଲେ । ଯେଉଁଠି ତାଂକ ହାତରେ କାଂଚନର ସ୍ପର୍ଶ ଲାଗିଛି, ସେଠାରେ ତାଙ୍କର ଏତେ ଯନ୍ତ୍ରଣା ହୋଇଛି ଯେ, ମନେ ହେଉଥିଲା ଯେପରି ବିଛା କାମୁଡ଼ି ଦେଲା । କାଂଚନ ତ ନିର୍ଦ୍ଦୋଷ, ତାହା ମଧ୍ୟ ପରମେଶ୍ୱରଙ୍କ ରୂପ । ତଥାପି ରାମକୃଷ୍ଣ ଦେବ କାଂଚନର ସ୍ପର୍ଶ ସହ୍ୟ କରି ପାରୁନଥିଲେ । ଅର୍ଥାତ୍ ସେ ସଂପତ୍ତି ସଂଗ୍ରହ ବା ସଂଚୟକୁ ପାପ ମନେ କରୁଥିଲେ । ଏଥିପାଇଁ ସ୍ପର୍ଶ ହେତୁ ତାଙ୍କର ଯନ୍ତ୍ରଣା ହେଉଥିଲା । ସମାଜରେ ଯଦି ସଂପତ୍ତି ଗୋଟିଏ ସ୍ଥାନରେ ଏକତ୍ରିତ ହେବ ତେବେ ସମାଜକୁ କଷ୍ଟ ହେବ । ସୁନା ବିତରଣ କରିଦେଲେ ତାହା ପରମେଶ୍ୱରଙ୍କ ଶକ୍ତି ରୂପରେ ଦେଖାଦିଏ । ଯାହାଦ୍ୱାରା ଆପଣ ପରମେଶ୍ୱରଙ୍କ ରୂପ ଦର୍ଶନ କରିବେ ତାହାର ସ୍ପର୍ଶ ବିଛା କାମୁଡ଼ିବା ପରି ମନେ ହେବ ନାହିଁ, ନାରାୟଣଙ୍କ ସ୍ପର୍ଶ ବୋଲି ମନେ ହେବ । ରାମକୃଷ୍ଣ ଦେବ ତାଙ୍କ ଜୀବନ ମାଧ୍ୟମରେ ଆମକୁ ଶିଖାଇଛନ୍ତି ଯେ, କିପରି କଷ୍ଟ ରହିତ ସମାଧି ଆମେ ଲାଭ କରି ପାରିବା ଏବଂ କିପରି କାଂଚନର ସଂଗ୍ରହଠାରୁ ଆମେ ଉଦ୍ଧାର ପାଇବା । ମହାପୁରୁଷମାନଙ୍କର ଜୀବନର ଉପଲବ୍ଧିକୁ ସାମାଜିକ ରୂପ ଦେବା ଆମପରି ସେବକଙ୍କର କାମ । (ବ୍ୟକ୍ତିଗତ) ସମାଧିରେ ଯେପରି କୌଣସି କ୍ଲେଶ ବୋଧ ରହେ ନାହିଁ, ସେହିପରି ସାମାଜିକ ସମାଧିରେ ମଧ୍ୟ କୌଣସି କ୍ଲେଶ ଅନୁଭବ ହେବା ଉଚିତ ନୁହେଁ । ଆଜି ଆମ ସମାଜରେ ଏବଂ ସମଗ୍ର ଦୁନିଆରେ ନାନା ପ୍ରକାର ଦୁଃଖ, ସଂଘର୍ଷ ଓ ବିବାଦ ଲାଗି ରହିଛି । ଯଦି ଆମେ ଏହି ସବୁ ବିବାଦରୁ ମୁକ୍ତି ପାଇ ପାରିବା, ତେବେ ଆମର ସାମାଜିକ ସମାଧିର ସମାଧାନ ହୋଇ ପାରିବ ।

ଶୋଇବା ସମୟରେ ଯେପରି ସବୁ ବିଭେଦ ଦୂର ହୋଇଯାଏ, ସେହିପରି ସମାଧି ଅବସ୍ଥାରେ ମଧ୍ୟ ମଣିଷର ସମାନ ଭାବନା ଆସିଯାଏ । କିନ୍ତୁ ନିଦ୍ରା ଅବସ୍ଥାରେ ସେଗୁଡ଼ିକ ଶୂନ୍ୟତାରେ ପର୍ଯ୍ୟବେସିତ ହୁଏ ଆଉ ସମାଧିରେ ତାହା ପରିପୂର୍ଣ୍ଣ ହୋଇ ଉଠେ । ଆମକୁ ଜାଗ୍ରତ ଅବସ୍ଥାରେ ସମାଧି ଲାଭ କରିବାକୁ ହେବ ଏବଂ ଭେଦ ହୀନ ଅଭିନ୍ନତାର ତତ୍ତ୍ୱ ଉପରେ ସମାଜ

ରଚନାର କାମ ଠିଆ କରିବାକୁ ହେବ । ମନୁଷ୍ୟ ଅଦ୍ୱୈତ ଏବଂ ଅଭେଦକୁ ଖୁବ୍ ଭଲ ଭାବରେ ବୁଝିପାରେ, କିନ୍ତୁ ବ୍ୟାବହାରିକ ଜୀବନରେ ଯେତେବେଳେ ଆଚରଣର ପ୍ରଶ୍ନ ଉଠେ ସେତେବେଳେ ସେମାନେ ସମାଜ ସେବା କ୍ଷେତ୍ରରେ ତାହା ଆଦୌ ବୁଝି ପାରନ୍ତି ନାହିଁ । ସମଗ୍ର ଜୀବନ ଏବଂ ସମଗ୍ର ସମାଜ ରଚନାକୁ ଅଦ୍ୱୈତ ଏବଂ ଅଭେଦ ତତ୍ତ୍ୱ ଉପରେ ପ୍ରତିଷ୍ଠିତ କରିବା ପରି ସାହସ ଆମର ଅର୍ଜନ କରିବା ଦରକାର । ନିଦ୍ରା କାଳରେ ଅଦ୍ୱୈତ ଏବଂ ଜାଗରଣରେ ଦ୍ୱୈତ । ଧର୍ମରେ ଅଦ୍ୱୈତ ଏବଂ ରାଜନୀତିରେ ଦ୍ୱୈତ । ଏପରି ହେବା ଉଚିତ ନୁହେଁ । ଏପରି ହେଲେ "ଅଦ୍ୱୈତ" ଗୋଟିଏ ଶବ୍ଦ ରୂପରେ ପରିଣତ ହେବ । ଅଦ୍ୱୈତକୁ ଆମର ବ୍ୟାବହାରିକ ଜୀବନରେ ପ୍ରତିଷ୍ଠିତ କରିବାର ସାମର୍ଥ୍ୟ ଅର୍ଜନ କରିବାକୁ ହେବ ।

ସମାଧି ସମୟରେ ଏପରି ଅନୁଭବ ଆସେ ଯେ, ବାହାରୁ ଯେଉଁ ସବୁ ଭେଦ ବିଭେଦ ଦେଖାଯାଏ ସବୁ ମିଛ । ସବୁଠାରେ ଏକ ଆତ୍ମା ବିରାଜମାନ । କୌଣସି ଜଣେ ବ୍ୟକ୍ତିର ନୁହେଁ, ସମସ୍ତଙ୍କର ଏହି ଅନୁଭବ ଆସେ । ଏହାକୁ ସାମୂହିକ ସମାଧି କହନ୍ତି । ସମାଧିର ଅର୍ଥ ହେଲା ସମତ୍ୱଯୁକ୍ତ ଚିତ୍ତ । ଏଥିରେ ବିକାରର ସ୍ପର୍ଶ ନାହିଁ । ଏଥିରେ ଅହଂ-ବୋଧ, ସମତ୍ୱ-ବୋଧ ନଥାଏ । ସଂକୀର୍ଣ୍ଣ ଅଭିମାନ ବୋଧ ନଥାଏ । ତାର ପ୍ରକାଶ ଅନ୍ନମୟ-ପ୍ରାଣମୟ-ମନୋମୟ ଭୂମିକାରୁ ଉର୍ଦ୍ଧ୍ୱକୁ ଉଠି ବିଜ୍ଞାନମୟ ଭୂମିକାରେ ପହଞ୍ଚିଥାଏ । ଏପରି ଚିନ୍ତା ବିଚାରର ନାମ ସମାଧି । ସମଗ୍ର ସମାଜ ଏପରି ସମାଧି ପ୍ରାପ୍ତ ହେଉ ଅଥବା ସବୁକିଛି ଧ୍ୱଂସ ହୋଇଯାଉ ଏହି ଦୁଇଟି ବିକଳ୍ପ ଆଜି ବିଜ୍ଞାନ ମଣିଷ  ସାମ୍ନାରେ ଆଣି ଥୋଇଛି ।

ଜ୍ଞାନଦେବ କହିଛନ୍ତି-ହେ ଭଗବାନ ମୁଁ ସମସ୍ତଙ୍କ ଆଖି ନେଇ ତୁମକୁ ଦେଖିବି, ସମସ୍ତଙ୍କ କାନଦେଇ ତୁମ କଥା ଶୁଣିବି । ଏହି ବିଶ୍ୱରେ ଯେତେ ପ୍ରକାର ମୂର୍ତ୍ତି ଦେଖାଯାଉଛି ସେହି ସବୁ ମୂର୍ତ୍ତି ଭିତର ଦେଇ ମୁଁ ତୁମକୁ ଦେଖିବି । ସମସ୍ତଙ୍କ ପାଦ ଦ୍ୱାରା ମୁଁ ତୁମର ବାଟରେ ଆଗେଇ ଯିବି । ନିଜ ପାଦ ଦେଇ ମୁଁ ତ ଚାଲୁଛି, କିନ୍ତୁ ସମସ୍ତଙ୍କ ପାଦ ଦ୍ୱାରା ମୁଁ ଚାଲିବି । ଏହି ଯେଉଁ ଭାବନା ତାଙ୍କ କଥାରେ ବ୍ୟକ୍ତ ହୋଇଛି, ତାହା ମୋ ମଧ୍ୟରେ କାମ କରି ଚାଲିଛି । ଆମର ସାମୁଦାୟିକ ଦୃଷ୍ଟିରେ ସତ୍ୟାନୁସନ୍ଧାନ କରିବାକୁ ହେବ । ଆମ୍ଭମାନଙ୍କର ଲକ୍ଷ୍ୟ ସାମୂହିକ ସମାଧି ଏବଂ ସେଥିପାଇଁ ଆମେ ଚେଷ୍ଟା କରିଯିବା । ବର୍ତ୍ତମାନ ସାମୂହିକ ଦୃଷ୍ଟିର ଯୁଗ । ଆଜି ଯେଉଁ ପ୍ରକାର ଅବସ୍ଥା ଚାଲୁଛି, ସେଥିରେ ଏପରି ହେବା ଖୁବ୍ ସଂଭବପର । ପ୍ରାଚୀନ ଯୁଗରେ ଅନ୍ୟପ୍ରକାର ବ୍ୟବସ୍ଥା ଥିଲା । କିନ୍ତୁ ବିଜ୍ଞାନର ବିକାଶ ଫଳରେ ବର୍ତ୍ତମାନ ମଣିଷ ମଧ୍ୟରେ ଏକ ପ୍ରକାର ସାମୂହିକ ବିବେକବୋଧ ଜନ୍ମ ନେଇଛି । ସମଗ୍ର ଦୁନିଆରେ ଯେପରି ଗୋଟିଏ କନ୍‌ସାଇନ୍‌ସ(ବିବେକ) ସୃଷ୍ଟି ହୋଇଛି ।  ସହାନୁଭୂତିର ଆବହାଓ୍ୱା ଉତ୍ପନ୍ନ ହୋଇଛି । ଏପରି ମନେ ହେଉଛି ଯେ ଯେପରି ଆଜି ଦୁନିଆରେ ସଜ୍ଜନତା (ସତତା) ଏକାକୀ ହୋଇ ରହିବ ନାହିଁ । ସଜ୍ଜନତା ସାମୂହିକ ଭାବରେ ପ୍ରକାଶ ପାଇବାର ଦିନ ଆସି ଯାଇଛି । ଦୁର୍ବଳତା ତ ସାମୂହିକ ଭାବରେ ପ୍ରକଟ ହୋଇ ରହିଛି । କିନ୍ତୁ ଆଜି ପର୍ଯ୍ୟନ୍ତ ସଜ୍ଜନତା ବ୍ୟକ୍ତିଗତ ରୂପରେ ପ୍ରକଟ ହେଉଥିଲା । ବର୍ତ୍ତମାନ ସନ୍ଧି ସମୟ, ଏଥିପାଇଁ ଆହୁରି କିଛିଦିନ ପର୍ଯ୍ୟନ୍ତ ଦୁର୍ଜନତାର ପ୍ରଭାବ ରହିବ । କିନ୍ତୁ ଆଗାମୀ ଦିନରେ ସାମୂହିକ ଭାବରେ ହିଁ ସଜ୍ଜନତା ବିକାଶ ଲାଭ କରିବ । ଏହି କାରଣରୁ ଯେଉଁ ଜୀବନରେ ସଜ୍ଜନତା ରହିବ, ତାର ବାଣୀ ମଧ୍ୟ ଶକ୍ତି ଲାଭ କରିବ ।

ମୁଁ ମନେ କରେ ଯେ ଭବିଷ୍ୟତରେ ଆଧ୍ୟାତ୍ମିକତାକୁ ଗ୍ରହଣ କରିବା ପାଇଁ ସାମୂହିକ ସମାଧି ଉଦ୍ଦେଶ୍ୟରେ ଲୋକ ମାନସ ପ୍ରସ୍ତୁତ ହୋଇଛି । ଏଥିପାଇଁ ଆମକୁ ଗଭୀରକୁ ପ୍ରବେଶ କରିବାକୁ ହେବ । ଆମ କାମର ସଂପର୍କ ଈଶ୍ୱରଙ୍କ ସହିତ ଯୁକ୍ତ କରିବାକୁ ହେବ । ସକ୍ରିୟ ସମାଜ ସେବାକୁ ଆମେ ଆଧ୍ୟାତ୍ମିକ ରୂପ ଦେବାକୁ ଚାହୁଁ । ଅତୀତରେ ଭକ୍ତମାନେ ଏଥିପାଇଁ ଅ[illegible] କାମ ଆରମ୍ଭ କରିଥିଲେ । କିନ୍ତୁ ସମାଜ ସେବାର ସ୍ଥୂଳ ରୂପକୁ ସେମାନଙ୍କର  କର୍ମ ମଧ୍ୟରେ ଅନ୍ତର୍ଭୁକ୍ତ କରି ନାହାନ୍ତି । କାରଣ ସେ ଯୁଗରେ ସମାଜସେବା ଏତେ ବେଶୀ ସୁଲଭ ନଥିଲା । ଏଥିପାଇଁ ସେମାନେ ଭାବନାକୁ ପ୍ରଚାର କରି ନିଶ୍ଚିନ୍ତ ରହୁଥିଲେ । ବର୍ତ୍ତମାନ ଆମକୁ ସ୍ଥୂଳ ଜୀବନର କାର୍ଯ୍ୟ ହାତକୁ ନେବାକୁ ହେଉଛି, ଏବଂ ଏହି କାର୍ଯ୍ୟର କିପରି ରୂପ ହେବ, ତାର କାର୍ଯ୍ୟସୂଚୀ କିପରି ହେବ ତାହା ଆମକୁ ରଚନା କରିବାକୁ ହେଉଛି । ପ୍ରାଚୀନ କାଳର ଭକ୍ତମାନେ ଏପରି କରି ନାହାନ୍ତି । କିନ୍ତୁ ଏକଥା ସ୍ପଷ୍ଟ ଭାବରେ ପ୍ରକାଶ କରିଛନ୍ତି ଯେ, ଭକ୍ତ ସମାବେଶଙ୍କର ସାନ୍ନିଧ୍ୟରେ ଯାହା ଲାଭ କରାଯିବ ତାହା ଏକାନ୍ତରେ ବସି ଧ୍ୟାନ କରୁଥିବା ଯୋଗୀକୁ ମିଳିବ ନାହିଁ ।

ଆଜି ଏହା ସହିତ ଏହି ବିଚାରଧାରା ଯୋଡ଼ି ଦେବାକୁ ହେବ ଯେ, ଇହଲୋକର ପ୍ରଗତିପାଇଁ ସାମୂହିକ ସାଧନା ଏକାନ୍ତ ଭାବରେ ପ୍ରୟୋଜନ । ବିଜ୍ଞାନକୁ ସାଥିରେ ନେଇ ଆମକୁ ଏ କାମ କରିବାକୁ ହେବ । ବିଜ୍ଞାନ ସହିତ ଆଧ୍ୟାତ୍ମଯୁକ୍ତ ହେଲେ ଆମେ ଯେଉଁ ଶକ୍ତି ଲାଭ କରିବାକୁ ଚାହୁଁଛୁ ସେହି ଶକ୍ତି ଗଢ଼ି ଉଠିବ ।

## ୬. ଅଭିଧ୍ୟାନଃ

କ). ଭୁବନାକାରରେ (ବ୍ରହ୍ମାଣ୍ଡ ଆକାରରେ) ଭଗବାନଙ୍କର ଧ୍ୟାନ ।

* ସୂକ୍ଷ୍ମ-ପ୍ରବେଶ
* ସୂକ୍ଷ୍ମତର ପ୍ରବେଶ
* କ୍ରିୟା ଶାନ୍ତ ହେବା ପରେ କର୍ମ ଅଧିକତର ଶକ୍ତିଶାଳୀ ହୁଏ ।
* ଅଭିଧ୍ୟାନର ପରିଣାମ ଦୁଇଟି ବିନ୍ଦୁ ଉପରେ ନିର୍ଭରଶୀଳ ହୁଏ ।
* ଗୋଟିଏ ଦିଗରେ ସଂପୂର୍ଣ୍ଣ ନିରହଂକାରିତା ।
* ଅନ୍ୟଦିଗରେ ମୁକ୍ତ ମନର ରେଡ଼ିଓ ସେଟ୍ ।

ଅନାଦିକାଳରୁ ଆଜି ପର୍ଯ୍ୟନ୍ତ ଦୁଇ ପ୍ରକାରର ଚିନ୍ତନ-ପଦ୍ଧତି ପ୍ରଚଳିତ ହୋଇ ଆସୁଛି । ଶେଷ ଦିନ ପର୍ଯ୍ୟନ୍ତ ସେବାକାର୍ଯ୍ୟ କରୁ କରୁ ଦେହ ପରିତ୍ୟାଗ କରିବା ହେଉଛି ଆଉ ଗୋଟିଏ ପଦ୍ଧତି । ଗାନ୍ଧିଜୀ ଏହି ପଦ୍ଧତିର ଉତ୍ତମ ଦୃଷ୍ଟାନ୍ତ ବୋଲି ବିବେଚିତ । ମୃତ୍ୟୁର ପୂର୍ବ ମୁହୂର୍ତ୍ତ ପର୍ଯ୍ୟନ୍ତ ସେ ସାର୍ବଜନିନ କାର୍ଯ୍ୟ ଭିତରେ ବୁଡ଼ି ରହିଥିଲେ ।

ଚିନ୍ତାର ଅନ୍ୟ ଏକ ପଦ୍ଧତି ହେଲା - ସ୍ଥୁଳ ସେବାର ଗୋଟିଏ ସୀମା ମାନିନେବା, ତାପରେ ସୂକ୍ଷ୍ମରେ ପ୍ରବେଶ କରିବା ଦରକାର । ସ୍ଥୁଳ ସେବାର ଲୋଭ, ଆଗ୍ରହ, ଆସକ୍ତି ଓ ପ୍ରେରଣା ଛାଡ଼ିଦେଇ ମୁକ୍ତ ହୋଇ ସୂକ୍ଷ୍ମରେ ପ୍ରବେଶ କରିବାକୁ ହେବ । ସୂକ୍ଷ୍ମ ସୃଷ୍ଟି ଅତି ବିଶାଳ । ସ୍ଥୁଳ ସୃଷ୍ଟିଠାରୁ ଏହାର ବ୍ୟାପକତା କମ୍ ନୁହେଁ । ଦେହ ଥାଉ ଥାଉ ମୃତ୍ୟୁର ଦର୍ଶନ କରିନେବା ଉଚିତ । ମୋର ଆଗ୍ରହ ଏହି ଦ୍ୱିତୀୟ ପଦ୍ଧତି ପାଇଁ । ୧୯୧୬ ସାଲରେ ଘର ଛାଡ଼ିଥିଲି । ସେହି ଦିନଠାରୁ ପଚାଶ ବର୍ଷ ପୂର୍ଣ୍ଣ ହେବାକୁ ଯାଉଛି । ବ୍ରହ୍ମଜିଜ୍ଞାସା ନାମରେ ଘର ଛାଡ଼ିଥିଲି । ବର୍ତ୍ତମାନ ମୋ ଭିତରୁ ଆଦେଶ ଆସୁଛି ଯେ, ଯାହା କିଛି ସେବା କାର୍ଯ୍ୟ ଏପର୍ଯ୍ୟନ୍ତ ସମ୍ପନ୍ନ ହୋଇଛି, ତାହାକୁ ଶ୍ରୀହରି ଚରଣରେ ଅର୍ପଣ କରି ସୂକ୍ଷ୍ମରେ ପ୍ରବେଶ କର । ଏପରି ବି ହୋଇଥାଏ ଯେ, ଯେଉଁଦିନ ପରମେଶ୍ୱରଙ୍କ ନିକଟରୁ ଆମନ୍ତ୍ରଣ ଆସିବ, ସେହିଦିନ ପ୍ରତ୍ୟେକଙ୍କୁ ସୂକ୍ଷ୍ମରେ ପ୍ରବେଶ କରିବାକୁ ହେବ । କିନ୍ତୁ ତାହା ହେଲା ସୂକ୍ଷ୍ମ ଶରୀରରେ ପ୍ରବେଶ କରିବା । ଏତିକି ମାତ୍ର ହେବ । ଏଥିପାଇଁ ମୁଁ ଏପରି ପ୍ରକ୍ରିୟାର କଥା ଭାବିଛି ଏବଂ ଏହାକୁ ଧ୍ୟାନ, ଭକ୍ତି, ଜ୍ଞାନ ଇତ୍ୟାଦି ନାମ ନ ଦେଇ 'ସୂକ୍ଷ୍ମ କର୍ମ ଯୋଗ' । ଏହି ନୂତନ ନାମ ଦେଇଛି । ମୋର ଏହି ବିଚାର ପୁରୁଣା ବିଚାର । ଏହାର ଉପରେ ବର୍ତ୍ତମାନ କାମ ଆରମ୍ଭ କରି ମୁଁ ନିଜକୁ ଶୂନ୍ୟବିତ୍ ମନେ କରୁଛି । ବର୍ତ୍ତମାନ ମଧ୍ୟ ଶୂନ୍ୟ ହୋଇ ପାରୁନାହିଁ । ଶୂନ୍ୟବିତ୍ ଅର୍ଥାତ୍ ଶୂନ୍ୟପରି ମନେ କରୁଛି ।

ଗୋଟିଏ ବିଚାର ମୋ ମନକୁ ଆସିଛି । ତାହା ହେଲା ସୂକ୍ଷ୍ମର ଅନୁସନ୍ଧାନ ହେବା ପ୍ରୟୋଜନ । ବିଜ୍ଞାନରେ ଯେପରି "ନିଉକ୍ଲିୟର ଏନାର୍‌ଜି"- ଆଣବିକ ଶକ୍ତି ଆସିଛି-ସେହିଦିନଠାରୁ ମନରେ ଚିନ୍ତା ଆସିଛି ଯେ ସ୍ଥୁଳ ଶସ୍ତ୍ର ଠାରୁ ବୈଜ୍ଞାନିକର ସୂକ୍ଷ୍ମଶସ୍ତ୍ର ବେଶୀ ଫଳପ୍ରସୂ ହୋଇଥାଏ । ବୈଜ୍ଞାନିକମାନେ ଯେପରି ବିଜ୍ଞାନ କ୍ଷେତ୍ରରେ ସୂକ୍ଷ୍ମଶସ୍ତ୍ରମାନ ଆବିଷ୍କାର କରିଛନ୍ତି, ସେହିପରି ଆଧ୍ୟାତ୍ମିକ କ୍ଷେତ୍ରରେ ମଧ୍ୟ ସୂକ୍ଷ୍ମ ଶକ୍ତିର ଗବେଷଣା ହୋଇପାରେ । ଏହି ଦୃଷ୍ଟିରୁ ମୁଁ 'ସୂକ୍ଷ୍ମ କର୍ମ ଯୋଗ'ରେ ପ୍ରବେଶ କରିଛି ।

ଧ୍ୟାନ, ଭକ୍ତି, ଜ୍ଞାନ ଆଦି କ୍ରିୟା ମୋ ନିକଟରେ ଅତ୍ୟନ୍ତ ପ୍ରିୟ ଏବଂ ବର୍ଷ ବର୍ଷ ଧରି ଏସବୁ କ୍ରିୟା ସ୍ଥୁଳ କର୍ମ ଯୋଗ କ୍ଷେତ୍ରରେ ପ୍ରୟୋଗ ମଧ୍ୟ କରିଛି । ପ୍ରତ୍ୟେକଙ୍କ ପାଇଁଏସବୁର ପ୍ରୟୋଜନ ହୋଇଥାଏ । ଏହାକୁ ମୁଁ ବିକର୍ମ ବୋଲି ନାମ ଦେଇଛି । ଏହି ବିକର୍ମକୁ କର୍ମ ସହିତ ଯୋଡ଼ି ଦେଲେ ଶକ୍ତିର ସ୍ଫୁରଣ ଘଟିଥାଏ । ତଥାପି ମୁଁ ଭକ୍ତି, ଜ୍ଞାନ, ବା ଧ୍ୟାନ ମଧ୍ୟରେ ପ୍ରବେଶ କରିଛି ବୋଲି କହୁନାହିଁ । ମୁଁ କହୁଛି, ମୁଁ 'ସୂକ୍ଷ୍ମ କର୍ମ ଯୋଗ'ରେ ପ୍ରବେଶ କରିଛି । ସ୍ଥୁଳ କର୍ମ ଯୋଗରେ ଗୋଟିଏ ସୀମା ଅଛି । ତାପରେ ତାକୁ ଛାଡ଼ିବା ଉଚିତ୍ ।' ଏବଂ ସେଦିନଠାରୁ ସୂକ୍ଷ୍ମରେ ପ୍ରବେଶ କରିବା ଉଚିତ ।

ମଣିଷର ଶକ୍ତିର ମଧ୍ୟ ଶେଷ ପର୍ଯ୍ୟନ୍ତ କିଛି ସୀମା ଅଛି । ଏହି ସୀମାର ବାହାରେ ସେ କିଛି କରି ପାରେ ନାହିଁ । ଆଉ ମୋର ନିଜର କୌଣସି ବିଷୟ ପ୍ରତି ଶ୍ରଦ୍ଧା ଥିବାରୁ ସେହି ଶ୍ରଦ୍ଧା ଅନୁଯାୟୀ ମୁଁ ଚାଲିଥାଏ । ମୁଁ ମନେ କରେ ଯେ କେତେବେଳେ କେତେବେଳେ ଏହାକୁ ନିଜ ଆଡୁ ସମାପ୍ତ କରି ଦେବାକୁ ହୁଏ, ତା ନହେଲେ ତାର ଶେଷ ହୁଏ ନାହିଁ । ନିବୃତ୍ତିର ଅର୍ଥ ଅପ୍ରବୃତ୍ତି

ନୁହେଁ । ପ୍ରବୃତ୍ତି-ନିବୃତ୍ତି ଗୋଟିଏ ବସ୍ତୁର ପଜିଟିଭ୍-ନେଗେଟିଭ (ଧନାତ୍ମକ-ଋଣାତ୍ମକ) ରୂପ । ନିବୃତ୍ତି ପୃଥକ୍ ବସ୍ତୁ । ଚିତ୍ତକୁ, ଦେହକୁ, ସମାଜକୁ ପୃଥକ୍ କରି, ଚିତ୍ତକୁ ଚୈତନ୍ୟମୟ କରିବାକୁ ହେବ । ତାହା ଏକ ବିଶାଳ କାର୍ଯ୍ୟକ୍ରମ । ମୋର ଏ ପ୍ରକାର ଆଶା ଯେ, ପୂର୍ଣ୍ଣତ୍ୱରେ ସ୍ଥିତ ହେଲେ, ଚୈତନ୍ୟରେ ପ୍ରବିଷ୍ଟ ହେଲେ କର୍ମଯୋଗ କ୍ଷୀଣ ହେବ ନାହିଁ, ବରଂ ତାହା ଅଧିକରୁ ଅଧିକ ବୀର୍ଯ୍ୟ-ସଂପନ୍ନ ହେବ । କ୍ରିୟା କମ-କର୍ମ ଅଧିକ । ଉତ୍ତରୋତ୍ତର କ୍ରିୟା କମିଯିବ, କିନ୍ତୁ କର୍ମ ଉତ୍ତରୋତ୍ତର ବୃଦ୍ଧି ପାଇବ ।

ସୂକ୍ଷ୍ମ କର୍ମଯୋଗରେ ସମାଜକୁ ଛାଡ଼ି ଦେବାର କଳ୍ପନା ନାହିଁ, ବରଂ ସମାଜର ଅଭିମୁଖୀ ହୋଇ ସେଥିରେ ସଂପୂର୍ଣ୍ଣ ପ୍ରବେଶ କରିବା କଥା ରହିଛି । ଏଥିପାଇଁ ମୋତେ ଗୋଟିଏ ଶବ୍ଦ ଖୋଜି ବାହାର କରିବାକୁ ହୋଇଛି । "ଅଭିଧ୍ୟାନ" । ଅଭିଧ୍ୟାନର ଅର୍ଥ ହଉଛି ସୃଷ୍ଟିକୁ ସମ୍ମୁଖରେ ରଖି ଭୁବନାକାର ଭଗବାନଙ୍କର ଧ୍ୟାନ କରିବା । ଯାହା ସ୍ଥୂଳ କର୍ମଯୋଗ ଦ୍ୱାରା ହେବା ସଂଭବ ନଥିଲା । ତାହା ସୂକ୍ଷ୍ମ କର୍ମଯୋଗ ଦ୍ୱାରା ନିଷ୍ପନ୍ନ ହେବ ମୋର ଏହିପରି ଶ୍ରଦ୍ଧା ।

ଏହା ମୋର କ୍ଷେତ୍ର ସନ୍ୟାସ । କ୍ଷେତ୍ର ସନ୍ୟାସର ଅର୍ଥ ହେଲା, ସବୁ କ୍ଷେତ୍ର ଛାଡ଼ି ଦେଇ ଗୋଟିଏ କ୍ଷେତ୍ରରେ ଅବସ୍ଥାନ କରିବା । ଏହା ପ୍ରାଚୀନ ବିଚାରଧାରା । ଆତ୍ମୋନ୍ନତି ପାଇଁ ଏବଂ ଧ୍ୟାନ ପାଇଁ ପ୍ରାଚୀନ କାଳର ମଣିଷମାନେ ଏହିପରି କ୍ଷେତ୍ର ସନ୍ୟାସ ଗ୍ରହଣ କରୁଥିଲେ । କିନ୍ତୁ ମୋର ଚିନ୍ତାଧାରା ସେପରି ନୁହେଁ । ସମୂହର ଅଭିଧ୍ୟାନ କରୁକରୁ ଏହି ସୂକ୍ଷ୍ମତର କର୍ମଯୋଗରେ ମୋର ପ୍ରବେଶ । ବହୁକାଳରୁ ଏ ବିଷୟରେ ମୋର ଅନୁମାନ ଥିଲା । କିନ୍ତୁ କ୍ରିୟୋପରମେ ବୀର୍ଯ୍ୟବତ୍ତରମ୍-ଯେପରି ଭାବରେ କ୍ରିୟାର ଉପଶମ ହେବ, ସେହିପରି ଭାବରେ କର୍ମର ଶକ୍ତି ବୃଦ୍ଧି ପାଇବ । କେବଳ ମାତ୍ର ବାହାରର କୋଳାହଳ କିମ୍ବା ଗଣ୍ଡଗୋଳ ଦ୍ୱାରା କର୍ମ ନିଷ୍ପନ୍ନ ହୁଏ ନାହିଁ । ଯେପରି ଭାବରେ କ୍ରିୟା ସୂକ୍ଷ୍ମରେ ପ୍ରବେଶ କରେ, ସେହି ଅନୁପାତରେ କର୍ମର ଶକ୍ତି ବଢୁଥାଏ ।

ମଣିଷ ମଧ୍ୟରେ ବାସନାର ଆବେଗ ଆସେ ଏବଂ ଏହି କାରଣରୁ ନକରିବାର ପ୍ରୟୋଜନୀୟତା ମନରେ ଆସେ । ସେଥିପାଇଁ ସ୍ଥୂଳ କର୍ମଯୋଗ ନିରୁପାୟର କାମ ବୋଲି ମନେହୁଏ । କିନ୍ତୁ ଜୀବନରେ ଏପରି ଅବସ୍ଥା ମଧ୍ୟ ଆସିବା ଉଚିତ ଯେତେବେଳେ ସ୍ଥୂଳ କ୍ରିୟାର ପ୍ରୟୋଜନ ଆବଶ୍ୟକ ମନେ ହେବ ଏବଂ ସୂକ୍ଷ୍ମ ଭାବ ଶକ୍ତି ଦ୍ୱାରା କାମ ହେଉଥିବ ।

ମୁଁ ବିଶ୍ୱାସ କରେ ଯେ ଚିନ୍ତନ ଏବଂ ଧ୍ୟାନ ଦ୍ୱାରା ଅନେକ କିଛି ସେବା ହେବା ସଂଭବ । ପ୍ରତ୍ୟକ୍ଷ କାର୍ଯ୍ୟ ଦ୍ୱାରା ଯେତିକି ସେବା ହୁଏ ତାଠାରୁ ଢେର ବେଶୀ ସେବା ଚିନ୍ତନ ଏବଂ ଧ୍ୟାନ ଦ୍ୱାରା ହୋଇପାରେ ।

ସାଧାରଣ ସ୍ତରରେ ବିଚାର କରି ଦେଖିଲେ ମନେ ହେବ ଯେ ଚିନ୍ତନଠାରୁ ବେଶୀ ଶକ୍ତି ବାଣୀରେ ଏବଂ ବାଣୀଠାରୁ ବେଶୀ ଶକ୍ତି କ୍ରିୟାରେ ଅଛି । କିନ୍ତୁ ଚିତ୍ତ ଯେଉଁଠି ଶୂନ୍ୟ ହୋଇଯାଏ ସେଠାରେ କ୍ରିୟାଠାରୁ ବେଶୀ ଶକ୍ତି ବାଣୀରେ ଏବଂ ବାଣୀଠାରୁ ବେଶୀ ଶକ୍ତି ଚିନ୍ତା ମଧ୍ୟରେ ଥାଏ । ଚିତ୍ତ ଶୂନ୍ୟ ହୋଇଗଲେ ଜଣକର କଥା ଅନ୍ୟଜଣକ ପାଖରେ ପହଂଚିଯାଏ । ଦେହର

ଆବଶ୍ୟକତା ରହେ ନାହିଁ । ଏହା ହେଲା ସୂକ୍ଷ୍ମ ପ୍ରବେଶର ଅର୍ଥ । କ୍ଷେତ୍ର ଛୋଟ ଥିଲେ କୌଣସି କୌଣସି ବିଶିଷ୍ଟ ସ୍ଥୁଳ କାର୍ଯ୍ୟ କରିବା ସଂଭବ ହୁଏ । କ୍ଷେତ୍ର ଯେତେ ବ୍ୟାପକ ହେବ ଆମର କାର୍ଯ୍ୟ ଭାବନାତ୍ମକ ହେବ । ଝାଡୁ ସାହାଯ୍ୟରେ କୌଣସି ଏକ ବିଶେଷ ସ୍ଥାନର ସଫେଇ କରାଯାଇ ପାରିବ । କିନ୍ତୁ ବିଶ୍ୱର ପରିଚ୍ଛନ୍ନ କାର୍ଯ୍ୟ ମାନସିକ ସ୍ତରରେ ରହିବ । ଆମର ପାଦ ଯେଉଁଠି ରହିବ ସେହି ସ୍ଥାନପାଇଁ ଶାରୀରିକ କାର୍ଯ୍ୟ ଏବଂ ବିଶ୍ୱ ପାଇଁ ମାନସିକ କାର୍ଯ୍ୟ ପ୍ରୟୋଜନ, ମନ ଯଦି ମଳିନ ନହେବ ତେବେ ବିଶ୍ୱର ପରିଚ୍ଛନ୍ନତାର କାର୍ଯ୍ୟ କରାହେଲା । ଏପରି କଥା କୁହାଯାଇପାରେ ।

ବିଶ୍ୱଶାନ୍ତିର ସର୍ବଶ୍ରେଷ୍ଠ ସାଧନ ହେଉଛି ନିଜ ମନକୁ ବିଶ୍ୱ ସହିତ ଅନୁକୂଳ କରି ଗଢ଼ି ତୋଳିବା । କର୍ମ ଯେତେ କମ୍ ହେବ ଏବଂ ଆତ୍ମିକ ଭାବନାଯୁକ୍ତ ଧ୍ୟାନ ଯେତେ ବୃଦ୍ଧି ପାଇବ ଏ କାର୍ଯ୍ୟ ସେତେ ସହଜ ହେବ । ସେତିକି ଛୋଟ କ୍ଷେତ୍ରରେ କର୍ମର ଶକ୍ତି ବେଶୀ ଏବଂ କଥାର ଶକ୍ତି କମ୍ ହେବ । କ୍ଷେତ୍ର ଯଦି ବଡ଼ ହୁଏ ତେବେ କାର୍ଯ୍ୟ ଠାରୁ ବାଣୀ ଅଧିକ ପ୍ରଭାବ ବିସ୍ତାର କରିବ ଏବଂ ତାଠାରୁ ବେଶୀ ପ୍ରଭାବ ମୌନତା ଦ୍ୱାରା ହୋଇଥାଏ ।

କ୍ରିୟା କମାଇବା ସଂଗେ ସଂଗେ ଅହଂକୁ ମଧ୍ୟ ଶୂନ୍ୟ କରିବାକୁ ହେବ । ଅହଂ ଯଦି ଶୂନ୍ୟ ନହୁଏ, ତାହାହେଲେ ସୂକ୍ଷ୍ମ କର୍ମଯୋଗ ଅକାମୀ ହୋଇଯିବ ।

ତେବେ ବାବାଙ୍କ ମଧ୍ୟରେ ଏହି ଯେଉଁ କ୍ଷେତ୍ର ସନ୍ୟାସର ପ୍ରେରଣା ଜାଗ୍ରତ ହେଲା ତାହା ଅନ୍ତର୍ଯ୍ୟାମୀଙ୍କ ଆଦେଶ । ବାବା ଏଠାରେ ବ୍ରହ୍ମବିଦ୍ୟା ମନ୍ଦିରରେ ବସି ଅଛନ୍ତି । କ'ଣ କରୁଛନ୍ତି ? ଅଭିଧ୍ୟାନ । ଅଭିଧ୍ୟାନ ଅର୍ଥାତ୍ ଅଭିମୁଖ ହୋଇ-ଲୋକାଭିମୁଖ ହୋଇ ଧ୍ୟାନ କରିବା । ଆମର କର୍ମୀମାନେ ଯେଉଁ ସବୁ ସ୍ଥାନରେ କର୍ମରତ ଏବଂ ଯେତେଦୂର ପର୍ଯ୍ୟନ୍ତ ବାବାର ମାନସିକ ଚିନ୍ତନ ପହଂଚିଯାଏ, ସେତେଦୂର ପର୍ଯ୍ୟନ୍ତ କର୍ମୀମାନେ ଖବର ପାଇଯାଆନ୍ତି । କର୍ମୀମାନଙ୍କର କାର୍ଯ୍ୟର ଯେତେ ତଥ୍ୟ ମିଳେ ବାବା ତାହାକୁ ପଢ଼ି ଦେଖନ୍ତି । ଏହାକୁ ଅଭିଧ୍ୟାନ କହନ୍ତି ଏବଂ ଯାହାହେଉଛି ସୂକ୍ଷ୍ମ କର୍ମଯୋଗ ।

ବାବା ଅଭିଧ୍ୟାନ କରି ଥାଆନ୍ତି । ଅଭିଧ୍ୟାନର ପରିଣାମ ଫଳ ଯେତେବେଳେ ଆସିବ ସେତେବେଳେ ଦେଖାଯିବ । ଅଭିଧ୍ୟାନର ପରିଣାମ ଦୁଇ ବିନ୍ଦୁ ଉପରେ ନିର୍ଭରଶୀଳ । ଗୋଟିଏ ହେଲା ବାବାଙ୍କ ବିନ୍ଦୁ ଯେଉଁଠାରେ ସଂପୂର୍ଣ୍ଣ ନିରହଂକାରିତା ରହିବ । ଅନ୍ୟଟି ଏହି ପ୍ରାନ୍ତିକ ବିନ୍ଦୁ ଯେଉଁଠି "ରେଡ଼ିଓ ସେଟ୍" ରହିବ । ସେଠାରେ ମନ ଯୁକ୍ତ ହେବା ଆବଶ୍ୟକ, ତାହାହେଲେ ପରିଣାମ ଦେଖାଯିବ । ଆମେ କାର୍ଯ୍ୟ କରୁନାହିଁ, କାଳର ଆତ୍ମା କାର୍ଯ୍ୟ କରାନ୍ତି, ଈଶ୍ୱର କାର୍ଯ୍ୟ କରାନ୍ତି ।

ହୃଦୟ ଖୁବ୍ ଛୋଟ । ସେଠାରେ ହୁଏତ ଆମେ ରହୁ ନହେଲେ ଭଗବାନ୍ ରହନ୍ତି । ସୂକ୍ଷ୍ମ କର୍ମ ଯୋଗ ଅର୍ଥାତ୍ ନିଜେ ଦୂରକୁ ଚାଲିଯାଇ ଭଗବାନଙ୍କୁ ଭିତରକୁ ଆସିବାକୁ ଦେବା । ଆଜିପର୍ଯ୍ୟନ୍ତ ଆମେ ନିଜ ଶକ୍ତିରେ କାର୍ଯ୍ୟ କରୁଥିଲେ, ବର୍ତ୍ତମାନ ଆମେ ଭଗବାନଙ୍କ ଶକ୍ତିରେ କାର୍ଯ୍ୟ କରିବା ।

ଧ୍ୟାନଦ୍ୱାରା ଚିତ୍ତ ଶାନ୍ତ ହୁଏ, ସାମୂହିକ ଧ୍ୟାନରେ ମଧ୍ୟ ଏହା ହିଁ ହେବ । ତାହାଦ୍ୱାରା ସମୂହ-ଚିତ୍ତରେ ଶାନ୍ତି ଆସିବ । କିନ୍ତୁ ସାରା ବିଶ୍ୱରେ ଯେଉଁ ବିଶୃଙ୍ଖଳା ଚାଲୁଛି, ତାହା ଶାନ୍ତ ହେବାକୁ ହେଲେ ଧ୍ୟାନରତ ବ୍ୟକ୍ତିଙ୍କୁ ଅତ୍ୟନ୍ତ ନିରହଂକାର ଏବଂ ସଂପୂର୍ଣ୍ଣ ଭାବରେ ଶୂନ୍ୟ ହେବାକୁ ହେବ । ଏପରି ଜଣେ ବ୍ୟକ୍ତି ଯଦି ଦୁନିଆରେ ଥାଆନ୍ତି, ଯାହାର ଚିତ୍ତ ଦୁନିଆ ଅଭିମୁଖୀ, ଏବଂ ଯାହା ଚିତ୍ତରେ ଅହଂର ଲେଶମାତ୍ର ନାହିଁ, ଯେ ସଂପୂର୍ଣ୍ଣ ଶୂନ୍ୟ ସେଇ ବ୍ୟକ୍ତି ପ୍ରଭାବ ବିସ୍ତାର କରିବାକୁ ସମର୍ଥ ହେବ ଏବଂ ସାରା ଦୁନିଆରେ ଯେଉଁ ଉପଦ୍ରବ ଚାଲୁଛି ତାହା ଶାନ୍ତ ହୋଇପାରେ । କିନ୍ତୁ ଏହି ବ୍ୟକ୍ତିକୁ ପ୍ରଥମତଃ ଦୁନିଆର ଅଭିମୁଖୀ ହେବାକୁ ହେବ ଏବଂ ଦ୍ୱିତୀୟତଃ ତା ଭିତରେ ଅହଂର ଲେଶମାତ୍ର ଯେପରି ନରହେ । ତାକୁ ସଂପୂର୍ଣ୍ଣ ଶୂନ୍ୟ ହେବାକୁ ହେବ ।

ଅହଂର ଲେଶମାତ୍ର ରହିବ ନାହିଁ ଏହା ବଡ଼ କଷ୍ଟ କଥା । କାରଣ "ମୁଁ "ତ୍ୱ ଛଡ଼ା ଶରୀର ରହି ପାରିବ ନାହିଁ । ଏହି ଅହଂ ଯଦି ନଥାଏ ତେବେ ଶରୀର ଏକେବାରେ ଭାଂଗିପଡ଼େ । ଏହା ହେଲା ଅତି ସୂକ୍ଷ୍ମ ଅହଂ । ସେ ବିଷୟରେ ମୁଁ କିଛି କହୁନାହିଁ । ମୁଁ ଆପଣମାନଙ୍କ ଦୃଷ୍ଟି ସେହି ଅହଂ ଆଡ଼କୁ ଆକୃଷ୍ଟ କରିବାକୁ ଚାହେଁ, ଯେଉଁଥିରୁ ସମତ୍ୱ ବୋଧ, "ମୋର, ମୋର" ଭାବ ଜନ୍ମ ନିଏ । ବାପୁ ମଧ୍ୟ ଏହି କଥା କହିଥିଲେ ଯେ, ଏପରି ଜଣେ ମାତ୍ର ସତ୍ୟାଗ୍ରହୀ ଯଦି ଜନ୍ମ ନିଅନ୍ତି ଯିଏକି ସଂପୂର୍ଣ୍ଣ ରୂପେ ନିରହଂକାରୀ ତେବେ ସାରା ଦୁନିଆରେ ତାର ପ୍ରଭାବ ପଡ଼ିବ ।

ଖ). ତାହାର ଅଭିଧ୍ୟାନରୁ

* ଅଭିଧ୍ୟାନ ଅର୍ଥାତ୍ ସମ୍ମୁଖ ଧ୍ୟାନ
* ଈଶ୍ୱରଙ୍କ ଅଭିଧ୍ୟାନରେ ।
* ତୃତୀୟଥର ଦେହ ବନ୍ଧନ ଛିନ୍ନ ହୋଇଯିବାପରେ ।
* ପୂର୍ଣ୍ଣକାମ ପୁରୁଷର
* ବିଶ୍ୱୈଶ୍ୱର୍ଯ୍ୟ ପ୍ରାପ୍ତି ହେବ ।

ତସ୍ୟାଭିଧ୍ୟାନାତ୍ ତୃତୀୟ ଦେହ ଭେଦେ ।

ବିଶ୍ୱୈଶ୍ୱର୍ଯ୍ୟଂ କେବଳ ଆପ୍ତକାମଃ

ଶ୍ୱେତାଶ୍ୱତରୋପନିଷଦର ବଚନ । ଏହି ବଚନକୁ ପ୍ରାୟ ଗୋଟିଏ ପରିପୂର୍ଣ୍ଣ ବାକ୍ୟ ବୋଲି ଆଖ୍ୟା ଦିଆଯାଇଥାଏ । ଏଥିରେ କିଛି କହିବାର ବାକି ନାହିଁ । ଏଥିରେ ମୁକ୍ତ ପୁରୁଷର ବର୍ଣ୍ଣନା କରାଯାଇଛି, ଯାହାଙ୍କୁ "କେବଳ" ଶବ୍ଦଟି ପ୍ରୟୋଗ କରାହୋଇଛି । କୈବଲ୍ୟ-ପ୍ରାପ୍ତ ପୁରୁଷ-କେବଳ ପୁରୁଷ, ଯେ ନିଜକୁ ବିଶ୍ୱମୟ ଦର୍ଶନ କରନ୍ତି- "କେବଳ ଗୋଟିଏ 'ମୁଁ '" ଅଛି । ଏହାର ଅର୍ଥ ହେଲା କୈବଲ୍ୟ । ଏହି ବିଶ୍ୱବ୍ରହ୍ମାଣ୍ଡରେ ଭଗବାନଙ୍କ ଛଡ଼ା ଆଉ କିଛି ନାହିଁ । ଏହା ହେଉଛି ଭକ୍ତର ଲକ୍ଷଣ । ସେ ଅନୁଭବ କରେ ଯେ ସାରା ଜଗତରେ ଭଗବାନ କେବଳ ଅଛନ୍ତି । କିନ୍ତୁ ମୁକ୍ତ ପୁରୁଷର ଲକ୍ଷଣ ହେଉଛି, ସେ ମନେ କରେ ଯେ ସାରା ଜଗତରେ ମୁଁ ହିଁ ବ୍ୟାପ୍ତ ହୋଇ

ରହିଛି । ମୁକ୍ତ ପୁରୁଷର ଏହି ଲକ୍ଷଣ ବର୍ଣ୍ଣନା କରିବା ପାଇଁ ଗୋଟିଏ ମାତ୍ର "କେବଳ'' ଶବ୍ଦ ବ୍ୟବହାର କରାଯାଇଛି ।

ପୁଣି କୁହାଯାଇଛି, "ଆପ୍ତକାମଃ'' । ଟିକିଏ ବେଶୀ ବୋଧଗମ୍ୟ ହେଲେ ଏହି ଲକ୍ଷଣ ଦେଖାଯାଏ । ଆପ୍ତକାମଃ ଅର୍ଥାତ ସମାପ୍ତକାମଃ-ଯାହାର ସବୁ କାମନା ହିଁ ସମାପ୍ତ ହୋଇଛି । ବିଶ୍ୱର ଐଶ୍ୱର୍ଯ୍ୟ ଏପରି ପୁରୁଷର ଅଧିକାର୍‌କୁ ଆସିଥାଏ । କ୍ରିୟାପଦଟି ଏଠାରେ "ଅଧ୍ୟହୃତ' । "ବିଶ୍ୱୈଶ୍ୱର୍ଯ୍ୟଂ ଲଭତେ ଆପ୍ତକାମଃ' ବାକ୍ୟଟିକୁ ଏହିପରି ଭାବରେ ସଜାଇବାକୁ ହେବ । ଯେଉଁ ପୁରୁଷର ସବୁ କାମନା ପୂର୍ଣ୍ଣତା ଲାଭ କରିଛି, ବିଶ୍ୱର ଐଶ୍ୱର୍ଯ୍ୟ ଭଣ୍ଡାର ତା ହାତରେ ପହଂଚିଯାଏ ।

ବିଶ୍ୱୈଶ୍ୱର୍ଯ୍ୟର ଅର୍ଥ ହେଉଛି, ବିଶ୍ୱମୟ ବ୍ୟାପ୍ତ ହୋଇଥିବା ଐଶ୍ୱର୍ଯ୍ୟକୁ ବୁଝାଏ । "ଆଜିକାଲି ଦୁନିଆରେ ଭୋଗୈଶ୍ୱର୍ଯ୍ୟର ମାତ୍ରା ବଢ଼ିଯାଇଛି ।" ଆମେ ଏହିପରି କହିଥାଉ । ଐଶ୍ୱର୍ଯ୍ୟ ଶବ୍ଦଟିକୁ ଏହି ସାଧାରଣ ଅର୍ଥରେ ଏଠାରେ ବ୍ୟବହାର କରାଯାଇ ନାହିଁ । ଏଠାରେ ଐଶ୍ୱର୍ଯ୍ୟର ଅର୍ଥ ଈଶ୍ୱରଙ୍କର ଐଶ୍ୱର୍ଯ୍ୟକୁ ବୁଝାଯାଇଛି । ପରମେଶ୍ୱରଙ୍କର ଯେଉଁ ବୈଭବ ବିଶ୍ୱରେ ଖେଳାଇ ହୋଇ ରହିଛି ତାହା ଆତ୍ମଜ୍ଞାନୀ ପୁରୁଷର ଆୟତକୁ ଆସିଥାଏ । ବର୍ତ୍ତମାନ ପ୍ରଶ୍ନ ହେଉଛି ଅଭିଜ୍ଞାନ କିପରି ଏବଂ କେତେବେଳେ ଆସେ ?

ତାହାହେଲେ କଣ ଗୋଟିଏ ଗୋଟିଏ କାମନାର ଅବସାନ ଘଟାଇବାକୁ ହେବ ? ସୃଷ୍ଟି ଯେପରି ଅନନ୍ତ, ମନ ମଧ୍ୟ ସେହିପରି ଅନନ୍ତ । ତାହାହେଲେ କ'ଣ ଗୋଟିଏ ଗୋଟିଏ କାମନାର ତୃପ୍ତି ସାଧନ କରିବାକୁ ହେବ ତାପରେ ଯାଇ ତାକୁ ଛାଡ଼ିବାକୁ ହେବ ? ଅଥବା ବିବେକ ବୁଦ୍ଧି ପ୍ରୟୋଗ କରି କୌଣସି ଗୋଟିଏ କାମନାର ତୃପ୍ତି ନକରି କ'ଣ ଛାଡ଼ି ଦେବାକୁ ହେବ ? ଏହି ଦୁଇଟି ପ୍ରକ୍ରିୟା ମଧ୍ୟ କାର୍ଯ୍ୟକାରୀ ନୁହେଁ । ସେମାନେ ଅନନ୍ତ । ଦଶହଜାର କାମନା ତୃପ୍ତି ହେଲେ ସୁଦ୍ଧା ଦଶଲକ୍ଷ ବାକି ରହିଯିବ, ଏବଂ ଦଶଲକ୍ଷ କାମନାର ତୃପ୍ତି ହେବା ପରେ ଦେଖାଯିବ ଦଶକୋଟି କାମନା ଅତୃପ୍ତ ରହିଯାଇଛି । ଏସବୁ ତ ଅନନ୍ତ । ବାବା ଅନେକ ଶାସ୍ତ୍ର ଅଧ୍ୟୟନ କରିଛନ୍ତି । କିନ୍ତୁ ଦୁଇବର୍ଷ ପୂର୍ବରୁ ଆରମ୍ଭ କରିଛନ୍ତି । ବାବାଙ୍କର ମନେ ହେଲା ଯେ "ରେଡ଼ିଓ ଏଷ୍ଟ୍ରୋନମି' କି ବିଷୟ ସେ ସମ୍ପର୍କରେ ଟିକିଏ ଜାଣିବା ଦରକାର । ମନେ କରନ୍ତୁ ଭବିଷ୍ୟତରେ ବାବା ରେଡ଼ିଓ ଏଷ୍ଟ୍ରୋନମି ବିଜ୍ଞାନ ବିଷୟରେ ଜାଣିଗଲେ । ଏପରି ଭାବରେ ନାନା ବିଷୟ ଜାଣିବା ପାଇଁ ବାରଂବାର ଯଦି ଆଗେଇ ଆସିବ ତେବେ ଏହି ପ୍ରଚେଷ୍ଟା ଏବଂ ଏହି ପଦ୍ଧତି ବ୍ୟର୍ଥ ହେବ ।

"କେତେବେଳେ ହେବ'' ତାର ଉତ୍ତର ଦିଆଯାଇଛି "ତୃତୀୟ'' ଦେହ ଭେଦେ' । ବାସନା ଗୁଡ଼ିକୁ ତିନିଭାଗରେ ବିଭକ୍ତ କରାଗଲା, ତାହାଦ୍ୱାରା କାର୍ଯ୍ୟ କିଛିଟା ସହଜ ହୋଇଯିବ । ଆମର ତିନିପ୍ରକାରର ସୂକ୍ଷ୍ମ ଦେହ ରହିଛି । ସେଗୁଡ଼ିକ ପ୍ରତି ଧ୍ୟାନ ଆକର୍ଷଣ କରି ଏହି କଥା ମୁଁ କହୁଛି ଯେ ଏହି ତିନି ଦେହରୁ ଭେଦ ଅର୍ଥାତ୍ ଛେଦ କରିବା ଉଚିତ । ଗୋଟିଏ ପରେ ଗୋଟିଏ ତିନି ଦେହର ଛେଦ ଅର୍ଥାତ ତିନୋଟି ଆବରଣକୁ ଭେଦ କରିବା ।

ଦେହର ଉପାଧିଠାରୁ ମଣିଷ ସବୁଦିଗରୁ ଭିନ୍ନ, ଏପ୍ରକାର ଦୃଢ଼ ବିଶ୍ୱାସ ମଣିଷ ମନରେ ଯଦି ଆସିବ ତେବେ ପ୍ରଥମ ଥର ପାଇଁ ଦେହ ଛିନ୍ନ ହୋଇଯାଏ । ଶାସ୍ତ୍ରୀୟ ଭାଷାରେ ତାହାକୁ

ବିବେକ କୁହାଯାଏ । ସାଧାରଣ ଭାଷାରେ "ବିବେକଯୁକ୍ତ ଆଚରଣ" କୁହାଯାଏ, ତାହା ଭିନ୍ନ କଥା । ତାହା ସାଧାରଣ ଅର୍ଥରେ ବ୍ୟବହୃତ ହୋଇଛି, ବିଶେଷ ଅର୍ଥ ହେଲା ଦେହଠାରୁ ନିଜକୁ ସବୁ କ୍ଷେତ୍ରରେ ଅଲଗା ବୋଲି ଭାବିବା । ତା'ପରେ, ମଣିଷ ଭିତରେ ଥିବା ସୂକ୍ଷ୍ମ ଅହଂକାର ଯାହାକୁ ଅସ୍ମିତା ନାମରେ ଅଭିହିତ କରାଯାଇଛି ତାହାକୁ ଭେଦ କରିବାକୁ ହେବ । ଏହି ସୂକ୍ଷ୍ମ ଅହଂକାରକୁ ପୋଛି ପକାଇବା ଦରକାର । ଏହା ହେଲା ଦେହ ଛେଦନ କରିବା । ଏହି ଦେହ ସ୍ଥୂଳ ଦେହର ଅନୁଗାମୀ ହୋଇ ରହିଥାଏ । ତାପରେ ତୃତୀୟ ଥରର ଭେଦ ହୋଇଛି, ଅବିଦ୍ୟାକୁ ଛିନ୍ନ କରିବା । ଏହିପରି ତିନିଥର ଦେହ ଭେଦ ହେବ ଯାହାର ସମାପ୍ତିର ଆପ୍ତକାମ (ପୂର୍ଣ୍ଣକାମ) ପୁରୁଷର ବିଶ୍ୱୈଶ୍ୱର୍ଯ୍ୟ ପ୍ରାପ୍ତି ହେବ ।

ଏହି ତିନି ପ୍ରକାର ଦେହକୁ କିପରି ଭାବରେ ଛିନ୍ନ କରାହେବ ତାର ଉତ୍ତରରେ କୁହା ହୋଇଛି ଯେ-"ତସ୍ୟାଭିଧ୍ୟାନତ୍' ଏହାକୁ ବୁଝିପାରିବା ଶୁଭ ସହଜ ଏବଂ ଶ୍ରଦ୍ଧା ପୂର୍ବକ ସାହାଯ୍ୟର ସହିତ ପ୍ରୟୋଗ କଲେ, ତାହା ସଂପନ୍ନ କରିବା ମଧ୍ୟ ସୁବିଧା ହେବ । ସନ୍ତାନ ଖାଇବା ପାଇଁ ଆସିଲେ, ତାକୁ ଖାଇବାକୁ ଦେଇ ମା ଅନ୍ୟ କାମରେ ଚାଲିଯାଆନ୍ତି ନାହିଁ । ସେ ତାହାର ସମ୍ମୁଖରେ ବସି ଥାଆନ୍ତି । ଯେପର୍ଯ୍ୟନ୍ତ ସେ ଖାଉଥାଏ ସେ ପର୍ଯ୍ୟନ୍ତ ସେ ସନ୍ତାନର ଅଭିଧ୍ୟାନ (ସନ୍ତାନ ପ୍ରତି ଧ୍ୟାନ ଦେବା)କରୁଥାନ୍ତି । ତେଣୁ ଅଭିଧାନ ଅର୍ଥ ସମ୍ମୁଖ ଧ୍ୟାନ । ଧ୍ୟାନ ଦୁଇ ପ୍ରକାରର । ଗୋଟିଏ ପ୍ରକାର ହେଲା ନିରପେକ୍ଷ ଧ୍ୟାନ, ଅନ୍ୟଟି ହେଲା ଭଗବାନଙ୍କୁ ସମ୍ମୁଖରେ ରଖି ଧ୍ୟାନ । ଭଗବାନ ସିଧାସଳଖ ଆମକୁ ଦେଖୁଛନ୍ତି, କେବଳ ଆମେ ତାଙ୍କୁ ଧ୍ୟାନ କରୁନାହୁଁ । ସେ ମଧ୍ୟ ଆମର ଧ୍ୟାନ କରୁଛନ୍ତି । ତାଙ୍କ ଉପସ୍ଥିତିରେ ଆମେ ଧ୍ୟାନ କରୁଛୁ, ଏଇ ପ୍ରକାର ଭାବନାରୁ ଯେଉଁ ଧ୍ୟାନ ହେବ ତାହା ହେବ ଅଭିଧ୍ୟାନ ।

ପତଞ୍ଜଳୀଙ୍କ ଯୋଗସୂତ୍ର ଅନେକାଂଶରେ ଧ୍ୟାନ-ନିର୍ଭର । କେବଳ ଏକଥା କୁହାଯାଏ ଯେ ସେ ଧ୍ୟାନକୁ ଅନ୍ତିମ ସ୍ତର କିମ୍ବା ସୋପାନ ବୋଲି ମନେ କରନ୍ତି ନାହିଁ । ଧ୍ୟାନପରେ ସମାଧି, ସମାଧି ପରେ ପ୍ରଜ୍ଞା ଏବଂ ପ୍ରଜ୍ଞା ପରେ ଯୋଗ, ଏହି ପରି ମନେ କରୁଥିଲେ । ସେ ଯୋଗକୁ ସର୍ବଶେଷ ସ୍ତର ମନେ କରୁଥିଲେ । କିନ୍ତୁ ତାହା ଧ୍ୟାନ ପ୍ରଧାନ । ଏହି ଭକ୍ତି ମଧ୍ୟରେ ଅଭିଧ୍ୟାନର ସ୍ଥାନ ରହିଛି ।

ବିଶ୍ୱକୁ ଗୋଟିଏ ଆଡ଼କୁ ଘୁଞ୍ଚେଇ ଦେଇ, ଅଲଗା କରି ଦେଇ, ଏଡ଼େଇ ଦେଇ ଯେଉଁ ଚିନ୍ତନ ହୁଏ ତାହା ହେଲା ଧ୍ୟାନ । କିନ୍ତୁ ବିଶ୍ୱ ସହିତ ଈଶ୍ୱରଙ୍କର ଧ୍ୟାନ ହେଲା ଅଭିଧ୍ୟାନ । ବିଶ୍ୱ ହିଁ ଈଶ୍ୱର ଏବଂ ସେଥିପାଇଁ ବିଶ୍ୱୈଶ୍ୱର୍ଯ୍ୟର ସେ ଅଧିକାରୀ ବୋଲି କୁହାଯାଇଛି । ବିଶ୍ୱ ମଧ୍ୟରେ ସେ ଈଶ୍ୱରଙ୍କୁ ଦର୍ଶନ କରିଥାଆନ୍ତି । ବିଶ୍ୱ ହିଁ ଈଶ୍ୱର, ଏହିପରି ଗୋଟିଏ ବିଶ୍ୱକୁ ସମ୍ମୁଖରେ ରଖି ଧ୍ୟାନ କରିବା, ଏତିକି ମାତ୍ର ନୁହେଁ ପାରସ୍ପରିକ ଧ୍ୟାନ । ମୁଁ ତାଙ୍କର ଧ୍ୟାନ କରୁଛି, ସେ ମୋର ଧ୍ୟାନ କରୁଛନ୍ତି । ଜ୍ଞାନ ଦେବ ଚିନ୍ତନିକାରେ ଏହି ପ୍ରକ୍ରିୟାର ଅନେକ ପ୍ରକାର ଉତ୍ତମ ଧରଣର ଉଦାହରଣ ଆପଣ ପାଇବେ । ଜ୍ଞାନ ଦେବ ମହାରାଜ ଯେଉଁ ପରିମାଣରେ ଧ୍ୟାନ କରିଛନ୍ତି, ତାହା ଅଭିଧ୍ୟାନର ନାମାନ୍ତର । "ଯୋଗୀୟାଁ ଦୁର୍ଲଭ ତୋ ମ୍ୟାଁ ଦେଖିଲା ସାଜଣୀ"-ଯୋଗୀମାନଙ୍କ

ପାଖରେ ଯାହା ଅତ୍ୟନ୍ତ ଦୁର୍ଲଭ ଥିଲା, ତାହା ଆଜି ମୁଁ ଦୁଇ ଆଖି ପୁରାଇ ଦେଖିଲି । ତୁକରାମ ମହାରାଜ କହିଛନ୍ତି-

ଲକ୍ଷ୍ଣୁନିୟାଁ ଯୋଗୀ ପାହତୀ ଆଭାସ
ତା ଦିସେ ଆମ୍ ହାଁସ ଦୃଷ୍ଟି ପୁଟେ ।

ଯୋଗୀଙ୍କ ଚିତ୍ତରେ, ଅନ୍ତରର ଗଭୀରରେ ଯାହାକୁ ଲକ୍ଷ୍ୟ ବସ୍ତୁ ବୋଲି ମନେ କରାଯାଏ, ତାହାରି ଆଭାସ ଦେଖିବାକୁ ମିଳେ । ବିଶ୍ୱକୁ ଆଭାସ ବୋଲି ମାନି ନେବାରେ ସେ ତତ୍ତ୍ୱଜ୍ଞାନୀ ହିସାବରେ ଅତ୍ୟନ୍ତ ସାହସିକତାର ପରିଚୟ ନେଇଛନ୍ତି । ତୁକରାମ ଯଦି ବିଶ୍ୱକୁ ଅଲଗା କରି ଦେଖିଥିବେ ତେବେ ତାକୁ ଆଭାସ ବୋଲି କହିଥିବେ । କବୀର ମଧ୍ୟ ଗାଇଛନ୍ତି- "ଖୁଲେ ନୈନ ପହଚାନୌ ହଁସି ହଁସି ସୁନ୍ଦର ରୂପ ନିହାରୌଁ । ଏହିପରି ଅଭିଧ୍ୟାନର ପରମ୍ପରା କେତେବେଳେ ଜ୍ଞାନଦେବଙ୍କ ରଚନାରେ । କେତେବେଳେ ତୁକାରାମଙ୍କ ରଚନାରେ ପୁଣି କେତେବେଳେ କବୀରଙ୍କ ଦୋହାରେ ଦେଖିବାକୁ ମିଳେ ।

ଅନ୍ୟଦିଗରେ ପରୋକ୍ଷ ଧ୍ୟାନର ମହାନ୍ ପ୍ରବାହ ଧାରା ତ ବିଦ୍ୟମାନ । ବିଶ୍ୱକୁ ଅଲଗା କରି ଆଡ଼େଇ ଦେଇ ଯେଉଁ ଧ୍ୟାନ କରାଯାଏ ତାହାକୁ ଏହି ସାଧକମାନେ ଅପରୋକ୍ଷ ମନେ କରନ୍ତି । ଏବଂ ତାର ନାମ "ସାକ୍ଷାତ୍‌କାର" ଦେଇଛନ୍ତି । ଯାହା ସମ୍ମୁଖରେ ପ୍ରତ୍ୟକ୍ଷ ଭାବରେ ଉପସ୍ଥିତ, ତାହାକୁ ସେମାନେ ପରୋକ୍ଷ କହନ୍ତି । କୌଣସି ସାକ୍ଷାତକାରୀ ପୁରୁଷକୁ ଲୋକମାନେ ପ୍ରଶ୍ନ କରି ପାରନ୍ତି, ଦୁନିଆରେ ଯେଉଁବସ୍ତୁ ଦେଖି ହୁଏ ନାହିଁ ସେ ତାହାର ବର୍ଣ୍ଣନା କରିଛନ୍ତି, ଲୋକମାନେ ସେତେବେଳେ ବୁଝି ପାରନ୍ତି ଯେ ତାଙ୍କର ଈଶ୍ୱର ଦର୍ଶନ ହୋଇଛି । ଯେଉଁ ସାକ୍ଷାତ୍, ଗଛପତ୍ର, ବିଲବାଡି, ମୂର୍ତ୍ତିମନ୍ତ ମଣିଷମାନଙ୍କର ବା କୌଣସି ପ୍ରାଣୀମାନଙ୍କର ଦୃଷ୍ଟି ଗୋଚର ହୋଇଛି ତାହାକୁ ସେମାନେ ସାକ୍ଷାତକାର-କହନ୍ତି ନାହିଁ ।

ପ୍ରଶ୍ନ ହେଉଛି, ଆମେ ଯେ ଏହି ଅଭିଧ୍ୟାନ କରି ଚାଲିଛୁ, ସେଥିରେ ଆମ ସମ୍ମୁଖରେ ବିଶ୍ୱୈଶ୍ୱର୍ଯ୍ୟ ପ୍ରକଟ ହେବା ଉଚିତ । ଆମେ ସମଗ୍ର ସୃଷ୍ଟିକୁ, ମଣିଷକୁ, ପ୍ରାଣୀ ଜଗତକୁ ତ ଦେଖିବାକୁ ପାଉ । କିନ୍ତୁ - ଯଦ୍ୱୈତନ୍ନ ପଶ୍ୟତି ପଶ୍ୟନ୍ ବୈତନ୍ନ ପଶ୍ୟତି' ଦେଖି ସୁଦ୍ଧା ଦେଖୁ ନାହୁଁ, ଶୁଣି ସୁଦ୍ଧା ଶୁଣୁ ନାହୁଁ । ସମ୍ମୁଖରେ ଯେ ବସିଛନ୍ତି ତାହାଙ୍କୁ ଭଗବାନଙ୍କର ମୂର୍ତ୍ତି, ଏପରି ଭାବରେ ଦେଖିଲେ ଯାଇ ତାହା ହେବା ଅଭିଧାନ । ଜଣେ ମଣିଷ ହିସାବରେ ଯଦି ଦେଖିବା ତେବେ ତାହା ହେବ ଭୌତିକ ଜ୍ଞାନ, ଭୌତିକ ଦର୍ଶନ ।

ବସ୍ତୁସ୍ଥିତି ଏପରି ଯେ, ଆମେ ମଣିଷ ଜୀବଜନ୍ତୁ, ଗଛପତ୍ର ଦେଖୁନାହୁଁ । କେବଳ ଚକ୍ଷୁ ଦ୍ୱାରା ମଣିଷ, ପ୍ରାଣୀ ଜଗତ, ସୃଷ୍ଟି ଦେଖି ହୁଏ ନାହିଁ । ଆଖି ସାହାଯ୍ୟରେ ତାର ରୂପ ଦେଖା ଯାଏ, କିନ୍ତୁ ଏହି ବସ୍ତୁ ଦେଖାଯାଏ ନାହିଁ । ଜ୍ଞାନ ଦ୍ୱାରା ଆମେ ମଣିଷକୁ ଶୁଣି ପାରୁନାହିଁ । ମଣିଷର ଶବ୍ଦ ଶୁଣୁ । ଆଖି ସାହାଯ୍ୟରେ ମଣିଷକୁ ଦେଖି ପାରୁନାହୁଁ, ମଣିଷର ରୂପ ଦେଖି ପାରୁ । ମଣିଷ ଏମିତିରେ ପୃଥକ୍ ହୋଇ ଯାଉଛି । ତାକୁ ନା ଦେଖି ପାରୁ ନା ସ୍ପର୍ଶ କରି ପାରୁ ନା ଶୁଣିପାରୁ । ଏସବୁ କରିବା ପରେ ମଧ ସେ ପୃଥକ୍ ହୋଇଯାଏ । ଏପରି ଗଭୀରତମ ବସ୍ତୁ ଆମ ସମ୍ମୁଖରେ ରହିଛି । ଆମକୁ ଏପରି ଅଭ୍ୟାସ କରିବାକୁ ହେବ ଯେ ଯେପରି ଆମ ସମ୍ମୁଖରେ ଯେତେ ଲୋକ

ଉପସ୍ଥିତ ହୁଅନ୍ତୁ ନା କାହିଁକି, ଭଗବାନ ଆମର ଦର୍ଶନ କରିବା ପାଇଁ ଏତେ ଗୁଡ଼ିଏ ରୂପରେ ନିଜକୁ ପ୍ରକାଶ କରିଛନ୍ତି ବୋଲି ମନେ କରିବା । ତାହାହେଲେ ଯାଇ ତାହା ହେବ ଅଭିଧାନ (ଅଭିମୁଖୀ ଧ୍ୟାନ) ।

ଅତି ସଂକ୍ଷେପରେ 'ସାମ୍ୟସୂତ୍ର' ପୁସ୍ତକରେ ମୁଁ ଏହାର ପ୍ରକ୍ରିୟା ସଂପର୍କରେ ଆଲୋଚନା କରିଛି -- 'ମାନୁଷଂ ସୌମ୍ୟମ୍' । ମଣିଷ ଭଗବାନଙ୍କର ସୌମ୍ୟ ମୂର୍ତ୍ତି ଏକଥା ଶୁଣିଲେ ଲୋକ ହସିବେ । ଏଥିପାଇଁ ଯେ ମଣିଷ ଠାରୁ ଅଧିକ ଭୟଙ୍କର ପ୍ରାଣୀ ସଂସାରରେ ଆଉ ନାହିଁ । ମଣିଷ ମଣିଷ ବିରୁଦ୍ଧରେ ଆଣବିକ ଅସ୍ତ୍ର ତିଆରି କରୁଛି । କିନ୍ତୁ ମଣିଷ ମୁଖ୍ୟତଃ ସୌମ୍ୟ । ଯେଉଁଠି ସୌମ୍ୟତା ସେଠାରେ ମାନବତା । ମାନବତ୍ୱ ସୌମ୍ୟତ୍ୱମ୍ -- ଏହା ହେଲା ମଣିଷର ବ୍ୟାଖ୍ୟା । ଯେଉଁଠାରେ ସୌମ୍ୟତା ନାହିଁ, ସେଠାରେ ମଣିଷର ଆକୃତି ଥିଲେ ମଧ ସେ ପଶୁ । ଏହାର ତାତ୍ପର୍ଯ୍ୟ ହେଉଛି, ଯେଉଁଠାରେ ସୌମ୍ୟତା ନାହିଁ, ସେଠାରେ ମାନବତା ନାହିଁ । ସାଧାରଣତଃ ମଣିଷ ସୌମ୍ୟ ହୁଏ । ସୌମ୍ୟ ଭଗବାନଙ୍କର ଦର୍ଶନ କରିବାକୁ ହେଲେ ମଣିଷ ଆଡ଼କୁ ଚାହଁ । ତାହାହେଲେ ମାନୁଷଂ ସୌମ୍ୟଂ ଏଇ କଥା ଆସିବ ।

ପୁଣି 'ସୃଷ୍ଟୌ ରମ୍ୟମ୍' -- ସୃଷ୍ଟି ମଧରେ ଭଗବାନଙ୍କର ରମଣୀୟ ରୂପ ପ୍ରକାଶିତ ହୋଇଛି । ତାହାକୁ ଦେଖ । ପୁଣି 'ପ୍ରାଣିଷୁ ଚିତ୍ରମ୍' । ପ୍ରାଣୀମାନଙ୍କ ମଧରେ ଭଗବାନଙ୍କର ବିଚିତ୍ର ରୂପର ପ୍ରକାଶ, ତାରି ଭିତରେ ଭଗବାନଙ୍କର ସ୍ୱରୂପ ଦର୍ଶନର ଚେଷ୍ଟା କଲେ ତାହା ହେବ ଅଭିଧାନ । ସର୍ବଶେଷ ସୂତ୍ରରେ ସବୁଠାରୁ କଷ୍ଟ ପରୀକ୍ଷାର ଉଲ୍ଲେଖ ଅଛି --

'ଦୁରାତ୍ମସୁ ଚିନ୍ତ୍ୟଂ ତଦେବ' — ଦୁର୍ଜନ ମଧରେ ମଧ ଈଶ୍ୱରଙ୍କ ଚିନ୍ତା କରିବାକୁ ହେବ । ଏହା କଷ୍ଟ ସାଧ୍ୟ ବ୍ୟାପାର । ଦୁର୍ଜନ ବ୍ୟକ୍ତି ଭଗବାନଙ୍କୁ ଲୁଚାଇ ରଖିଛି । ସେ ଭଗବାନଙ୍କୁ ଲୁଚାଇ ରଖିବାର ଉତ୍ତମ ବ୍ୟବସ୍ଥା ଗ୍ରହଣ କରିବ ବୋଲି ପ୍ରତିଜ୍ଞା କରିଛି । ଆମେ ଭଗବାନଙ୍କୁ ଲୁଚାଇ ରଖୁ କିନ୍ତୁ ଆମେ ଏପରି ପଣ କରୁନାହିଁ । କିନ୍ତୁ ଦୁର୍ଜନ ଲୋକମାନଙ୍କ ପଣ ହେଉଛି ଯେ ସେମାନେ ଭଗବାନଙ୍କୁ ବିନ୍ଦୁମାତ୍ର ପ୍ରକଟ ହେବାକୁ ଦେବେ ନାହିଁ । ଯେଉଁଠି ଦୁର୍ଜନତା ପ୍ରକଟ ହୁଏ ସେଠାରେ ଭଗବାନଙ୍କୁ ଚିହ୍ନିବା — ଏହା ବଡ଼ କଠିନ ସାଧନା । ଏହା ଚିନ୍ତାର ବିଷୟ । 'ଭାରତୀୟାର' (ତାମିଲ କବି) ଲେଖିଛନ୍ତି -- 'ତିନ୍ନବରୁମ ପୁଲି ତନ୍ନେୟୁମ୍ ଅନ୍‌ପୋତୁ ଚିନ୍ଦୈୟ ପୋଦୁବାୟ' -- ବାଘ ଖାଇବାକୁ ଆସିଛି ସେତେବେଳେ ସନ୍ମୁଖରେ ପରାଶକ୍ତି ଦଣ୍ଡାୟମାନ ଏପରି ମନେକର । ସେ ଖାଇବାକୁ ଆସିଛି ତାର ମୁହଁକୁ ସ୍ୱାଗତ ଜଣାଅ । ମୋ ନିକଟରେ ଏ କାମ ଏତେ କଠିନ୍ ବୋଲି ମନେ ହୁଏ,ନାହିଁ । କାରଣ ବାଘ ଦୁରାତ୍ମା ନୁହେଁ । ସେ କ୍ଷୁଧାର୍ତ୍ତ ଏବଂ ମୂର୍ଖ । ସେ ବାବାଙ୍କୁ ଖାଦ୍ୟ ମନେ କରିବ ଏବଂ ଖାଇବ । ପାଟି ଆଁ କରି ଆକ୍ରମଣ କରିଥାଏ, ସେଥିପାଇଁ ତାକୁ କ୍ରୁର ଦେଖାଯାଏ । କିନ୍ତୁ ଭାବି ଦେଖନ୍ତୁ, ଯେତେବେଳେ କେହି ଆମ ଥାଳୀରେ ପରିବେଷଣ କରାଯାଇଥିବା ଖାଦ୍ୟ ଉଠାଇ ନିଏ ତେବେ ଆମେ କେତେ କ୍ରୁର ହୋଇଯାଉ । କିନ୍ତୁ ଏତେ ସବୁ ଘଟିବା ପରେ ମଧ ବାଘ ଭିତରେ ପରାଶକ୍ତିର ଅସ୍ତିତ୍ୱ ଚିହ୍ନିବା ମୋ ପକ୍ଷରେ କଠିନ ନୁହେଁ । କିନ୍ତୁ ଦୁରାତ୍ମା ହୃଦୟରେ , ପରମ ଦୁର୍ଜନ ମଧରେ, ରାବଣ ମଧରେ ଭଗବାନଙ୍କୁ ଦେଖିବା ଅତି କଠିନ କାର୍ଯ୍ୟ । ଏହା ହେଲା ଅଭିଧାନର ଅନ୍ତିମ ପ୍ରକ୍ରିୟା ।

# ୭.ଧ୍ୟାନ-ବିନ୍ଦୁ

୧.   ଧ୍ୟାନ ବିନ୍ଦୁ

ଯୋଗ ଅର୍ଥାତ୍ ନିଜ ସହିତ ନିଜର ସାକ୍ଷାତକାର । ଆମେ ଦୁନିଆର ଲୋକମାନଙ୍କ ସହିତ ଦେଖା ସାକ୍ଷାତ କରୁ । କିନ୍ତୁ କେବେ କ'ଣ ନିଜ ସହିତ ମିଳିତ ହେବା ପାଇଁ ଆଗ୍ରହୀ ହୋଇଛୁ କି ? 'ବହୁତାଂ ଦିସାଂ ଆପୁନୀ ଭେଟ ଝାଲି' । ବହୁଦିନ ପରେ ମୁଁ ନିଜ ସହିତ ମିଳିତ ହେଲି । ନିଜର ସାକ୍ଷାତକାର ପାଇବା ବଡ଼ କଠିନ କାର୍ଯ୍ୟ । ଲୋକମାନେ ଦର୍ପଣରେ ନିଜର ଚେହେରା ଦେଖି ମନେ କରନ୍ତି ଯେ ନିଜ ସହିତ ସାକ୍ଷାତ ହେଲା । କିନ୍ତୁ ତାହାକୁ ପ୍ରକୃତ ସାକ୍ଷାତକାର କୁହାଯାଏ ନାହିଁ । ନିଜର ସାକ୍ଷାତକାର ଅର୍ଥ ଯୋଗ ।

***   ***   ***

ଆମର ଦିନ ଭିତରେ ଏକ ଘଣ୍ଟା ସମୟ ବାହାର କରିବା ଦରକାର ଆଉ ସବୁ କାମରୁ ମୁକ୍ତ ରହି ଅଧ୍ୟୟନ, ଧ୍ୟାନ ଇତ୍ୟାଦି କରିବା ଦରକାର । ଦିନରେ ଏକ ଘଣ୍ଟା, ସପ୍ତାହରେ ଏକ ଦିନ ଏବଂ ବର୍ଷରେ ଏକ ମାସ ଅଧ୍ୟୟନ, ଚିନ୍ତନ ମନନ ଧ୍ୟାନ ଇତ୍ୟାଦି ପାଇଁ ସମୟ ଦେବା ଦରକାର ।

***   ***   ***

ରାତିରେ ଶୋଇବା ସମୟରେ ଏବଂ ସକାଳେ ନିଦରୁ ଉଠିବା ପରେ ଅଳ୍ପ କିଛି ସମୟ ଧ୍ୟାନ କରିବା ଉଚିତ । ତାହା ଦ୍ୱାରା ମନ ଭିତରେ ଶକ୍ତିର ନିର୍ମାଣ ହୁଏ ।

***   ***   ***

--   ଧ୍ୟାନ ପାଇଁ ଆମର ସର୍ବ ପ୍ରଥମେ କ'ଣ କରିବା ଦରକାର ?

"ଶରୀର ଶ୍ରମ ଏବଂ ଈଶ୍ୱରଙ୍କ ନିକଟରେ ପ୍ରାର୍ଥନା ।"

--   ଧ୍ୟାନର ଲକ୍ଷ୍ୟ କ'ଣ ?

"ଚିତ୍ତ ଶୁଦ୍ଧି । ଚିତ୍ତରେ (ମନରେ) ଯେପରି କୌଣସି ବିକଳ୍ପ ଜନ୍ମ ହେବ ନାହିଁ ।"

--   ପ୍ରକୃତ ଧ୍ୟାନ କ'ଣ ?

"ମନରେ ଶାନ୍ତି ଆସିବା ହେଉଛି ପ୍ରକୃତ ଧ୍ୟାନ - ମନ ଯେପରି କ୍ଷୁବ୍ଧ ନ ହେବ ।"

--   ଧ୍ୟାନ ସହିତ ଭୋଜନ, ପାନ, ଶୟନ ଇତ୍ୟାଦିର ସଂପର୍କ କ'ଣ ?

ଯଦି ଧ୍ୟାନ ସହିତ ପାନ ଭୋଜନ ଇତ୍ୟାଦିର ଇଚ୍ଛା ଜାଗ୍ରତ ହୁଏ ତେବେ ପାନ ଭୋଜନ-ଶୟନ ସବୁ "ପବିତ୍ର ହେବ" ।

-- ମନକୁ କିପରି ଭାବରେ ନିଜ ଆୟତରେ ରଖାଯାଇ ପାରିବ ?

(ମନିରାମ) "ମନକୁ ନିଜ ବଶରେ ରଖିବା କାମ ବଡ଼ କଠିନ, କିନ୍ତୁ ତାହା ଅଭ୍ୟାସ ଦ୍ୱାରା ସିଦ୍ଧି ହେବ ।"

-- କିପରି ଭାବରେ ?

""ମନୀକୁ ଛାଡ଼ି ଦିଅ, 'ରାମ' କୁ ଧରି ରଖ, ମନୀ ମାନେ ଟଂକା ପଇସା ମାୟା । ମାୟାକୁ ଛାଡ଼ ରାମକୁ ଧର ।"

-- ଆସନ ପ୍ରାଣାୟାମ ସଂବନ୍ଧରେ ଆପଣଙ୍କର ମତ କ'ଣ ?

"ପଦ୍ମାସନ, ସିଦ୍ଧାସନ ଏବଂ ପ୍ରାଣାୟାମ ମଧ ମନର ଏକାଗ୍ରତା ପାଇଁ ସହାୟକ । ଶବାସନ ଦ୍ୱାରା ମନରେ ଶାନ୍ତି ଆସେ ।"

-- ବ୍ରହ୍ମ ବିଦ୍ୟା ଓ ହଠ୍ ଯୋଗ କ'ଣ ଏକା କଥା ନା ଭିନ୍ନ ଭିନ୍ନ ?

"ପ୍ରାଣ ଜୟ ଦ୍ୱାରା ମନୋଜୟ କରିବାକୁ ହଠ୍ ଯୋଗ କୁହାଯାଏ । ଆଉ ବ୍ରହ୍ମ ବିଦ୍ୟାରେ ମନୋଜୟ ଦ୍ୱାରା ପ୍ରାଣକୁ ବଶରେ ରଖିବାର କଥା ଆସିଥାଏ । ହଠ୍ ଯୋଗରେ ପ୍ରାଣକୁ ଶାନ୍ତ କରି ଚିତ୍ତକୁ ଶାନ୍ତ କରିବାକୁ ହୁଏ । ବ୍ରହ୍ମ ବିଦ୍ୟାର କାମ ହେଲା ଚିତ୍ତକୁ ଶାନ୍ତ କରି ପ୍ରାଣକୁ ଶାନ୍ତ କରିବା ।"

*** *** ***

ଆସନରେ ବସି ଧ୍ୟାନ କରିବା ଗୋଟିଏ ପ୍ରକାର । ଦଶ କୋଡ଼ିଏ ମିନିଟ ଧ୍ୟାନ କରିବା ଅନ୍ୟ କଥା । ପୁଣି ଦିନ ସାରା ବସି ଧ୍ୟାନ କରିବା ତୃତୀୟ କଥା । ଯେ କୌଣସି କାମ କରିବା ବେଳେ 'ଆମେ ଭଗବାନଙ୍କ ଧ୍ୟାନ କରୁଛୁ' ଏ ଭାବନା ମନରେ ଥିଲେ ତାହାକୁ ଧ୍ୟାନ କୁହାଯାଏ । ଏହା ହେଉଛି ମୁଖ୍ୟ କଥା ।

*** *** ***

ଚିତ୍ତର ଏକାଗ୍ରତା ଯୋଗର ସମାପ୍ତି ନୁହେଁ । ସେହି ଠାରୁ ଯୋଗର ଆରମ୍ଭ ।

*** *** ***

'ଧ୍ୟାନ କୌଣସି କାର୍ଯ୍ୟ କରିବାର ବସ୍ତୁ ନୁହେଁ, କାର୍ଯ୍ୟ କରିବାର ବସ୍ତୁ ହେଲା 'ସଫାଇ', 'ସୁବ୍ୟବସ୍ଥା' ଇତ୍ୟାଦି । କିଛି ନ କରି ଧ୍ୟାନ ହେବା ଉଚିତ ।

*** *** ***

ପ୍ରତ୍ୟେକ ବସ୍ତୁକୁ ଠିକ୍ ଯାଗାରେ ରଖିବା ହେଉଛି ଧ୍ୟାନ ।

*** *** ***

ନିଜର ଚିତ୍ତ ଠାରୁ ଆରମ୍ଭ କରି ସାମାନ୍ୟ ବସ୍ତୁ ପର୍ଯ୍ୟନ୍ତ ଯାହା ଯେଉଁଠି ଅଛି, ତାହା କାହିଁକି ଏହିପରି ରହିଛି ଯଦି ଏହାର ସମାଧାନ କାରକ ଉତ୍ତର ମିଳିଯାଏ, ତେବେ ସେହି ସ୍ଥାନ ଧ୍ୟାନାତ୍ମକ ହୋଇ ଉଠେ ।

*** *** ***

ଈଶ୍ୱରଙ୍କ ଧ୍ୟାନ ଯଦି କରିବାକୁ ହେବ ତେବେ ତାଙ୍କ ପ୍ରତି ସଂପୂର୍ଣ୍ଣ ପ୍ରେମ ରହିବା ଉଚିତ । ଯେପରି ସନ୍ତାନ ପ୍ରତି ମା'ର ପ୍ରେମ ଥାଏ, ସେଥିପାଇଁ ସନ୍ତାନ ପ୍ରତି ତାର ମନରେ ସଂପୂର୍ଣ୍ଣ ଧ୍ୟାନ ନିବଦ୍ଧ ଥାଏ ।

*** *** ***

ଅତ୍ୟନ୍ତ ଦୂରରେ ରହିବା ପରି ମନେ ହେଉଥିବା ପରମେଶ୍ୱର ହିଁ ଆମର ନିକଟତମ ଅନ୍ତର୍ଯ୍ୟାମୀ । ଏହାର ଅର୍ଥ ହେଲା ସେ ହେଉଛନ୍ତି 'ମୁଁ' । ଏହି ମନୋଭାବ ଧ୍ୟାନ ମଧ୍ୟରେ ଅନୁଭୂତ ହେବା ଆଶା କରିବାକୁ ହେବ ।

ମନ୍ଦିରର ମୂର୍ତ୍ତି ଆମର ଧ୍ୟାନ ପାଇଁ ହିଁ ଅଛି । ଯାହାର ଯେପରି ଧ୍ୟାନ ସେହିପରି ତାର ମନ -- ଧ୍ୟାନ କରୁଥିବା ଭକ୍ତର ଅବସ୍ଥା ଏହିପରି ହୋଇଯାଏ । ପୁଣି, ଆମେ ଯଦି ସମତ୍ୱ ବୁଦ୍ଧିରେ ସାରାଦିନ ଧରି କାମ କରିଯିବା, ତେବେ ତାହା ଅନ୍ତରର ଗଭୀରତମ ଦେଶରେ ଭାବ ମାଧୁର୍ଯ୍ୟର ଧ୍ୟାନମୟ ଭଣ୍ଡାର ସୃଷ୍ଟି କରିବ ।

*** *** ***

ସନ୍ଧ୍ୟା ଅର୍ଥାତ୍ ସମ୍ୟକ୍ ଧ୍ୟାନ ଉତ୍ତମ ଧ୍ୟାନ ।

ପାଣିର ଫର୍ମୁଲା ହେଲା ଏଇଚ ଟୁ ଓ ($H_2O$) । ଉତ୍ତମ ଜୀବନର ସୂତ୍ର ହେଲା ଏମ୍ ଟୁ ଏ ($M_2A$), ଦୁଇଭାଗ ଧ୍ୟାନ, ଏକ ଭାଗ କର୍ମ ।

****

ଧ୍ୟାନ ଶକ୍ତିର ପରୀକ୍ଷା ନିଦ୍ରାଜୟ ମଧ୍ୟରେ ନିହିତ । ଅର୍ଥାତ୍ ଇଚ୍ଛା ହେବା ମାତ୍ରେ ନିଦ ଆସିବା ଦରକାର ।

***

ଭୂତ ଏବଂ ଭବିଷ୍ୟତ ଏହି ଦୁଇଟି ଦ୍ୱାରା ଯଦି ଚିତ୍ତ ଆକ୍ରାନ୍ତ ହୁଏ ତେବେ ଧ୍ୟାନ ଆଦି କିଛି ହେବ ନାହିଁ ।

***

ସଂସାର ଭିତରେ ରହି ଆମ ଉପରକୁ ଯେଉଁ ସବୁ ବାଧା ଆସେ ସେଥିରୁ ଆତ୍ମରକ୍ଷାର ସର୍ବ ପ୍ରଥମ କୌଶଳ ହେଉଛି ଧ୍ୟାନ। ଜ୍ଞାନ ଦ୍ୱାରା ଆମେ ବିଶ୍ୱରେ ବାଧା ସୃଷ୍ଟି କରି ତାହାକୁ ସବୁବେଳ ପାଇଁ ଆହତ କରୁ।

ବିଶ୍ୱ ଲୟ କରିବା ଧ୍ୟାନର ରୂପ।

ବିଶ୍ୱକୁ ବ୍ରହ୍ମରୂପେ ଦେଖିବା ଜ୍ଞାନର ରୂପ।

*  *  *

ଧ୍ୟାନ ପାଇଁ ଆସନ ପ୍ରୟୋଜନ

ବିଚାର ପାଇଁ ଭ୍ରମଣ ପ୍ରୟୋଜନ

***  ***  ***

ଧ୍ୟାନ ଛଅ ପ୍ରକାର :

୧. ଆତ୍ମପରୀକ୍ଷଣ, ୨-ଈଶ୍ୱର ଚିନ୍ତନ, ୩-ବାକ୍ୟାର୍ଥର ଅନୁଶୀଳନ, ୪-ନାମ ସ୍ମରଣ, ୫-ଭଗବଦ୍ ଲୀଳାରେ ଅବଗୋହନ, ୬- ସଚ୍ଚରିତ୍ରର ଅବଲୋକନ

ମୌନର ଅର୍ଥ :

୧-ବାକ୍ ସଂଯମ, ୨-ସତ୍ୟ ସଂଗ୍ରହ, ୩-ଶକ୍ତି ସଂଚୟ, ୪-ଧ୍ୟାନ ସାଧନ

କର୍ମଯୋଗ ପାଇଁ ମିତାହାର।

ଧ୍ୟାନଯୋଗ ପାଇଁ ସ୍ୱଳ୍ପାହାର।

ତୀବ୍ର ଦୋଷ କ୍ଷାଳନ ପାଇଁ ନିରାହାର।

***  ***  ***

ଧ୍ୟାନର ଅର୍ଥ ହେଲା ଇନ୍ଦ୍ରିୟ ସମୂହକୁ ମନ ଭିତରେ, ମନକୁ ବୁଦ୍ଧି ଭିତରେ, ଏବଂ ଶେଷରେ ବୁଦ୍ଧିକୁ ମଧ୍ୟ ନିଜ ସ୍ୱରୂପ ମଧ୍ୟରେ ସମାପ୍ତ କରି ଦେଇ ସମାଧି ଅର୍ଥାତ୍ ଆକାଶ ପରି ଶୂନ୍ୟତାର ଅନୁଭବ କରିବା।

***  ***  ***

ଧ୍ୟାନ ଯୋଗର ଅନ୍ତିମ ଅବସ୍ଥାର ଉପଲବ୍ଧି ପାଇଁ ବାଣୀକୁ ବିସର୍ଜନ ଦେବା ଲାଭ ଦାୟକ।

***  ***  ***

ସକ୍ରିୟ-ନିଷ୍କ୍ରିୟ ଧ୍ୟାନର ସୂକ୍ଷ୍ମ ଭେଦ । ଦିନରେ ଧ୍ୟାନ ଚିନ୍ତନ ସକ୍ରୀୟ, ରାତିରେ ଧ୍ୟାନ ହେଲା ନିଷ୍କ୍ରିୟ । ସକ୍ରିୟ ଧ୍ୟାନ ଦ୍ୱାରା ଶକ୍ତି ଲାଭ ହୁଏ, ନିଷ୍କ୍ରିୟ ଧ୍ୟାନ ଦ୍ୱାରା ଶାନ୍ତି ଲାଭ ହୁଏ । ଉଭୟ ଧ୍ୟାନ ଦ୍ୱାରା ଭକ୍ତି ଲାଭ ହୁଏ ।

*** *** ***

ବାବା କିଛି ସମୟ ଆଲମ୍ବନ ଧ୍ୟାନ, କିଛି ସମୟ ନିରାଲମ୍ବନ ଧ୍ୟାନ କରିଥାଆନ୍ତି । ଲୋକମାନେ ପ୍ରଶ୍ନ କରନ୍ତି, ଆପଣଙ୍କ ଆଲମ୍ବନର ଆବଶ୍ୟକତା ବା କ'ଣ ଅଛି ? ଭକ୍ତି ପାଇଁ କିଛିଟା ଆଲମ୍ବନ ରହିବା ଆବଶ୍ୟକ ।

*** *** ***

ଜପ, ଧ୍ୟାନ ଓ ଆଚରଣ-ଏହି ତିନିପ୍ରକାର ପ୍ରୟୋଗ ଦ୍ୱାରା ବୁଦ୍ଧିର ରୂପାନ୍ତର ଘଟିଥାଏ । "ବାଣୀର ଉଚ୍ଚାରଣ' ଏତିକିମାତ୍ର ଜପର ଅର୍ଥ ନୁହେଁ, ମନ ଭିତରେ ମଧ୍ୟ ଏହି ବିଚାର ଧାରାର ମନ୍ଥନ ହେବା ଉଚିତ । ଦ୍ୱିତୀୟ ପ୍ରୟୋଗ ଧ୍ୟାନ । "ଧ୍ୟାନ" କ୍ରିୟାର ଅର୍ଥ ଏହି ବିଚାର ଧାରାରେ ତନ୍ମୟ ହୋଇ ରହିବା ଏବଂ ତାର ଅନୁକୂଳ ଉପାସନା କରିବା ।

ଏଥିରୁ ଆଚରଣ ରୂପକ ତୃତୀୟ ପ୍ରକାରର ପ୍ରୟୋଗ ଆରମ୍ଭ ହୁଏ । ତାର ସ୍ୱରୂପ ହେଲା ବିଚାରଧାରା ଅନୁସାରେ ଜୀବନ ରଚନା ।

*** *** ***

ଅପିଚ ସଂରାଧନେ ପ୍ରତ୍ୟକ୍ଷାନୁମାନାଭ୍ୟାମ୍ (ବ୍ରହ୍ମସୂତ୍ର ୩.୨.୨୪)

ଏହି ସୂତ୍ରର ଏକ ଅର୍ଥ । "ଶ୍ରୁତି ଏବଂ ସ୍ମୃତି ଶାସ୍ତ୍ର ସମୂହରର ସିଦ୍ଧାନ୍ତ ହେଉଛି-ଧ୍ୟାନାବସ୍ଥାରେ ଅବ୍ୟକ୍ତ ଈଶ୍ୱରଙ୍କର ମଧ୍ୟ ଦର୍ଶନ ହୋଇପାରେ ।"

*** *** ***

ଶାସ୍ତ୍ରରେ ସପ୍ତଲୋକର କଥା କୁହାଯାଇଛି- ଭୂଃ, ଭୁବଃ, ସ୍ୱଃ, ଜନଃ, ତପଃ, ସତ୍ୟମ୍ । ଏ ଯେଉଁ ସପ୍ତଲୋକର କଥା କୁହାଗଲା ସେଗୁଡ଼ିକ ହେଉଛି ଚିନ୍ତନର ବିଭିନ୍ନ ସ୍ତର । ଭୂଃ ଲୋକରେ ଚିନ୍ତନ ହେବ । ପୁଣି ପ୍ରାଣାୟାମ ଇତ୍ୟାଦି ଯଦି କରାଯାଏ ତେବେ ଭୁବଃ ଲୋକରେ ଚିନ୍ତନ କରାଯିବ, ପୁଣି ଯଦି ଧ୍ୟାନ କରାଯିବ ତେବେ ସ୍ୱର୍ଗଲୋକରେ ଚିନ୍ତନ ହେବ । ତାପରେ ଚିନ୍ତନ ଶକ୍ତି ଦ୍ୱାରା ମନର ଉପରସ୍ତରକୁ ଯିବାକୁ ହେବ - ଅର୍ଥାତ୍ ମହଃ ଲୋକକୁ ଯିବାକୁ ହେବ । ସର୍ବଶେଷରେ ସତ୍ୟଲୋକକୁ ଯିବା ।

*** *** ***

ଜ୍ଞାନୀବ୍ୟକ୍ତିଙ୍କ ଦେହରେ ଦୁଃଖର ପ୍ରଭାବ ପଡ଼ିବାର ଦେଖାଯାଏ, କିନ୍ତୁ ତାଙ୍କର ହୃଦୟ ଦୁଃଖୀ ହୁଏ ନାହିଁ। ଜ୍ଞାନୀମାନଙ୍କ ମଧ୍ୟରେ ଦୁଃଖର ଅନୁଭବ ରହିଛି କିନ୍ତୁ ସେ ଅବିଚଳ ରହନ୍ତି। ଧ୍ୟାନ ଉପରେ ଦୁଃଖର ପ୍ରଭାବ ପଡ଼େ ନାହିଁ। ତା ଉପରେ ଧ୍ୟାନର କ୍ଲୋରଫର୍ମ ଲଦି ଦିଆଯାଇଥାଏ।

***   ***   ***

ପାଞ୍ଚହଜାର ବର୍ଷ ଧରି ମୁନି ଋଷିମାନଙ୍କ ଧ୍ୟାନ ସାଧନାର ଆବରଣ ତଳେ ବିଷ୍ଣୁ ସହସ୍ର ନାମ ଆବୃତ ହେଉଛି। ହୋମିଓପ୍ୟାଥି ଭାଷାରେ ମର୍ଦ୍ଦନଂ ଗୁଣ ବର୍ଦ୍ଧନଂ-ଯେତେ ବେଶୀ ମର୍ଦ୍ଦନ କରାଯିବ, ସେତେବେଶୀ ଗୁଣ ବର୍ଦ୍ଧନ ହେବ :- ଏହି ତତ୍ତ୍ୱ ଏ ବ୍ୟାପାରରେ ମଧ୍ୟ ପ୍ରଯୁଜ୍ୟ। ତାହାର ପ୍ରତିଟି ନାମ ଉପରେ ଧ୍ୟାନର ପ୍ରଲେପ ଲଗାଯାଇଛି। କୌଣସି ଏକ ବିଶେଷ ପୁରୁଷଙ୍କ ନାମରେ ଧ୍ୟାନର ପ୍ରଲେପ ଲଗାଉ ଲଗାଉ ତାର ଗୁଣ ଯେପରି ବଢ଼େ, ସେହିପରି ଦୋଷ କମିବାକୁ ଲାଗେ। ଯାହା ଫଳରେ, ଶେଷକୁ ଗୁଣ ହିଁ କେବଳ ରହିଯିବ, ଏହିପରି ହୋଇଥାଏ। ଏହିପରି ଭାବରେ ଅବତାର ଉପରେ ପୂର୍ଣ୍ଣତା ଆରୋପ କରାଯାଏ।

***   ***   ***

ଜନସେବା ଏବଂ ଧ୍ୟାନ ଚିନ୍ତନ ଆଦି ମଧ୍ୟରେ କେଉଁଠି କିଛି ବିରୋଧ ନାହିଁ। ଯେଉଁ ଜନ ସେବାରେ ଧ୍ୟାନ ଚିନ୍ତନ ହୁଏ ନାହିଁ, ସେହି ଜନ ସେବା ମିଥ୍ୟା ମନେ ହେବ। ଅପର ଦିଗରେ ଯେଉଁ ଧ୍ୟାନ-ଚିନ୍ତନ ତାତ୍କାଳିକ ଜନସେବା ବିରୁଦ୍ଧରେ ତ୍ୟାଗ ପାଇଁ କୁହାଯାଏ, ସେ ପ୍ରକାର ଧ୍ୟାନ ଚିନ୍ତନ ମଧ୍ୟ ମିଥ୍ୟା, ଭ୍ରମାତ୍ମକ ବୋଲି ବୁଝିବାକୁ ହେବ। ସାଧନା କ୍ଷେତ୍ରରେ ନିରହଂକାରିତା ଏବଂ ଆସକ୍ତି ବିହୀନତା ମୁଖ୍ୟ ବସ୍ତୁ। ଜନସେବା ଏବଂ ଧ୍ୟାନକୁ ଅନାସକ୍ତିର କଷ୍ଟିପଥରରେ ପରୀକ୍ଷା କରିନେବା ଦରକାର। ଏହାପରେ ଜନସେବା ଓ ଧ୍ୟାନ ଉଭୟେ ଏକରୂପ ହୋଇ ଯାଆନ୍ତି।

***   ***   ***

ଯେତେବେଳ ପର୍ଯ୍ୟନ୍ତ ଆତ୍ମ ନିରୀକ୍ଷଣ ଏବଂ ଆତ୍ମ ଶୁଦ୍ଧିର ପ୍ରଶ୍ନ ଅଛି, ଜୀବନରେ ଏପରି ଗୋଟିଏ ସମୟ ଖୋଜି ବାହାର କରିବା ଦରକାର, ଯେତେବେଳେ ପରିପୂର୍ଣ୍ଣ ଶାନ୍ତି ଏବଂ ନିର୍ଜନତା ଉପଲବ୍ଧି କରିହେବ। ସେ ସମୟରେ ସଂପୂର୍ଣ୍ଣ ଭାବରେ ଧ୍ୟାନସ୍ଥ ହେବା ପାଇଁ ପ୍ରଯତ୍ନଶୀଳ ହେବା ଦରକାର। କିଛି ଧ୍ୟାନ ଓ କିଛି ଜନ ସଂଯୋଗ ହେଉଥିବ, ତେବେ ଯାଇ ବର୍ତ୍ତମାନ ଯୁଗରେ ମଣିଷର ମସ୍ତିଷ୍କ ସ୍ଥିରତା ଅର୍ଜନ କରିବ ଏବଂ ତା ହାତରେ କିଛି ସେବା କାର୍ଯ୍ୟ ହେବା ମଧ୍ୟ ସଂଭବପର ହେବ।

***   ***   ***

ସେବା ହେଉ ଅବା କାମ ହେଉ, ଧ୍ୟାନ ହେଉ ଅବା ଅଧ୍ୟୟନ ହେଉ, ଯେ ପର୍ଯ୍ୟନ୍ତ ତାହା ଈଶ୍ୱର ସହିତ ଯୁକ୍ତ ହୋଇ ନ ଯାଇଛି, ସେ ପର୍ଯ୍ୟନ୍ତ ତାହା ପାରମାର୍ଥିକ କାର୍ଯ୍ୟ ନୁହେଁ। ଯା

ପରିବର୍ତ୍ତନରେ ଯଦି କୁହାଯାଏ, କୌଣସି ମଣିଷର ଖେଳ ଯଦି ଭଗବାନଙ୍କ ସହିତ ସଂବନ୍ଧ ସ୍ଥାପନ କରେ, ତାହାହେଲେ ସେହିଖେଳ ମଧ୍ୟ ପାରମାର୍ଥିକ ସାଧନା ହୋଇପାରେ ।

*** *** ***

ଧ୍ୟାନ ପାଇଁ ସଂପୂର୍ଣ୍ଣ ଭାବରେ ଇନ୍ଦ୍ରିୟ ନିଗ୍ରହ ଆବଶ୍ୟକ । ଜନସେବା ପାଇଁ ଇନ୍ଦ୍ରିୟ ଗୁଡ଼ିକର ଉଚିତ-ବ୍ୟବହାର । ଅର୍ଥାତ କିଛିଟା ଖୋଲି ରଖିବା ଏବଂ କିଛିଟା ନିରୋଧ କରିବା । ଭକ୍ତି ମାର୍ଗରେ ସବୁ କିଛି ଖୋଲା ରଖାଯାଏ ।

*** *** ***

ଜ୍ଞାନୀ, ଧ୍ୟାନୀ ଓ ଭକ୍ତ ଗୋଟିଏ ଗୋଟିଏ ବିଷୟରେ ଧୁରନ୍ଧର ହୋଇଥାନ୍ତି । ସେମାନଙ୍କର ଅଭିଜ୍ଞତାପୂର୍ଣ୍ଣ ଜ୍ଞାନ ଅଛି, ପ୍ରବୀଣତା ମଧ୍ୟ ଅଛି । ସେମାନଙ୍କ ଦ୍ୱାରା ସମାଜରେ ମହତ୍ କାର୍ଯ୍ୟ ହୁଏ । ସେମାନେ ଏକାଙ୍ଗୀ ହେବା ସତ୍ତ୍ୱେ ସେମାନଙ୍କର ନିଜ ବିଷୟରେ ସେମାନଙ୍କ ଦ୍ୱାରା ଯାହା ମିଳିଥାଏ ତାହା ଅନ୍ୟମାନଙ୍କଠାରୁ ମିଳେ ନାହିଁ ।

*** *** ***

ଋଷିମାନେ କହନ୍ତି, ପର୍ବତ ସାନ୍ନିଧ୍ୟରେ ଏବଂ ନଦୀର ସଂଗମରେ ଜ୍ଞାନୀ ବ୍ୟକ୍ତିମାନଙ୍କ ଜନ୍ମ ହୁଏ । ପାହାଡ଼ିଆ ଅଞ୍ଚଳରେ ଆମେ ବନ୍ୟଜନ୍ତୁ କେବଳ ଦେଖିବାକୁ ପାଉ । ତାହାହେଲେ ଋଷିମାନେ କିପରି କହନ୍ତି ଯେ ପର୍ବତ ସାନ୍ନିଧ୍ୟରେ ଜ୍ଞାନୀମାନଙ୍କର ଜନ୍ମ ହୁଏ ବୋଲି ? କଥା ହେଉଛି ଯେ ଧ୍ୟାନ ଦ୍ୱାରା ସେମାନଙ୍କର ଜନ୍ମ ହୁଏ । ଏହି ଧ୍ୟାନ ବନ୍ୟ ଜନ୍ତୁମାନଙ୍କର ହୁଏ ନାହିଁ ।

ଆମେ ପାହାଡ଼ର ଧ୍ୟାନ କରୁ ଏବଂ ପାହାଡ଼ଠାରୁ ଆମେ ଶକ୍ତି ଲାଭ କରୁ । ପାହାଡ଼ ଆମର ଗୁରୁଙ୍କର ସ୍ଥାନ ଅଧିକାର କରେ । ପାହାଡ଼ ଉପରେ ସବୁଠାରୁ ବେଶୀ ବର୍ଷା ହୋଇଥାଏ କିନ୍ତୁ ସବୁ ପାଣିକୁ ପାହାଡ଼ ଚାରିଆଡ଼େ ବିଛାଇ ଦିଏ ଏବଂ ନଦୀଗୁଡ଼ିକ ସେସବୁ ପାଣିକୁ ବହିନିଏ । ଏହିପରି ଯେଉଁ ବ୍ୟକ୍ତି ନିଜର ବୁଦ୍ଧି ଓ ଶକ୍ତିର ଗୁଣକୁ ଅନ୍ୟକୁ ବାଣ୍ଟିଦିଏ, ତାର ମହାନତା ଶୋଭାପାଏ ।

*** *** ***

ଧ୍ୟାନ କଲେ ତାହା ଯେ ଆଧ୍ୟାତ୍ମିକ ସାଧନା ହେବ ଏକଥା କୁହାଯାଇ ପାରେ ନାହିଁ । ନାକ ବନ୍ଦ କରି ଧିରେ ଧିରେ ଶ୍ୱାସ ଛାଡ଼ିବା ଦ୍ୱାରା ଆଧ୍ୟାତ୍ମିକ ସାଧନା ହୋଇପାରେ, ଆଉ ଦରିଦ୍ର ଲୋକ ପାଇଁ ପ୍ରେମର ସହିତ କିଛି କଲେ, ତାହା କ'ଣ ମାମୁଲି ସାଧନା ହେବ କି ?

*** *** ***

ଆମ ଇଚ୍ଛା ଅନୁସାରେ ମନ ବାହାରେ ଚାରିଆଡ଼େ ବୁଲିବ, ଇଚ୍ଛା ବିରୁଦ୍ଧରେ ବାହାରକୁ ଯେପରି ନଯିବ, ଏକଥା ସିଦ୍ଧ ହେଲେ ଧ୍ୟାନ ସିଦ୍ଧ ହେବ । ଧ୍ୟାନ ପାଇଁ ଚିତ୍ତ ଯେପରି ସବୁ ସମୟରେ ନିଜ ଅଧିନରେ ରହିବ ।

*** *** ***

ଆଖି ବନ୍ଦ କଲେ ଦୁନିଆକୁ ଦେଖି ହେବ ନାହିଁ । ଆଖି ସଂପୂର୍ଣ୍ଣ ଖୋଲାଥିଲେ ବାହାରୁ ଆକ୍ରମଣ ଉପରେ ଆକ୍ରମଣ ଆସିବ । ତେଣୁ ଶାସ୍ତ୍ରକାରମାନେ କିଛି, ଖୋଲା, କିଛି ବନ୍ଦ ରଖିବା ଏପରି ଅର୍ଦ୍ଧ ନିମିଳିତ ଚକ୍ଷୁ ଦ୍ୱାରା ଧ୍ୟାନ କରିବାର କଥା କହନ୍ତି ।

***　　　***　　　***

ତୁଳସୀ ଦାସ ମହାଶୟ ନାରାୟଣଙ୍କ ବର୍ଣ୍ଣନା କରିଛନ୍ତି-

ନୌମି ନାରାୟଣଂ କରଂ କରୁଣାୟନଂ ।

ଧ୍ୟାନ ପରାୟଣଂ ଜ୍ଞାନ ମୂଳମ୍ ॥

ମଣିଷ ଜୀବନରେ ଏବଂ ସମାଜରେ ଯେଉଁଠି ଜ୍ଞାନ ଆଧାରିତ, ଧ୍ୟାନ ପ୍ରଧାନ କାରୁଣ୍ୟ ଯୋଗର ଦର୍ଶନ ହେବ, ସେଠାରେ ନାରାୟଣଙ୍କ ଦର୍ଶନ ହେଲା ବୋଲି ଜାଣିବ ।

***　　　***　　　***

ଶଂକରାଚାର୍ଯ୍ୟ କହିଛନ୍ତି-ଯୋଗସ୍ୟ ପ୍ରଥମ ଦ୍ୱାରଂ ବାଙ୍‌ନିରୋଧଃ- ବାଙ୍ ନିରୋଧ ଯୋଗର ପ୍ରଥମ ଦ୍ୱାର । ବାଣୀକୁ ସଂଯତ କରିବାରେ ସଫଳ ହୋଇ ପାରିଲେ ଯୋଗ ରାଜ୍ୟରେ ପ୍ରବେଶ ହେଲା ବୋଲି ଜାଣ । ପରେ ଅପରିଗ୍ରହ କଥା କହିଛନ୍ତି-କୌଣସିଟା ଗ୍ରହଣ ନକରିବା । ନିରାଶା ଚ ନିରୀହାଚ-ଆଶା ପୋଷଣ ନ କରିବା, ଅଭିଳାଷରୁ ମୁକ୍ତ ରହିବା । ଆଉ ପଞ୍ଚମ ବାକ୍ୟଟି ହେଲା ନିତ୍ୟଂ ଏକାନ୍ତ ଶୀଳତା-ନିତ୍ୟଂ ଅର୍ଥାତ୍ ସର୍ବଦା, ପ୍ରତିଦିନ କିଛି ସମୟ ପାଇଁ ଏକାନ୍ତଶୀଳତା ଅର୍ଥାତ ନିର୍ଜନବାସ ।

***　　　***　　　***

ଅହଂ ବ୍ରହ୍ମୋସ୍ମି, "ତତ୍ତ୍ୱମସି' ଏସବୁ ମହାବାକ୍ୟ ଜପ ପାଇଁ ନୁହେଁ । ଜପ ହେଲା "ସୋଽହମ' । ତାଛଡ଼ା ବାକି ଯେଉଁସବୁ ମହାବାକ୍ୟ ଅଛି ତାହା ହେଲା ଧ୍ୟାନ ପାଇଁ, ଚିନ୍ତାପାଇଁ । ଚାରିଟି ମହାବାକ୍ୟରେ କ୍ରମାନୁସାରେ ବିକାଶପ୍ରାପ୍ତ ଚାରିଟି ଅଦ୍ୱୈତ ଭୂମିକାର ସୂଚନା ଦିଏ ।

ପ୍ରଜ୍ଞାନଂ ବ୍ରହ୍ମ-ଅଦ୍ୱୈତ ଜ୍ଞାନ

ଅୟମାତ୍ମାବ୍ରହ୍ମ-ଈଶ୍ୱର ସାକ୍ଷାତକାର

ଅହଂ ବ୍ରହ୍ମସ୍ମି-ଆତ୍ମାନୁଭବ

ତତ୍ତ୍ୱମସି-ବିଶ୍ୱୋଦ୍ଧାର ।

***　　　***　　　***

ଶଂକରାଚାର୍ଯ୍ୟ କହନ୍ତି-ଶ୍ରୁତେଃ ଶତଗୁଣଂ ବିଦ୍ୟାଂ ମନନଂ -ଶ୍ରବଣ ଅର୍ଥ ଏଠାରେ ଆଧ୍ୟାତ୍ମିକ ଶ୍ରବଣ । ଶ୍ରବଣର ପରିମାଣ ଯଦି ଏକ ତୋଳା ହୁଏ ତାହାହେଲେ ମନନର ପରିମାଣ ଶହେ ତୋଳା ହେବ । ପୁଣି ପରେ କହିଛନ୍ତି-

ମନନାଦପି ନିନିଧ୍ୟାସଂ ଲକ୍ଷ ଗୁଣଂ-ମନନଠାରୁ ନିଜିଧ୍ୟାସ କରିବା ଲକ୍ଷଗୁଣ ଭଲ । ନିବିଧ୍ୟାସ ଅର୍ଥାତ୍ ନିରନ୍ତର ଧ୍ୟାନ କରିବା, ସବୁବେଳେ ଧାନରତ ରହିବା । ଧ୍ୟାନ ହେଲା ଏସିମିଲେସନ୍ । ଡାଇଜେସନ୍ ନୁହେଁ । ନିଜିଧାରପରେ କହିଛନ୍ତି, ଅନନ୍ତଂ ନିର୍ବିକଳ୍ପଂ, ଅର୍ଥାତ ନିର୍ବିକଳ୍ପ ସମାଧି ଅନନ୍ତଂ ଗୁଣ କରିବା । ଏହି ସମଗ୍ର ଉକ୍ତିର ଅର୍ଥ ହେଉଛି । ଶ୍ରବଣଠାରୁ ମନନର ଶତଗୁଣ ମୂଲ୍ୟ, ମନନଠାରୁ ନିଦିଧ୍ୟାସର ଲକ୍ଷଗୁଣ ଏବଂ ନିଦିଧ୍ୟାସଠାରୁ ନିର୍ବିକଳ୍ପ ସମାଧିର ଅନନ୍ତଗୁଣ ମୂଲ୍ୟ ।

ନିଦ୍ରା ଏବଂ ଜାଗୃତି-ଏହି ଦୁଇଟିର ଗୁଣମିଶି ସମାଧି ହୁଏ । ଆଉ ଏହି ଦୁଇଟିର ଦୋଷ ମିଶିଲେ ସ୍ୱପ୍ନ ହୁଏ ।

*** *** ***

ପ୍ରଶ୍ନ : ମନଠାରୁ ପୃଥକ୍ ହେବାର ଅର୍ଥ କ'ଣ ? କିପରି ଭାବରେ ଏହାକୁ ଆୟତ୍ତ କରାଯିବ ? କିପରି ଭାବରେ ସାଧନା କରାଯିବ ? ନିର୍ଜନରେ ବସି; "ମୁଁ" ନୁହେଁ, "ଆମେ'କୁ ମୁଠେଇ ଧରନ୍ତୁ-ଏସବୁ କଥାର ଅର୍ଥ ଆଉ ଟିକିଏ ପରିଷ୍କାର କରି କୁହନ୍ତୁ ।

ଉତ୍ତର :-ଚିତ୍ତଠାରୁ ପୃଥକ୍ ହେବାର ଅର୍ଥ ଚିତ୍ତର ଗତିବିଧିର ସାକ୍ଷୀ-ସ୍ୱରୂପ ହେବା । ସାକ୍ଷୀ-ସ୍ୱରୂପ ହେବାର ଚେଷ୍ଟା କରିବା ସମୟରେ ହିଁ ମନର ସଂଚରଣଶୀଳତାବନ୍ଦ ହୋଇଯାଏ । ମୁଁ ଗୋଟିଏ ଦେହ ଭିତରେ ନାହିଁ, ସବୁ ଦେହ ଭିତରେ ଅଛି । ନିର୍ଜନରେ ଧ୍ୟାନ କରିବା ବେଳେ ଏ କଥା ଚିନ୍ତା କରିବା ଦରକାର । ଆଉ ଜୀବନ ମଧ୍ୟରେ ତାହା ଥିବା ଦରକାର ।

ପ୍ରଶ୍ନ : ନିର୍ବିଚାର-ସ୍ଥିତି ଲାଭ କରିବା ପରେ ଯେଉଁ ସ୍ଥିତି ବାକି ରହେ ତାହା କି ପ୍ରକାର ସ୍ଥିତି ? ନିର୍ବିଚାର-ସ୍ଥିତି ଏବଂ ଭେକେଣ୍ଟମାଇଣ୍ଡ (ଖାଲିମନ) ଏ ଦୁଇଟି ମଧ୍ୟରେ ପାର୍ଥକ୍ୟ କ'ଣ ? କି ପ୍ରକାର ଭାବରେ ଆତ୍ମାନୁସନ୍ଧାନ କରିବାକୁ ହେବ ? ସଗୁଣ-ସାକାର ନା ନିର୍ଗୁଣ ନିରାକାର ?

ଉତ୍ତର :- ନିର୍ବିଚାର ସ୍ଥିତି ଲାଭ ହେଲେ ଜୀବନରେ ସ୍ୱାଭାବିକତା ଆସିଯାଏ । "ଭେକେଣ୍ଟ ମାଇଣ୍ଡ' ଚିନ୍ତାଶୂନ୍ୟ ମନ -ମନର ଆରାମ । ଗଭୀର ନିଦ୍ରା ସମୟ ହେଉଛି ମନର ବିରାମ । ଆମର ମନକୁ "ରାମ' କରିବାକୁ ହେବ ।

ମୂର୍ତ୍ତି ନଥାଇ ଧ୍ୟାନ କରିବାକୁ ହେବ । ମୂର୍ତ୍ତି କେବଳ ଆଲବମ୍ବନ(ଅବଲଂବନ) । ମୂର୍ତ୍ତି ମଣିଷର ମନ ଗଢ଼ା ରୂପ । ମନଗଢ଼ା ରୂପ ଆମର ଚାରିଆଡ଼େ ପୁରି ରହିଛି । ସେମାନଙ୍କର ଧ୍ୟାନ ଆଉ କ'ଣ କରାଯିବ ? ତେଣୁ ଚାଲ ସେବା କରିବା । ସେବା ପାଇଁ ମଧ୍ୟ ଯେଉଁ ଧ୍ୟାନର ଆବଶ୍ୟକତା ଅଛି ତାହା ଏହି ସେବା ମଧ୍ୟରେ ନିହିତ ।

ଧ୍ୟାନ କିଛି ବଡ଼ କଥା ନୁହେଁ, ନିରନ୍ତର ସାବଧାନ ଏବଂ ଜାଗ୍ରତ ରହିବାର ନାମ ହେଉଛି ଧ୍ୟାନ, ଯତ୍ନ-ମୈଥିଲ୍ୟ ଏବଂ ଅନନ୍ତ ସମାପ୍ତି ଆମର ସବୁବେଳେ ଚାଲୁଛି । ପ୍ରଯତ୍ନ ଶୈଥିଲ୍ୟ ଥିଲେ ନିଦ୍ରା ଉପସ୍ଥିତ ହେବ ଏବଂ ନିଦ୍ରା ସମୟରେ ଅନନ୍ତ ସହିତ ଏକ ରୂପତା ଆସିବ । ଯେତେବେଳେ ଚାହିଁବ ସେତେବେଳେ ନିଦ ଆସିବା ଦରକାର ଶୋଇ ପଡ଼ିଲେ ସହଜରେ ନିଦ ଆସିବ । କାହାରି କାହାରି ବସିଥିବା ଅବସ୍ଥାରେ ମଧ୍ୟ ନିଦ ଆସେ । ଆଉ ମୋର ଚାଲୁଥିବା ବେଳେ ନିଦ ଆସିଯାଏ । ଦେହର ଅବସ୍ଥା ଅନୁଯାୟୀ ଯାହା କିଛି ଯାହା ସହଜ ସେହି ଅନୁସାରେ ଅଭ୍ୟାସ ପଡ଼ିଯାଏ । ତାହାକୁ ହିଁ ଧ୍ୟାନର ଅନୁକୂଳ ଭାବିବା ଦରକାର ।

ମୋର ପାଞ୍ଚମିନିଟ ସମୟ ଲାଗେ, ଏହା କେବଳ ନାଟକ ବୋଲି କୁହାଯାଏ । ମନର ଗତି ମୁଁ ଦେଖିବାକୁ ଆରମ୍ଭ କରେ । ତାଫଳରେ ମନ ନିଜ ସ୍ଥାନରୁ ହଲି ପାରେ ନାହିଁ । ସେତେବେଳେ ପାଞ୍ଚ ମିନିଟ ମୁଁ କଣ କରେ, ସେହି ସମୟରେ ମୁଁ ନିଜର ସମଗ୍ର ପରିବାର (ଆଶ୍ରମ) ସହିତ ଏକ ରସ ହୋଇ ଯିବାର ଚେଷ୍ଟା କରିଥାଏ ଏବଂ ତାହାକୁ ଈଶ୍ୱରଙ୍କଠାରେ ସମର୍ପଣ କରି ମୁକ୍ତ ହୋଇଯାଏ । ଆନନ୍ଦର ଉପଲବ୍ଧି ହୁଏ, ଯେତେବେଳେ ଏହାର ଆଭାସ ପାଏ ସେତେବେଳେ ସେହି ଆନନ୍ଦକୁ ମଧ୍ୟ ଫୋପାଡ଼ି ଦିଏ । ମୋର କ'ଣ ଦରକାର ମୁଁ ତାକୁ କୁହେ- ଯଦି ମୋତେ ଦେଖିବାରେ ତୁମର ଆନନ୍ଦ ତେବେ ତୁମେ ତାହା ଦେଖୁଥାଅ ।

## ୮. ଧ୍ୟାନର ପୂର୍ବ ପରଂପରା

କ). ପତଞ୍ଜଳି ପ୍ରାଞ୍ଜଳି

ଖ). ଗୀତା

ଗ). ବେଦୋପନିଷଦ୍

୧) ବେଦ ଧ୍ୟାନ ପ୍ରଧାନ

୨) ସତ୍ୟ ଧର୍ମାୟ ଦୃଷ୍ଟାୟେ

୩) ତତ୍ ସବିତୁର୍ ବରେଣ୍ୟମ୍

୪) ଅନ୍ତଃ ଶରୀରେ ଜ୍ୟୋତିର୍ମୟଃ

୫) ତତ୍ ସୂର୍ଯ୍ୟସ୍ୟ ଦେବତ୍ୱମ୍

୬) ବରୁହ ରଶ୍ମିନ୍ ସମୂହଃ

୭) ଓଁ କାରେ ଅର୍ଥମାତ୍ରା

୮) ଧ୍ୟାନେ ନାତ୍ମନି ପଶ୍ୟନ୍ତି ।

ଘ). ଯୋଗୀମାନଙ୍କ ପକ୍ଷରେ ଦୁର୍ଲଭ, ସନ୍ଥଗଣ ଦେଖିଛନ୍ତି

କ). ପତଞ୍ଜଳି ପ୍ରାଞ୍ଜଳି :

* ପତଞ୍ଜଳିର ଯୋଗଶାସ୍ତ୍ର ଜଗତ ପାଇଁ ଭାରତର ଅନୁଭୂତିର ପ୍ରକାଶ ।
* ଯୋଗସୂତ୍ର, ମାନସ ଓ ଅତିମାନସ ଉଭୟ ପ୍ରକାର ଦୃଷ୍ଟିଭଂଗୀର ସଂଗ୍ରାହକ ।
* ବୃତ୍ତିର ଅନୁକୂଳ ଏବଂ ବୃତ୍ତିର ଉର୍ଦ୍ଧ୍ୱରେ ରହି କିପରି ଭାବରେ ଚାଲିବାକୁ ହୁଏ ତାର ବିବରଣୀ ।
* ପତଞ୍ଜଳି ପ୍ରଦର୍ଶିତ ଯୋଗ ଦର୍ଶନର ସ୍ୱରୂପ ।
* ପାତଞ୍ଜଳ ଯୋଗର ଉଦ୍ଦେଶ୍ୟ-ଚିତ୍ତଶୋଧନ ଦ୍ୱାରା ଆତ୍ମ-ପ୍ରାପ୍ତି ।

ସଂସ୍କୃତ ସାହିତ୍ୟରେ ଚାରିଖଣ୍ଡ ଗ୍ରନ୍ଥ ଉପରେ ସବୁଠାରୁ ଅଧିକ ବ୍ୟାଖ୍ୟା ଏବଂ ଭାଷଣ ରଚିତ ହୋଇଛି । ସେଗୁଡ଼ିକ ମଧ୍ୟରୁ ସବୁଠାରୁ ବେଶୀ "ଗୀତା' ଉପରେ ଆଲୋଚନା ହୋଇଛି । ତାପରେ "ବେଦାନ୍ତ" ସୂତ୍ର । ଏହାପରେ ଉପନିଷଦ । ଏବଂ ତାପରେ ଯୋଗସୂତ୍ର ନେଇ ଆଲୋଚନା ହୋଇଛି । ତାଛଡ଼ା ମନୁ ସ୍ମୃତି ଉପରେ ହୋଇଥିବା ଭାଷ୍ୟ ଉଲ୍ଲେଖଯୋଗ୍ୟ । ଅର୍ଥାତ୍ ଗୀତା, ବେଦାନ୍ତ ସୂତ୍ର ଓ ଉପନିଷଦକୁ ଛାଡ଼ିଦେଲେ ଯୋଗସୂତ୍ର ଉପରେ ସବୁଠାରୁ ବେଶୀ ପରିମାଣରେ ଭାଷ୍ୟ ଲେଖା ହୋଇଛି । ଭାରତର ବିଭିନ୍ନ ଭାଷାରେ ଏବଂ ଭାରତର ବାହାରେ ବିଭିନ୍ନ ଆଧୁନିକ ଭାଷାରେ ଏହି ଚାରିଖଣ୍ଡି ପୁସ୍ତକ ଉପରେ ଅନେକ ଭାଷ୍ୟ ଲେଖା ହୋଇଛି ।

ପତଞ୍ଜଳିଙ୍କର ଯୋଗସୂତ୍ର ଉପରେ ପାଞ୍ଚଟି ଭାଷ୍ୟ ଅଛି । ସେଗୁଡ଼ିକ ମଧ୍ୟରୁ ବ୍ୟାସଦେବଙ୍କ ଭାଷ୍ୟକୁ ହିଁ ପ୍ରମାଣ ସ୍ୱରୂପ ଗଣ୍ୟ କରାଯାଏ । ବ୍ୟାସ ଦେବଙ୍କ ଭାଷ୍ୟ ଉପରେ ମଧ୍ୟ ଅନେକ ଟୀକା ରହିଛି । ସର୍ବମୋଟ ୧୯୫ଟି ସୂତ୍ର ଅଛି । ସେଥିରେ ବିଶଦ୍ ଭାବରେ ସବୁ ବୁଝା ଯାଇଛି । ଯମ, ନିୟମ, ଧାରଣା ଧ୍ୟାନ, ସମାଧି ଇତ୍ୟାଦି ଅଷ୍ଟାଂଗ ସମାଧି ଖୁବ୍ ଛୋଟ ଅଂଶ । ଯୋଗସୂତ୍ରର ପ୍ରଧାନ ବିଷୟ ହେଲା ପ୍ରଜ୍ଞା । ପ୍ରଜ୍ଞା କିପରି ଭାବରେ ଲାଭ କରାଯାଇପାରିବ ସେହି ବିଷୟରେ ଚିନ୍ତା କରୁ କରୁ ଏକପ୍ରକାର ଉପାୟ ହିସାବରେ ଅଷ୍ଟାଂଗ ସମାଧି ନେଇ ଆଲୋଚନା କରାହୋଇଛି । ଏହାଛଡ଼ା ଆହୁରି ଅନ୍ୟ ପ୍ରକାର ଉପାୟ ପ୍ରକ୍ରିୟା ସମ୍ପର୍କରେ ମଧ୍ୟ ଆଲୋଚନା କରାଯାଇଛି ।

(ସାଧାରଣତଃ) ସୂତ୍ର ଖୁବ୍ ଛୋଟ ହୋଇଥାଏ । ଦୁଇ-ଦୁଇ, ତିନି-ତିନି, ଚାର-ଚାର ଶବ୍ଦ ନେଇ ଗଠିତ ହୋଇଥାଏ । ସେତେବେଳେ କାଗଜର ବ୍ୟବହାର ନଥିଲା । ଗୁରୁ ବୁଝାଇବାକୁ ଆରମ୍ଭ କରୁଥିଲେ, ଖୁବ୍ ଲମ୍ବା ବ୍ୟାଖ୍ୟା ହେଉଥିଲା । ସେ ସବୁଗୁଡ଼ିକ କିପରି ମନେ ରହିବ ? ସେଥିପାଇଁ ସଂପୂର୍ଣ୍ଣ ବିଷୟଟି ବୁଝାଇ ନେବାପରେ ବିଚାର-ବିଶ୍ଳେଷଣର ସମଗ୍ର ସିଦ୍ଧାନ୍ତକୁ ସଂକ୍ଷେପରେ ସୂତ୍ର ରୂପରେ ରଖି ଦିଆ ହେଉଥିଲା । ବିଷୟଟି ଯେପରି ସ୍ମରଣରେ ରଖି ଦେଇ ହେବ ସେଥିପାଇଁ ଶିଷ୍ୟ ସୂତ୍ରଟିକୁ କଣ୍ଠସ୍ଥ କରୁଥିଲା । ଯେପରି ଗୋଟିଏ ସୂତ୍ର ହେଉଛି, "ଦେଶବନ୍ଧସ୍ୟ

ଚିତ୍ତସ୍ୟ ଧାରଣା’ । ମନକୁ ଗୋଟିଏ ଦେଶରେ ବାଂଧି ରଖିବା-ଯା’ର ନାମ ଧାରଣା । ସେତେବେଳେ ତା ଉପରେ ନାନା ପ୍ରକାର ବ୍ୟାଖ୍ୟା ଚାଲୁଥିଲା । ଏହି କାରଣରୁ ପ୍ରାଚୀନ କାଳରେ ସଂପ୍ରଦାୟର ଗୋଟିଏ ଗୁରୁତ୍ୱଥିଲା । ବର୍ତ୍ତମାନ ସଂପ୍ରଦାୟ ଶବ୍ଦର ପତନ ହୋଇଛି । କିନ୍ତୁ ପ୍ରାଚୀନ କାଳରେ ସଂପ୍ରଦାୟ ଶବ୍ଦ ଖୁବ୍ ପବିତ୍ର ଥିଲା । ଗୁରୁଶିଷ୍ୟଙ୍କର ପରମ୍ପରା ଭିତରେ ଯେଉଁ ଜ୍ଞାନ ପ୍ରବାହ ଚାଲୁଥିଲା ତାହା ଯେପରି ସ୍ଥାୟୀ ହୋଇ ରହିବ, ସେଥିପାଇଁ ସଂପ୍ରଦାୟ ଗୁଡ଼ିକ ଗଢ଼ିଉଠୁଥିଲା । ସୂତ୍ର ରଚନା କରୁଥିବା ଗୁରୁମାନଙ୍କ ମୁଖରୁ ଯେଉଁମାନେ ସୂତ୍ର ଶୁଣୁଥିଲେ, ସେମାନେ ପରଂପରାର ଅଧିକାରୀ ବୋଲି ମାନ୍ୟତା ଲାଭ କରୁଥିଲେ । ଶଂକରାଚାର୍ଯ୍ୟ ଲେଖିଛନ୍ତି-ବିଭିନ୍ନ ବିଷୟରେ ବହୁ ପାଣ୍ଡିତ୍ୟ ଥିବା ସତ୍ତ୍ୱେ ଯଦି କୌଣସି ବ୍ୟକ୍ତି ସଂପ୍ରଦାୟ ଭୁକ୍ତ ନ ହୋଇଥିବେ ତେବେ ତାଙ୍କୁ ମୂର୍ଖ ବୋଲି ଧରି ନେଇ ତାକୁ ଉପେକ୍ଷା କରାଯାଉଥିଲା, ତାଙ୍କ କଥା କେହି ଶୁଣୁନଥିଲେ । ସୂତ୍ରର ଅର୍ଥ ଗୁରୁଶିଷ୍ୟର ପଂରପରାରେ ଚଳି ଆସୁଛି । ସୂତ୍ର ଶୁଣିବାପରେ ତାର ପରଂପରା ଯଦି ବୋଧଗମ୍ୟ ନହେଲା, ତେବେ ତାର ଅର୍ଥ କିପରି ପ୍ରକାଶିତ ହେବ ? ଚିତ୍ତର ଅର୍ଥ କ’ଣ ? ମନର ତାତ୍ପର୍ଯ୍ୟ କ’ଣ ? ଚିତ୍ତ୍ୱୃତ୍ତି ନିରୋଧର ଅର୍ଥ କ’ଣ ? ଚିତ୍ତର ନିରୋଧ ବା ଚିତ୍ତନିରୋଧଃ । ଏହାକୁ ଷଷ୍ଠୀ ତତ୍ପୁରୁଷ ସମାସ କହିବା ନା ସଂଗ୍ରାମୀ ତତ୍ପୁରୁଷ କୁହାଯିବ ? ମୋର ଯାହା ଭଲ ମନେ ହେବ ତାହା ହିଁ ଲେଖେ । ତାହା ହେଲେ ନିଜେ ଗୋଟିଏ ନୂଆ ବହି କାହିଁକି ଲେଖିବି ନାହିଁ ? ସେଥିପାଇଁ ପ୍ରାଚୀନ ସୂତ୍ର ସହିତ ପ୍ରାଚୀନ ଭାଷ୍ୟକାରମାନଙ୍କ ପ୍ରମାଣ ଉଲ୍ଲେଖ କରା ହେଉଥିଲା । କାରଣ ହେଉଛି, ଯିଏ ସୂତ୍ର ରଚନା କରୁଥିଲେ ତାଙ୍କରି ମୁହଁରୁ ଶିଷ୍ୟମାନେ ସୂତ୍ରସବୁ ଶୁଣି ନେଉଥିଲେ ।

ହିରଣ୍ୟଗର୍ଭ ଯୋଗ ଶାସ୍ତ୍ରର ମୂଳ ପ୍ରଣେତା ଥିଲେ । ପାତଞ୍ଜଳି ଯୋଗସୂତ୍ର ଖୁବ୍ ସଂଭବ, ଭଗବାନ ବୁଦ୍ଧଙ୍କ ପରେ ଲେଖା ହୋଇଛି । ଏହାକୁ ହିଁ ଯୋଗ ସଂପର୍କୀୟ ସର୍ବଶ୍ରେଷ୍ଠ ଗ୍ରନ୍ଥ ବୋଲି ମାନ୍ୟ କରା ହୋଇଛି । ମାନସିକ ଓ ପ୍ରାଣଶକ୍ତି ସହିତ ଯୋଗର ସଂବନ୍ଧ ଯୋଗ କରାହୋଇଛି । ଉଭୟଟି ଗୋଟିଏ ଅପର ସହିତ ସଂବନ୍ଧଯୁକ୍ତ । ଆତ୍ମାର ଅନନ୍ତ ଶକ୍ତିର ଜ୍ଞାନ ଲାଭ କରିବାକୁ ହେଲେ ଏହି ଦୁଇଟିକୁ ନିଜ ଅଧିନରେ ରଖିବା ଦରକାର । ମନ ଏବଂ ପ୍ରାଣର ଶୁଦ୍ଧି ଏବଂ ନିଗ୍ରହ ବ୍ୟତୀତ, ଆତ୍ମାର ଅବ୍ୟକ୍ତ ଓ ମହାନ୍‌ଶକ୍ତି ଲାଭ କରି ହୁଏ ନାହିଁ । ଅହିଂସା, ସତ୍ୟ ଇତ୍ୟାଦି ଯମ ନିୟମ କ୍ରିୟା ନିର୍ଦ୍ଦୋଷ ଭାବରେ ପାଳନ କରିବା ଦ୍ୱାରା ମନ ଶୁଦ୍ଧ ହୁଏ (ମନ ପବିତ୍ରତା ଲାଭ କରେ) ଏବଂ ଆସନ ପ୍ରାଣାୟାମ ଆହାର ଶୁଦ୍ଧି ଏସବୁ ନିୟମ ପାଳନ ମାଧ୍ୟମରେ ପ୍ରାଣ ଶୁଦ୍ଧତା ଲାଭ କରେ । ଧ୍ୟାନ ଦ୍ୱାରା ମନର ଏବଂ ପ୍ରାଣାୟାମ ଦ୍ୱାରା ପ୍ରାଣ କ୍ରିୟାର ନିୟମାନ ହୁଏ । ଏହା ହେଉଛି ଯୋଗଶାସ୍ତ୍ର ଏବଂ ଅତି ପ୍ରାଚୀନ କାଳରୁ ଭାରତବର୍ଷରେ ଏହି ଜ୍ଞାନର ପ୍ରଚଳନ ଥିଲା ।

ପାତଞ୍ଜଳିଙ୍କ ସମୟରେ କୁହାଯାଏ ଯେ ବୁଦ୍ଧଙ୍କ ପାଖ ଆଖରେ ତାଙ୍କର ପ୍ରଭାବ ଥିଲା, କିନ୍ତୁ ଯୋଗଦର୍ଶନ ଅତି ପ୍ରାଚୀନ । ଦର୍ଶନ ଶାସ୍ତ୍ର ପରିପୂର୍ଣ୍ଣ ଭାବରେ ବିକାଶ ଲାଭ କରିବା ପରେ ଯାଇ ସେଥିରୁ ସୂତ୍ର ଗ୍ରନ୍ଥର ରଚନା କରିବା ଆରମ୍ଭ ହୁଏ । ପତଞ୍ଜଳିଙ୍କ ପୂର୍ବରୁ ଯୋଗଦର୍ଶନ ପରିପୂର୍ଣ୍ଣ ଭାବରେ ବିକାଶ ଲାଭ କରିଥିଲା । ପତଞ୍ଜଳି ତାହାକୁ ସୂତ୍ରରୂପେ ସଂକଳନ କରିଛନ୍ତି ।

ସାରା ଦୁନିଆକୁ ଦେବା ପାଇଁ ଭାରତବର୍ଷରେ କି କି ସଂପଦ ଅଛି ତାହା ଉଲ୍ଲେଖ କରିବାକୁ ଗଲେ ପତଞ୍ଜଳିଙ୍କ ଯୋଗ ଶାସ୍ତ୍ର ତାହା ମଧ୍ୟରୁ ଅନ୍ୟତମ । ନିୟମିତ ରୂପେ ଧ୍ୟାନ କରିବା ପାଇଁ ଏହି ଶାସ୍ତ୍ର ରଚିତ ହୋଇଛି । ଆଜିକାଲି ମନୋବିଜ୍ଞାନ ଉପରେ ନାନା କଥା ଆଲୋଚନା ହୁଏ । ଶିକ୍ଷକ, କିମ୍ବା ଦଳର ନେତା ଏମାନଙ୍କ ପାଇଁ ଏହାର ଉପଯୋଗୀତା ରହିଥିବା କଥା ମାନି ନିଆଯାଏ କିନ୍ତୁ ମନୋବିଜ୍ଞାନରେ ଆମେ ମନକୁ ଟପି ତା ଉପରକୁ ଯାଇ ପାରୁ ନାହିଁ । ମୁଁ ଗଭୀର ଭାବରେ ମନୋବିଜ୍ଞାନର ଅଧ୍ୟୟନ କରି ନାହିଁ । କିନ୍ତୁ ଯେତିକି ଅଧ୍ୟୟନ କରିଛି ସେଥିରୁ ଏକଥା ମନେ ହୋଇଛି ଯେ, ଏପର୍ଯ୍ୟନ୍ତ ନିଜକୁ ନିଜ ମନଠାରୁ ଅଲଗା କରି ଦେବାର ଆବଶ୍ୟକତା ଏହି ବ୍ୟକ୍ତିମାନଙ୍କର ବୋଧଗମ୍ୟ ହୋଇନାହିଁ । ଯିଏ ନିଜର ମାନସିକ ସ୍ତର ମଧ୍ୟରେ ରହି ଚିନ୍ତା କରନ୍ତି ସେ ଅନ୍ୟର ମନ କଥା ଜାଣି ପାରନ୍ତି ନାହିଁ । ସେମାନଙ୍କର ମାନସ ଶାସ୍ତ୍ର ମନର ଚଂଚଳତା (ଭଲ ଲାଗିବା ଅବା ମନ୍ଦ ଲାଗିବା) ଜାଣିବା ଶାସ୍ତ୍ର । ତାହା ମନକୁ ଜୟ କରିବାର ଶାସ୍ତ୍ର ମୋଟେ ନୁହେଁ । ପତଞ୍ଜଳିଙ୍କ ଯୋଗଶାସ୍ତ୍ର ହେଲା ମନକୁ ଜୟ କରିବାର ଶାସ୍ତ୍ର । ଆମେ ଯେପରି ଭାବରେ ଗୋଟିଏ ଘଡ଼ିକୁ ଅନ୍ୟ ଘଡ଼ିଠାରୁ ପୃଥକ୍ ଦେଖୁ ସେହିପରି ମନଠାରୁ ଅଲଗା ହେବା କଥା ସେଥିରେ ଲେଖା ହୋଇନାହିଁ । ମନୋ-ବିଜ୍ଞାନ ମନର ବୃତ୍ତି ସଂପର୍କୀୟ ବିଜ୍ଞାନ । ତାର ଚିତ୍ର ଆଖି ଆଗରେ ଅଙ୍କାଯାଇପାରେ । ଆମେ ମନଠାରୁ କିପରି ଭାବରେ ଅଲଗା ହୋଇ ମନର ଉପର ସ୍ତରକୁ ଉଠି ପାରିବା, ଆଧୁନିକ ମନୋବିଜ୍ଞାନରେ ତାର ନିର୍ଦ୍ଦେଶ ଦିଆଯିବାର ବ୍ୟବସ୍ଥା ରହିବା ଉଚିତ । କିନ୍ତୁ ସେହି ଶାସ୍ତ୍ରରେ ତାର ଉଲ୍ଲେଖ ନାହିଁ । କିନ୍ତୁ ପତଞ୍ଜଳିଙ୍କ ଯୋଗ ଶାସ୍ତ୍ରରେ ତାହା ଦେଖିବାକୁ ମିଳେ । ସେଥିପାଇଁ ଭାରତବର୍ଷ ଦୁନିଆକୁ ଯେଉଁସବୁ ଉପଲବ୍ଧ ସତ୍ୟ ଉପହାର ଦେଇଛି, ଏହି ଶାସ୍ତ୍ର ସେମାନଙ୍କ ମଧ୍ୟରେ ଅନ୍ୟତମ ବିଶିଷ୍ଟ ଅବଦାନ ।

***                    ***                    ***

ଶିକ୍ଷାଶାସ୍ତ୍ରରେ ଯେଉଁସବୁ ଗ୍ରନ୍ଥ ସଂସ୍କୃତ ଭାଷାରେ ଦେଖିବାକୁ ମିଳେ ତା ମଧ୍ୟରୁ ପତଞ୍ଜଳୀ ଯୋଗଶାସ୍ତ୍ର ସର୍ବଶ୍ରେଷ୍ଠ । ସେଥିରେ ଶିକ୍ଷା ବିଷୟରେ ମାନସ ଓ ଅତିମାନସ ଉଭୟ ପ୍ରକାର ଦୃଷ୍ଟିରୁ ହିଁ ବିଚାର କରାହୋଇଛି । ଶିକ୍ଷା ବିଷୟରେ ମନୋବିଜ୍ଞାନ ଦୃଷ୍ଟିକୋଣରୁ ଚିନ୍ତା କରିବା ଏକାନ୍ତ ପ୍ରୟୋଜନ । ଏହାକୁ ବାଦଦେଲେ ଶିକ୍ଷା-ବିଜ୍ଞାନ ଆରମ୍ଭ କରାଯାଇପାରେ ନାହିଁ । ଆରମ୍ଭରୁ ଯଦିଓ ମନୋବିଜ୍ଞାନର ପ୍ରୟୋଜନୀୟତା ରହିଛି, କିନ୍ତୁ ତାର ଚରମ ଲକ୍ଷ୍ୟ କ'ଣ, କେଉଁ ପର୍ଯ୍ୟନ୍ତ ଏହାର ଗନ୍ତବ୍ୟ ସ୍ଥଳ, ଏହି ବିଷୟ ଉପଲବ୍ଧି କରିବା ପାଇଁ ଅତିମାନସ ସ୍ତରର କାର୍ଯ୍ୟ ସମ୍ପର୍କରେ ମଧ୍ୟ ଜ୍ଞାନ ରହିବା ଏକାନ୍ତ ଆବଶ୍ୟକ । ପତଞ୍ଜଳୀ ତାଙ୍କର ଯୋଗ ଶାସ୍ତ୍ରରେ ବୃତ୍ତି ଗୁଡ଼ିକର ପରୀକ୍ଷାକରି ବୃତ୍ତି ଗୁଡ଼ିକର ଉପଯୁକ୍ତ ଆଚରଣ କିପରି କରିବାକୁ ହେବ, ଏବଂ ବୃତ୍ତିଗୁଡ଼ିକର ଉର୍ଦ୍ଧ୍ୱକୁ କିପରି ଭାବରେ ଉଠିବାକୁ ହେବ ଏହି ଦୁଇଟି ବିଷୟରେ ଆଲୋଚନା କରିଛନ୍ତି । ଆମେ ଯଦି ବୃତ୍ତିଗୁଡ଼ିକର ଅନୁକୂଳ କାର୍ଯ୍ୟ ନକରୁ ତାହାହେଲେ ସଂସାରରେ କୌଣସି କାର୍ଯ୍ୟ କରିବାକୁ ସକ୍ଷମ ହେବୁ ନାହିଁ । ଏଥିପାଇଁ ବୃତ୍ତିଗୁଡ଼ିକର ଅନୁକୂଳ ଚିନ୍ତା କରିବା ପ୍ରୟୋଜନ, ପୁଣି ବୃତ୍ତିଗୁଡ଼ିକର ଉପରକୁ ଉଠି ଯଦି ଚିନ୍ତା ନକରିବା ତେବେ ନିରପେକ୍ଷ ଦର୍ଶନ ହୁଏ ନାହିଁ ଏବଂ ଏହି ବୃତ୍ତି ଗୁଡ଼ିକର ଚାରିପଟେ ଯେଉଁ କ୍ଷୁଦ୍ରକ୍ଷୁଦ୍ର ଭାବନା ଗୁଡ଼ିକ ରହିଛି ତାରି ଭିତରେ ଆମେ ଆବଦ୍ଧ ହୋଇ ରହିବା ଏବଂ

ତାହାଦ୍ୱାରା ଦୂରଦୃଷ୍ଟିର ଅଭାବ ଘଟିଥାଏ । ଏଥିପାଇଁ ଅତିମାନସ ଦୃଷ୍ଟିର ମଧ୍ୟ ଆବଶ୍ୟକତା ରହିଛି । ଉଭୟ ପ୍ରକାର ଦୃଷ୍ଟି ସମ୍ପର୍କରେ ଚିନ୍ତାକରି ଖୁବ୍ ସଂକ୍ଷେପରେ ପତଞ୍ଜଳୀ ଯୋଗଶାସ୍ତ୍ରରେ ତାଙ୍କର ବକ୍ତବ୍ୟ ରଖିଛନ୍ତି । ଏହା ଉପରେ ଅନେକ ପ୍ରକାର ଭାଷ୍ୟ ଲେଖା ହୋଇଛି ଏବଂ ଯୋଗଶାସ୍ତ୍ର ଆଜି ପର୍ଯ୍ୟନ୍ତ ବିକଶିତ ହୋଇଚାଲିଛି । ଭାରତବର୍ଷରେ ଆଜି ପର୍ଯ୍ୟନ୍ତ ତାର ବିକାଶ ଦେବାକୁ ଲାଗିଛି ।

ଏକଥା ସତ୍ୟ ଯେ ପତଞ୍ଜଳୀ ଯୋଗ ସାଧନା ପାଇଁ କେବଳ ପୁସ୍ତକ ରଚନା କରିଥିଲେ । ସେଥିରେ ଯୋଗଶାସ୍ତ୍ର ଦୃଷ୍ଟିରୁ ଧ୍ୟାନ ସମ୍ପର୍କରେ ବ୍ୟାଖ୍ୟା କରିଛନ୍ତି ଏବଂ ଧ୍ୟାନର ପରିଣାମ ସ୍ୱରୂପ ସିଦ୍ଧି ଫଳ ସମ୍ପର୍କରେ କହିଛନ୍ତି ଯେ ଏହିସବୁ ସିଦ୍ଧିଲାଭର ବ୍ୟବହାର ଦ୍ୱାରା ସମାଧି କ୍ଷୟ ପ୍ରାପ୍ତ ହୁଏ-ସମାଧୌ ଅନ୍ତରାୟାଃ । ଏଥିପାଇଁ ଯଦି ସିଦ୍ଧି ଲାଭ ହେଲା, ତେବେ ସେଗୁଡ଼ିକୁ କାର୍ଯ୍ୟରେ ଲଗାଇବା ଉଚିତ ନୁହେଁ ।

କିନ୍ତୁ ସେ ଯେଉଁ ଯୌଗିକ ପ୍ରକ୍ରିୟା ସମ୍ପର୍କରେ ବର୍ଣ୍ଣନା କରିଛନ୍ତି, ସେଥିରେ ଅନେକ ପ୍ରକାର ଦର୍ଶନର ସମାବେଶ ହୋଇଛି । ଏହିସବୁ ବିଷୟ ସଂପୂର୍ଣ୍ଣ ଭାବରେ ଦର୍ଶନର ମର୍ଯ୍ୟାଦା ଲାଭ କରିଛି । ଏହି ସବୁ ବିଷୟ ଧ୍ୟାନ, ଅଷ୍ଟାଙ୍ଗ ଯୋଗ ସମାଧି ଏବଂ ପ୍ରାଣାୟାମ ଦ୍ୱାରା ଯେତେ ଦୂର ସାଧନ କରାଯିବା ସଂଭବ ସେତେପର୍ଯ୍ୟନ୍ତ ବର୍ଣ୍ଣନା କରାଯାଇଛି । ଯଦିଓ ଗୋଟିଏ ସ୍ଥାନରେ ନିଃସନ୍ଦେହରେ ଉଲ୍ଲେଖ କରିଛନ୍ତି ସ ଗୁରୁଃ ପୂର୍ବେଷାମ୍... । ଭଗବାନ୍ ଆମ ସମସ୍ତଙ୍କର ଗୁରୁ ଏବଂ ତାଙ୍କୁ ଧ୍ୟାନ କରିବା ଆମ ପକ୍ଷରେ ସଂଭବ । ତସ୍ୟ ବାଚକଃ ପ୍ରଣବଃ, ତଜ୍ଜପଃ ତଦର୍ଥ ଭାବନମ୍ । ଧ୍ୟାନ ସହିତ ଜପର ଭାବନା ଯୋଡି ଦିଆହୋଇଛ. କିନ୍ତୁ ପତଞ୍ଜଳି ସଗୁଣ ଦର୍ଶନ ବିଷୟ ସଂପର୍କରେ ବିଶେଷ ଭାବରେ ଚିନ୍ତନ ଓ ବିଶ୍ଳେଷଣ ବା ମିମାଂସା କରି ନାହାନ୍ତି ।

ଯୋଗଶକ୍ତି ଦୁଇ ପ୍ରକାର ଭାବରେ ଲାଭ କରାଯାଏ । ଗୋଟିଏ ହେଲା ଯମ-ନିୟମ ପାଳନ ଦ୍ୱାରା ଏବଂ ଅନ୍ୟଟି କେବଳ ମାତ୍ର ମାନସିକ ପ୍ରକ୍ରିୟା ଦ୍ୱାରା । ଦ୍ୱିତୀୟଟିର ଅପବ୍ୟବହାର ହେବାର ସଂଭାବନା ଅଛି । ଏଥିପାଇଁ ପତଞ୍ଜଳି ତାଙ୍କର ଯୋଗ୍ସ ସୂତ୍ରରେ ଯମ-ନିୟମକୁ ମୁଖ୍ୟସ୍ଥାନ ଦେଇଛନ୍ତି । ହଠ୍ଯୋଗୀମାନେ କେବଳମାତ୍ର ଶରୀର ଶୋଧନ ବା ସିଦ୍ଧି ପ୍ରାପ୍ତି ପାଇଁ ଯୋଗକୁ ବ୍ୟବହାର କରନ୍ତି । ସେପରି ସ୍ଥାନରେ ପତଞ୍ଜଳିଙ୍କର ଉଦେଶ୍ୟ ହେଲା ଚିତ୍ତ ଶୋଧନ ଦ୍ୱାରା ଆତ୍ମାକୁ ଲାଭ କରିବା ।

ସ ତୁ ଦୀର୍ଘକାଳ ନୈରନ୍ତର୍ଯ୍ୟ ସତ୍କାରା ସେବିତି ଦୃଢ଼ଭୂମିଃ (ଯୋଗସୂତ୍ର ୧.୧୪)

ସମାଧି ପାଇଁ ଦୃଢ଼ ଭୂମି କେତେବେଳେ ତିଆରି ହୁଏ, ସମାଧି, ବୈରାଗ୍ୟ, ଅଭ୍ୟାସ କେତେବେଳେ ଦୃଢ଼ତା ପ୍ରାପ୍ତ ହୁଏ ? ଯେତେବେଳେ ଦୀର୍ଘଦିନ ଧରି ଏହି ସବୁ ପ୍ରକ୍ରିୟା ଅଭ୍ୟାସ କରାଯାଏ । "ନୈରନ୍ତର୍ଯ୍ୟ" ଅର୍ଥାତ୍ ଯେତେବେଳେ ନିରନ୍ତର ତାହା ଅନୁଶୀଳନ କରାଯାଏ । ଯେଉଁଠାରେ ଶେଷ ନାହିଁ, ଅନ୍ତର ନାହିଁ ତାହା ହିଁ ନିରନ୍ତର । ମଝିରେ ଗୋଟିଏ ମୁହୂର୍ତ୍ତ ଯେପରି ବୃଥା ନଯିବ । ଯାହା କରାଯିବ ଉତ୍ସାହ ସହକାରେ କରାଯିବ । ଯୋଗୀ ଯେତେବେଳେ ଏହି ପଦ୍ଧତିରେ ଅଭ୍ୟାସ କରେ, ସେତେବେଳେ ତାର ସମାଧି ଦୃଢ଼ ହୁଏ ।

ସ ପୂର୍ବେଷାମପି ଗୁରୁଃ (ଯୋ : ସୂତ୍ର, ୧.୨୬)

ପତଞ୍ଜଳି ପରମାତ୍ମାଂକୁ ଗୁରୁଭାବରେ ଦେଖିଛନ୍ତି । ଏହିପରି ପରମାତ୍ମାଙ୍କୁ ପିତା ବୋଲି ମଧ୍ୟ କୁହାଯାଇପାରେ । ପରମେଶ୍ୱରଙ୍କ ସହିତ ପିତାର ସମ୍ବନ୍ଧ ସ୍ଥାପନ କରି ଦେଖିବାର ଅର୍ଥ ହେଉଛି ତାଙ୍କ ନିକଟରେ ଆତ୍ମରକ୍ଷା ପାଇଁ ପ୍ରାର୍ଥନା କରିବା । ଯେପରି ଗୁରୁ ରୂପରେ ଦେଖିବାର ଅର୍ଥ ହେଉଛି ତାଙ୍କଠାରୁ ଶିକ୍ଷାଲାଭ କରିବା, ଜ୍ଞାନ ପ୍ରାପ୍ତ ହେବା ।

*** *** ***

ନିର୍ବିଚାର ବୈଶାରଦ୍ୟେଽଧ୍ୟାତ୍ମ ପ୍ରସାଦଃ (ଯୋଗସୂତ୍ର ୧.୪୭) ମନୁଷ୍ୟର ଯେପରି ବିଚାରର ଉନ୍ନତି ଘଟେ, ସେତେବେଳେ ସେ ବିଶାରଦ ହୋଇଯାଏ, ଏବଂ ଆଧ୍ୟାତ୍ମିକ ପ୍ରସାଦ ଲାଭ କରେ । ତାହା ଏପରି ଏକ ବସ୍ତୁ ଯାହା ସମାଧି ଅବସ୍ଥାରେ ଲାଭ କରାଯାଏ । ନିର୍ବିଚାର ଭୂମିକାରେ ଗୋଟିଏ ଧରଣର ଶକ୍ତି ମିଳିଥାଏ, ଆଉ ବିଚାରମୟ ସ୍ତରରେ ଅନ୍ୟ ଏକ ପ୍ରକାର ଶକ୍ତି । ସର୍ବ ସାଧାରଣଙ୍କ କାର୍ଯ୍ୟ କରିବା ସମୟରେ ବିଚାର ଶକ୍ତିର ବ୍ୟବହାର ଆଉ ନିଜ କାମ କଲାବେଳେ ନିର୍ବିଚାର ଶକ୍ତିର ପ୍ରୟୋଜନ ହୋଇଥାଏ, ଏହା ଉନ୍ନତ ଶ୍ରେଣୀର ଅନୁଭବ ମଧ୍ୟରେ ପହଂଚାଇ ଦିଏ ।

*** *** ***

ଅବିଦ୍ୟା, ଅସ୍ମିତା, ରାଗ, ଦ୍ୱେଷ, ଅଭିନିବେଶ-ଏଗୁଡ଼ିକୁ ପାଞ୍ଚ ପ୍ରକାର କ୍ଳେଶ ବୋଲି ମନେ କରାଯାଏ । ଏଠାରେ କ୍ଳେଶ ଶବ୍ଦଟି ଶାସ୍ତ୍ରୀୟ ଅର୍ଥରେ ବ୍ୟବହୃତ ହୋଇଛି । ଅବିଦ୍ୟାର ଅର୍ଥ ହେଲା ମୂଳରୁ କିଛି ନଜାଣିବା । ଅସ୍ମିତାର ଅର୍ଥ, "ମୁଁ ଗୋଟିଏ କିଛି ଅଟେ' ଅର୍ଥାତ ଅହଂକାର ଏହି ପ୍ରକାର ଭାବନା । ରାଗଦ୍ୱେଷ ଅର୍ଥାତ୍ ଅନୁକୂଳ- ପ୍ରତିକୂଳ ଭାବନା ଏବଂ ଅଭିନିବେଶମାନେ ଆଗ୍ରହ ।

ଏହାରି ଭିତରୁ କ୍ଳେଶର ଉତ୍ପନ୍ନ ହୁଏ । ଶଂକରାଚାର୍ଯ୍ୟ କହିଛନ୍ତି ଜ୍ଞାନାଗ୍ନିରେ ସମସ୍ତ କ୍ଳେଶ ଦୂର ହୁଏ । ଯେପରି ନିଆଁରେ ପୋଡ଼ି ଯାଇଥିବା ବୀଜ ପୁନର୍ବାର ଅଂକୁରିତ ହୋଇପାରେ ନାହିଁ, ସେହିପରି ଜ୍ଞାନ-ଦଗ୍ଧ କ୍ଳେଶ ସହିତ ଆତ୍ମା ପୁନର୍ବାର ଯୁକ୍ତ ହୋଇପାରେ ନାହିଁ । 'ଅପରିଗ୍ରହସ୍ଥୈର୍ଯେ ଜନ୍ମ କଥ' ତାସଂ ବୋଧଃ (ଯୋଗସୂତ୍ର ୨,୩୯) ।

ଅପରିଗ୍ରହ ସ୍ଥୈର୍ଯେ ଅର୍ଥାର୍ତ୍ ଅଦରକାରୀ ବସ୍ତୁ ସଂଗ୍ରହଠାରୁ ବିରତ ହେବା, ଶରୀରପ୍ରତି ମଧ୍ୟ ଆସକ୍ତି ନରଖିବା, ଟଙ୍କା ପଇସାର ସଂସ୍ପର୍ଶରେ ନଆସିବା, ସବୁଆଡୁ ଚିନ୍ତାମୁକ୍ତ ହେବା, ଚିତ୍ତକୁ ଚିନ୍ତାମୁକ୍ତ କରିବା । ମସ୍ତିଷ୍କକୁ ପର୍ବତ ପ୍ରମାଣ ବିଚାର ଭାରରେ ଭାରାକ୍ରାନ୍ତ ନକରିବା ଏହିପରି ଗୋଟିଏ ଅବସ୍ଥା । ମୁଁ ଲେଖିଥିଲି-ବିଚାର ସମୂହର ସଂଗ୍ରହ ହେଉଛି ସଂଗ୍ରହଣୀ ରୋଗ ବିଶେଷ । ଜିତା ମୃତ୍ୟୁଯୋଗ ବିନ୍ୟାମ୍ବହଣୋ (ଅଉଙ୍ଗବ୍ରତି ୮୦-୪) ଜିତା ମୃତ୍ୟୁ ଯୋଗ ଅର୍ଥାତ୍ ଜୀବନକାଳ ମଧ୍ୟରେ ଜୀବିତ୍ ଥିବା ସମୟରେ ମୃତ୍ୟୁର ଅନୁଭବ କରିବା । ସଂଗ୍ରହ ଭିତରେ

ବିଚାର ମଧ୍ୟ ରହିବ ନାହିଁ । ଏହିପ୍ରକାର ଅପରିଗ୍ରହ ଯେତେବେଳେ ହେବ ସେତିକିବେଳେ ପତଞ୍ଜଳିଙ୍କ ଭକ୍ତି-ଜନ୍ମ କଥଂତାସଂ ବୋଧଃ । ସେତେବେଳେ କିପରି ଭାବରେ ଜନ୍ମ ଲାଭ ହେଲା, ପୂର୍ବଜନ୍ମ କ'ଣ ଥିଲା, ଏହିସବୁ ବିଷୟରେ ଜ୍ଞାନ ଲାଭ ହେବ । ଏହାପରେ ଯେଉଁ ପ୍ରଶ୍ନ ମନକୁ ଆସେ ତାହା ହେଉଛି, ପୂର୍ବଜନ୍ମାର୍ଜିତ ସ୍ମୃତିର ଆବଶ୍ୟକତା ବା କ'ଣ ? କାରଣ ଅତୀତାନୁସଂଧାନଂ ଭବିଷ୍ୟତ ବିଚାରଣମ୍ ଏପରି କୁହାଯାଇଛି । ଅତୀତାନୁସଂଧାନମ୍ ଅର୍ଥାତ୍ ଅତୀତକାଳର ଚିନ୍ତା ବୃଥା, ଭବିଷ୍ୟଦ ବିଚାରଣମ୍, ଯାହାର ଅର୍ଥ ହେଉଛି ଭବିଷ୍ୟତର କଥା ବିଚାର ଯୋଗ୍ୟ ନୁହେଁ- ଭବିଷ୍ୟତର ଭାବନା ପରିତ୍ୟାଗ କରିବା ଦରକାର । ଅଥାତ୍ ବର୍ତ୍ତମାନର ଚିନ୍ତା କରିବା, ବର୍ତ୍ତମାନ ବିଷୟ ନିରୀକ୍ଷଣ କରିବା , ଏହାଠାରୁ ଅଧିକ ଭାବିବା ଆବଶ୍ୟକ ନାହିଁ । ଏହା ହେଉଛି ବ୍ରହ୍ମବିଦ୍ୟାର ବିଚାର । ତେଣୁ ପୁନର୍ଜନ୍ମ ସଂପର୍କରେ ଜ୍ଞାନାର୍ଜନର ଆବଶ୍ୟକତା କ'ଣ ଅଛି ? ଅପରିଗ୍ରହର ପରିଣାମ ଏବଂ କାଲିକାର କଥାର ବିସ୍ମରଣ -ଏହି ଦୁଇଟିର ମଧ୍ୟରେ ବିରୋଧ ସୃଷ୍ଟି ହୁଏ । ମୁଁ ଏହାର ଉତ୍ତର ଗୀତାରେ ଚିନ୍ତନିକାରେ ଦେଇଛି :-

ମାଝେଁ ଅନେକ ହ୍ୟାପୂର୍ବୀ ଝାଲେ ଜନ୍ମତସେ ତୁଝେ ଜାଣତୌଁ ସଗଲେ ମୀତେ ଅର୍ଜୁନା ତୁଁ ନ ଜାଣସୀ (୪-୫)

ପୂର୍ବଜନ୍ମର ବିସ୍ମୃତ ଜ୍ଞାନ ପରମେଶ୍ୱରଙ୍କ ଦ୍ୱାରା ସରକ୍ଷିତ ବସ୍ତୁ ବୋଲି ବୁଝିବାକୁ ହେବ । ନିଜର ପୂର୍ବଜନ୍ମର ସିଦ୍ଧିବଳରେ ମିଳିଥିବା ବିଶେଷ ଉପଲବ୍ଧିର ଜ୍ଞାନ ଭକ୍ତ ପକ୍ଷରେ ସ୍ମରଣ ଥାଇପାରେ । କିନ୍ତୁ ତା ପକ୍ଷରେ ବିଷଦ ଭାବରେ ଏହି ଜ୍ଞାନ ଲାଭ କରିବାର କୌଣସି ଆବଶ୍ୟକତା ନାହିଁ ।

ପୂର୍ବଜନ୍ମରେ କ'ଣ ହୋଇଥିଲା ତାହାକୁ ବିସ୍ତାରିତ ଭାବରେ ଜାଣିବାର କୌଣସି ପ୍ରୟୋଜନ ନାହିଁ । କିନ୍ତୁ "ଜନ୍ମ କଥଁତା' ଅର୍ଥାତ୍ ପୂର୍ବଜନ୍ମରେ ବୁଦ୍ଧି ସହକାରେ ଯେଉଁସବୁ ବିଶେଷ ପ୍ରୟୋଗ କରାଯାଇଛି, ତାହାର ସଂସ୍କାର ମିଳିପାରେ । ତାହା ଜ୍ଞାନ ନୁହେଁ, ତାହାକୁ ଧ୍ୟାନ କରାଯାଇପାରେ । ନାମଦେବ ଲେଖିଛନ୍ତି-

ଶାଣୌଁ ମୀ ଗାଇଲୋଁ, ଭାଟ' ବାଖାଣିଲୋଁ ।
ଜନ୍ମୋନିର୍ୟାଁ ଝାଲୋଁ ଦାସ ତୁଝା ॥

ପୂର୍ବ ଜନ୍ମରେ ମୁଁ ରାଜାଥିଲି । ଅନେକ ଅନେକ କବି ମୋର ସ୍ତୁତିଗାନ କରିଛନ୍ତି । ଅନେକ ଲୋକ ମୋର ଗୁଣ ଗାନ କରିଛନ୍ତି ଏଇ ଜନ୍ମରେ ମୁଁ ତୁମର ଗୁଣ ଗାନ କରିଚାଲିଛି । ଏ ଜନ୍ମରେ ମୁଁ ତୁମର ଦାସ । କିନ୍ତୁ ଗତ ଜନ୍ମରେ ରାଜାଥିଲି, ଏହା ହେଉଛି ତାର ଧ୍ୟାନ । ପତଞ୍ଜଳି କ'ଣ କହିଛନ୍ତି ? ଜ୍ଞାନ କୁହାଯାଇନି, କି ପ୍ରକାର ଜନ୍ମ ହୋଇଥିଲା, ତାର ଆଭାସ ମାତ୍ର ଦିଆଯାଇଥିଲା ।

ଯାହାର ମନ ପରିଗ୍ରହରେ (ସଂଗ୍ରହରେ) ମାତିରହିଛି, ତାର ଭାବନା ଚିନ୍ତା ପରିଗ୍ରହ ମଧ୍ୟରେ ଆବଦ୍ଧ ରହି ସ୍ମୃତିକୁ ସଂକୁଚିତ କରିଥାଏ, ଯେଉଁଠି ମନ ପରିଗ୍ରହ ଦ୍ୱାରା ଆବଦ୍ଧ ହୋଇ

ରହିନଥାଏ ସେଠାରେ ସ୍ମୃତିର ତିବ୍ରତା ହେତୁ ପୂର୍ବଜନ୍ମର ଅନୁଭବର ଆଭାସ ମିଳିଥାଏ । ଏହି ଅନୁଭବ ପ୍ରେରଣା ଦାୟକ ହୁଏ । "ଜନ୍ମ କଥାତା' ଅର୍ଥାତ୍ ଜନ୍ମ ମୃତ୍ୟୁର ସ୍ୱରୂପ ସମ୍ପର୍କରେ ଜ୍ଞାନ ଲାଭ ହୁଏ । ପୂର୍ବଜନ୍ମର କାହାଣୀ ମନେ ପଡ଼େ ଏକଥା ନୁହେଁ । ପୂର୍ବଜନ୍ମରେ କଣ ଥିଲ, ଏହି ଜନ୍ମ କିପରି ମିଳିଲା ଏହି ସବୁ କାରଣ ଗୁଡ଼ିକ ପରମ୍ପରାର କ୍ରମ ସମୂହର ଦ୍ୱାରା ଧାରଣା ହୁଏ ଏବଂ ପରବର୍ତ୍ତୀ ପଥ ପରିଷ୍କାର ହୁଏ । ପୂର୍ବଜନ୍ମର ଜ୍ଞାନ ଏଇ ଜନ୍ମରେ ଲାଭଦାୟକ ହୁଏ । କାହାଣୀର ଆବଶ୍ୟକତା ନାହିଁ । ତାର ପରିଣାମ ବିପରୀତ ମଧ୍ୟ ହୋଇପାରେ । ବିଶେଷ ପ୍ରକାର ଅନୁଭୂତିର ଜ୍ଞାନ ହେବା ଫଳରେ ଏହି ଜନ୍ମରେ ତାହା ସାହାଯ୍ୟକାରୀ ହୁଏ ।

ସ୍ଥିର ସୁଖ ମାସନମ୍ (ଯୋଗସୂତ୍ର ୨.୪୬) ଯେଉଁ ଆସନରେ ଦୁଇ ଚାରି ଘଣ୍ଟା ସ୍ଥିର ହୋଇ ବସି ହେବ, ତାହାକୁ ସୁଖାସନ କୁହାଯାଏ । ବାକି ଯେଉଁସବୁ ଆସନ ଅଛି ତାହାସବୁ ବ୍ୟାୟାମ ପାଇଁ କରାଯାଇଥାଏ । ଏସବୁ ଭୋକ ବଢ଼ାଇବା ପାଇଁ, ଶରୀର ଶୁଦ୍ଧ ହେବା ପାଇଁ କରାଯାଏ ।

ଶାନ୍ତୋଦିତୌତୁଲ୍ୟ ପ୍ରତ୍ୟୟୌ ଚିତ୍ତ ସ୍ୟୈକାଗ୍ରତା ପରିଣାମଃ (ଯୋ.ସୂ ୩.୧୨)

ଏହି ସୂତ୍ରରେ ପତଞ୍ଜଳି କହିଛନ୍ତି, ମୁହୂର୍ତ୍ତକ ମଧ୍ୟରେ ଯେଉଁ ଭାବନା ଶାନ୍ତ ହୋଇଥିଲା, ପୁଣି ତାର ପରମୁହୂର୍ତ୍ତରେ ଯେଉଁ ଭାବନା ଉଦୟ ହୋଇଥିଲା, ଏହି ଦୁଇଟି ଯେତେବେଳେ ସମାନ ହୋଇଯାଏ, ସେତେବେଳେ ଏକାଗ୍ରତା ପରିପକ୍ୱ ହେଲା ବୋଲି ବୁଝିନେବାକୁ ହେବ । ଅର୍ଥାତ୍ ଗୋଟିଏ ପ୍ରକାର ଭାବନା ସର୍ବଦା ବଜାୟ ରହିବ ଏପରି କଥା ସେ କହୁନାହାନ୍ତି । ତାହାକୁ ହିଁ ଏକାଗ୍ରତା କହିବାକୁ ହେବ । କିନ୍ତୁ ଏହି ସୂତ୍ରରେ ଏକାଗ୍ରତାର "ପରିଣାମ" ଅର୍ଥାତ ପରିପକ୍ୱତା ଦେଖା ଦେଇଛି । ଗୋଟିଏ ଭାବନାକୁ ସ୍ଥାୟୀ କରି ରଖିବା ଅଲଗା କଥା । ପ୍ରତି ମୁହୂର୍ତ୍ତରେ ଭାବନା ମନରେ ଉଠେ ଏବଂ ପ୍ରତିମୁହୂର୍ତ୍ତରେ ଏହି ଭାବନା ଉଭେଇ ଯାଏ । ଏପରି ଭାବରେ ଉଠିବା ଏବଂ ଉଭେଇଯିବାର କ୍ରିୟା ଚାଲୁଥିଲେ ଏପରି ପ୍ରବାହ ରହିଥିବ । କିନ୍ତୁ ବିଲୀନ ହେବା ପରେ ଯେଉଁ ଭାବନା ପୁଣି ଜାଗିଉଠେ ତାହା ଯଦି ପୂର୍ବର ଭାବନା ହୁଏ-ସେହି ଗୋଟିଏ ଭାବନା ଯଦି ବରାବର ମନରେ ଜାଗ୍ରତ ହୁଏ ଏବଂ ଉଭେଇଯାଏ, ତାହାହେଲେ ତାକୁ ଏକାଗ୍ରତାର ପରିଣାମ ବୋଲି ବୁଝିବାକୁ ହେବ ।

ତେ ସମାଧାନୁପାସର୍ଗା ବୁଥ୍ଥାନେ ସିଦ୍ଧୟଃ (ଯୋ.ମୂ : -୩-୩୮)

ଯୋଗୀ ଯେତେବେଳେ ଆତ୍ମଦର୍ଶନ ପାଇଁ ଧ୍ୟାନମଗ୍ନ ହୁଅନ୍ତି, ସେତେବେଳେ ପ୍ରକୃତି ମାତା ସିଧାସଳଖ ଦର୍ଶନ କରାଇବା ବଦଳରେ ତାକୁ ସିଦ୍ଧି ପ୍ରାପ୍ତି ଦିଗରେ ନେଇ ଯାଆନ୍ତି । କିନ୍ତୁ ଗୋଟିଏ ଗୋଟିଏ ପ୍ରକାରର ସିଦ୍ଧି ଲାଭ କରିବା ପରେ ତାର ଏହି ଜ୍ଞାନ ହୁଏ ଯେ ଏସବୁ ଯଦିଓ ଆତ୍ମଦର୍ଶନର ସୋପାନ । ତଂଥାପି ଏଥିରେ ଅଟକି ରହିଲେ ତାହା ଆତ୍ମଦର୍ଶନ କ୍ଷେତ୍ରରେ ବାଧା ସ୍ୱରୂପ ହେବ । ଯୋଗଶାସ୍ତ୍ରରେ ଏହି ଉତ୍ତମ କଥାଟି ଉଲ୍ଲେଖ କରାହୋଇଛି । ଗୀତାକାର୍ଯ୍ୟ ଯେ ମୁକ୍ତି କର୍ମର ବିରୁଦ୍ଧ କାର୍ଯ୍ୟ ଏକଥା ତ ସମସ୍ତେ ଜାଣନ୍ତି । କିନ୍ତୁ ଅନେକ ସମୟରେ ପୁଣ୍ୟ କର୍ମ ମଧ୍ୟ ମୁକ୍ତି ମାର୍ଗରେ ଅତି ଶକ୍ତିଶାଳୀ ବାଧା ରୂପେ ଠିଆ ହୁଏ, ତାହା ପାପକର୍ମଠାରୁ କମ୍ ନୁହେଁ,

କାରଣ ଲୋକମାନେ ପାପକୁ ତ ପାପ ବୋଲି ବୁଝିପାରନ୍ତି । କିନ୍ତୁ ଯେତେବେଳେ ପୁଣ୍ୟ ଅତି ଉଜ୍ଜ୍ୱଳ ରୂପ ଧାରଣ କରି ମଣିଷ ସମ୍ମୁଖରେ ଉପସ୍ଥିତ ହୁଏ, ସେଥିରେ ଭ୍ରମ ସୃଷ୍ଟି ହୁଏ ଏବଂ ମଣିଷ ମୁକ୍ତି ପରିବର୍ତ୍ତନରେ ତାହାକୁ ସତ୍ୟ ବୋଲି ମନେକରେ । ଏହିପରି ଭାବରେ ସେ ଭଲ ଭାବରେ ପ୍ରତାରିତ ହୁଏ ।

କାର୍ଲମାର୍କସ୍ ଯୋଗଶାସ୍ତ୍ରର ଏହି ବିଷୟଟିକୁ ଅନ୍ୟଭାବରେ ବର୍ଣ୍ଣନା କରିଛନ୍ତି । ସେ କହନ୍ତି : ଏହି ଶୋଧନବାଦ କ୍ରାନ୍ତିବାଦୀ ବିପ୍ଳବର ଜନ୍ମଗତ ଶତ୍ରୁ । ପ୍ରଥମେ ତାହା ବିପ୍ଳବ ବୋଲି ପ୍ରତିପାଦିତ ହୁଏ ଏବଂ ଆଶ୍ଚର୍ଯ୍ୟଜନକ ମନେ ହୁଏ । କିନ୍ତୁ ପ୍ରକୃତରେ ଘୋଡ଼ା ଏବଂ ଗଧ ଭିତରେ ଯେଉଁ ପାର୍ଥକ୍ୟ ଅଛି, ଉଭୟ ମଧ୍ୟରେ ସେତିକି ପାର୍ଥକ୍ୟ ରହିଛି । ଗଧ ବୋଝ ବହେ ଆଉ ଘୋଡ଼ା ଦ୍ରୁତଗାମୀ ପଶୁ । କ୍ରାନ୍ତି ବା ବିପ୍ଳବ ହେଲା ଅଶ୍ୱର ଦର୍ଶନ ଏବଂ ଶୋଧନବାଦକୁ ଗଧର ଦର୍ଶନ ବୋଲି କୁହାଯାଏ । ଏହିପରି ଭାବରେ ସେ ଅତି ଅସାଧାରଣ ବକ୍ତବ୍ୟକୁ ସାଧାରଣ କଥାରେ ମଣିଷକୁ ବୁଝାଇବାକୁ ଚାହିଁଛନ୍ତି । ଏହାରି ଭିତରେ ଏକାପ୍ରକାର ଭାବନା ରହିଛି ଯେ ଶୋଧନବାଦ କ୍ରାନ୍ତି କାମରେ ବିଘ୍ନ ସ୍ୱରୂପ । ଯୋଗ ଶାସ୍ତ୍ରରେ ଯେଉଁଠାରେ ମାନବ ମୁକ୍ତିକଥା ଉଲ୍ଲେଖ କରାଯାଇଛ. ତାହା ହିଁ କାର୍ଲ ମାର୍କସ୍‌ଙ୍କ କ୍ଷେତ୍ରରେ ସାମାଜିକ କ୍ରାନ୍ତି ରୂପେ ରହିଥିଲା । ଦୁଇଟିର ରୂପ ଏକା ପ୍ରକାର ଏବଂ ତାହା ହେଉଛି ଶେଷ ସିଦ୍ଧାନ୍ତ ସଫଳ କରିବାର ଯାତ୍ରା ପଥରେ ସିଦ୍ଧି ଏବଂ ଶୋଧନ ଉଭୟ ହେଉଛନ୍ତି ବିଘ୍ନ ସ୍ୱରୂପ ।

ଖ).ଗୀତା

(ଗୀତାଇ-ଚିନ୍ତନିକାରେ ବିନୋବାଜୀ ପ୍ରତ୍ୟେକ ଶ୍ଳୋକ ଉପରେ ସୂତ୍ରାତ୍ମକ ସାର ସଂକ୍ଷେପରେ ଲେଖିଛନ୍ତି) । ଏହି ଅଠର ଅଧ୍ୟାୟର ୭୦୦ ଶ୍ଳୋକ ମଧ୍ୟରୁ ଧ୍ୟାନ ସଂପର୍କରେ ସାରାଂଶ ଏଠାରେ ଉଦ୍ଧୃତ କରା ହୋଇଛି -(ସଂପାଦକ)

ସ୍ଥୁଳ ଦୃଷ୍ଟିରେ ଗୀତାର ୬ଠାରୁ ୮ ଅଧ୍ୟାୟ ମଧ୍ୟରେ ଧ୍ୟାନ-ଯୋଗର ପ୍ରଧାନ ଉପାସନାର ବର୍ଣ୍ଣନା ରହିଛି । ଏବଂ ୯ ଠାରୁ ୧୨ ଅଧ୍ୟାୟ ମଧ୍ୟରେ ଭକ୍ତିପ୍ରଧାନ ଉପାସନା ବିଷୟରେ ଆଲୋଚିତ ହୋଇଛି । ପ୍ରଥମେ ଅବ୍ୟକ୍ତ ପ୍ରତି ଆଗ୍ରହ ଦେଖାଯାଏ, ଦ୍ୱିତୀୟରେ ବ୍ୟକ୍ତ ପ୍ରତି ଆଗ୍ରହ ଦେଖାଯାଏ ।

ଛଅଠାରୁ ଆଠ ଅଧ୍ୟାୟ ମଧ୍ୟରେ ଯେଉଁ ଅବ୍ୟକ୍ତ ଉପାସନା କଥା ବର୍ଣ୍ଣନା ହୋଇଛି ତାହାହେଲା ପତଞ୍ଜଳୀର ଯୋଗ-ଶାସ୍ତ୍ର । ଗୀତାରେ ଯେଉଁ ବିଷୟ ପ୍ରତିପାଦିତ ହୋଇଛି ତାହା ନିମ୍ନରେ ପତଞ୍ଜଳୀ ସୂତ୍ରରେ କ୍ରମ ଅନୁସାରେ ଲେଖା ହୋଇଛି ।

୧- ଅଥ ଯୋଗାନୁଶାସନମ୍

୨-ଯୋଗଶ୍ଚିତ୍ତ ବୃତ୍ତି ନିରୋଧଃ ।

୩-ତଦା ଦ୍ରଷ୍ଟୁଃ ସ୍ୱରୂପେଽବସ୍ଥାନମ୍ ।

୪- ଅଭ୍ୟାସ ବୈରାଗ୍ୟାଭ୍ୟାମ୍ ତନ୍ନିରୋଧଃ ।

୫-ଈଶ୍ୱର ପ୍ରଣିଧାନାଦ୍ୱା

୬-ତସ୍ୟ ବାଚକଃ ପ୍ରଣବଃ ।

୭-ତଜ୍ଜପସ୍ତଦର୍ଥ ଭାବନମ୍ ।

ଏ ଗୁଡ଼ିକ ମଧ୍ୟରୁ ପ୍ରଥମ ଚାରି ସୂତ୍ର ବିଷୟରେ ଗୀତାର ୬ଷ୍ଠ ଅଧ୍ୟାୟ ପର୍ଯ୍ୟନ୍ତ ଆଲୋଚିତ ହୋଇଛି । ପଞ୍ଚମସୂତ୍ର ୭ମ ଅଧ୍ୟାୟ ଏବଂ ଷଷ୍ଠ ଓ ସପ୍ତମ ସୂତ୍ର ଅଷ୍ଟମ ଅଧ୍ୟାୟରେ ଆଲୋଚନା କରାଯାଇଛି ।

ଧ୍ୟାନ ଯୋଗର ପ୍ରକ୍ରିୟା ଗୀତାର ୬ଷ୍ଠ ଅଧ୍ୟାୟରେ ବର୍ଣ୍ଣିତ ହୋଇଛି । ଏବଂ ସେହି ଅନୁସାରେ ଏହାକୁ ଅଭ୍ୟାସ ଯୋଗ, ଧ୍ୟାନ ଯୋଗ, ଆତ୍ମ ସଂଯମ ଯୋଗ ଏହିପରି ଉପାଧି ଦିଆଯାଇଛି । ଆତ୍ମ ସଂଯମରେ କଷ୍ଟ ମନେ ହେଉଥିବା ବିଷୟ ଷଷ୍ଠ ଅଧ୍ୟାୟର ଆଲୋଚ୍ୟ ବିଷୟ । ଏଥିପାଇଁ ସାଧନା କରୁଥିବା ବ୍ୟକ୍ତି କେତେବେଳେ ବି ଯେପରି କ୍ଲାନ୍ତ ହେବେ ନାହିଁ କିମ୍ବା ସାହସ ହରାଇବେ ନାହିଁ । ଏହି ଦୃଷ୍ଟିରୁ ଆରମ୍ଭରୁ ଭଗବାନ କହିଛନ୍ତି, ଉଦ୍ଧାରେତ୍ ଆତ୍ମା ନା ତ୍ମାନମ୍ (୬,୫) ଅଗ୍ନିଶିଖା ସବୁବେଳେ ଊର୍ଦ୍ଧ୍ୱମୁଖୀ ଥାଏ, ସାଧକର ବୃତ୍ତି ମଧ୍ୟ ଏହି ପ୍ରକାର ହେବା ଉଚିତ । ଆତ୍ମାର ଉଦ୍ଧାର ପାଇଁ ସାଧନା ବିଷୟରେ କହିବାପରେ ବିଷୟଟିର ଉପକ୍ରମ କରିବାକୁ ଯାଇ ଭଗବାନ ତିନୋଟି ଶ୍ଳୋକରେ (୭ ରୁ ୯) ଯୋଗାରୂଢ଼ ସାଧକର ଲକ୍ଷଣ ଉଲ୍ଲେଖ କରି ଦ୍ୱନ୍ଦହୀନ ଅବସ୍ଥା ସୂଚକ ସାମ୍ୟଯୋଗ ଆଡ଼କୁ ନିର୍ଦ୍ଦେଶ ଦେଇଛନ୍ତି । ଯେଉଁ ଯୋଗୀପୁରୁଷ ନିର୍ଦ୍ୱନ୍ଦ ଅବସ୍ଥା ପ୍ରାପ୍ତ ହୋଇଛନ୍ତି ତାଙ୍କ ଦୃଷ୍ଟିରେ ମାନ ଅପମାନ, ଶୀତ ଉଷ୍ଣ ଏହିସବୁ ରୂପ ମଧ୍ୟରେ ବ୍ରହ୍ମତତ୍ତ୍ୱ ପୂର୍ଣ୍ଣରୂପେ ରହିଅଛି । ଅର୍ଥାତ ଶୀତ-ଉଷ୍ଣ ଇତ୍ୟାଦି ପ୍ରତ୍ୟେକଟିର ଅନୁଭୂତି ମଧ୍ୟରେ ତାଙ୍କର ଆତ୍ମ ଲାଭର ବିଶ୍ୱାସ ଜନ୍ମିଥାଏ । କୌଣସି ପରିସ୍ଥିତିରେ ଆତ୍ମବୋଧର ଅଭାବ ନହେବା ହେଉଛି ଯୋଗ ।

ଏକାଦଶ ଶ୍ଳୋକରେ ଧାନପାଇଁ କିପରି ସ୍ଥାନ ହେବା ଦରକାର ସେ ବିଷୟରେ ବର୍ଣ୍ଣନା କରାହୋଇଛି । ଶୁଚୌ ଦେଶେ - ପବିତ୍ର ସ୍ଥାନରେ, ଅର୍ଥାତ୍ ସ୍ୱଚ୍ଛ ନିର୍ମଳ ସ୍ଥାନ ଯେଉଁସ୍ଥାନର ପରିବେଶ ପବିତ୍ର, ଶୁଦ୍ଧ-ସେହିପରି ସ୍ଥାନ । ପ୍ରତ୍ୟେକ ଘରେ ଧାନ, ଭକ୍ତି ଏବଂ ବିକାରଠାରୁ ମୁକ୍ତିଲାଭର ସ୍ଥାନ ଅବଶ୍ୟ ରହିବା ଦରକାର । ଉପନିଷଦଗୁଡ଼ିକରେ ଏହି ଆଦେଶ ରହିଛି - କୁଟୁମ୍ବେ ଶୁଚୌ ଦେଶେ - ସ୍ୱାଧ୍ୟାୟମଧୀୟାକଃ (ଛାନ୍ଦୋଗ୍ୟ, ୮, ୧୫, ୧) ।

ଏପରି ସ୍ଥାନ ପାଇଲା ପରେ କଣ କରିବାକୁ ହେବ ? ଗୀତା କହୁଛି -

ତତ୍ରୈକାଗ୍ରଂମନଃ କୃତ୍ୱା ଯତ୍‌ଚିତ୍ତେନ୍ଦ୍ରିୟ କ୍ରିୟଃ

ଉପ ବିଶ୍ୟାସନେ ଯୁଂଜ୍ୟାତ୍‌ଯୋଗମାତ୍ମ ବିଶୁଦ୍ଧୟେ (୬, ୧୨)

ଯତଚିତ୍ତେନ୍ଦ୍ରିୟକ୍ରିୟାଃ ଅର୍ଥାତ୍ ଚିତ୍ତ ଏବଂ ଇନ୍ଦ୍ରିୟ ଗୁଡ଼ିକର ଘଟଣାଗୁଡ଼ିକୁ ନିରସ୍ତ କର । ଏଥିରେ ଜୀବନ ବିନ୍ୟାସରେ ନିୟନ୍ତ୍ରଣ ଆସିଥାଏ ।

ଗୀତାର ଷଷ୍ଠ ଅଧ୍ୟାୟ, ଯାହା ଧ୍ୟାନ ଯୋଗର ମୁଖ୍ୟ ଅଧ୍ୟାୟ ଅଟେ, ସେଥିରେ ପ୍ରାଣାୟାମର ଉଲ୍ଲେଖ ନାହିଁ । ତଥାପି ୬-୧୧୦ରୁ ୬-୨୪ ପର୍ଯ୍ୟନ୍ତ ଶ୍ଳୋକ୍‌ରେ ପ୍ରାଣାୟାମକୁ ଗ୍ରହଣ କରାଯାଇଛି ।

ଗୀତାରେ ପ୍ରାଣାୟାମର ଉଲ୍ଲେଖନୀୟ ସ୍ଥାନ ହେଉଛି - ୪-୨୭, ୨୯; ୫-୨୭, ୮/୧୦, ୧୨/୧୮, ୩୩ ।

କେତେଗୁଡ଼ିଏ ସ୍ଥାନରେ ବିଭିନ୍ନ ଧରଣର ପ୍ରାଣାୟାମ ସଂବନ୍ଧରେ ବିକର୍ମ ରୂପେ ଚିନ୍ତା କରିବାର ନିର୍ଦ୍ଦେଶ କେବଳ ମାତ୍ର ୪-୨୯ ଶ୍ଳୋକ୍‌ରେ ଦିଆଯାଇଛି । ଅନ୍ୟ ସବୁ ସ୍ଥାନରେ ପତଞ୍ଜଳି ପ୍ରାଣାୟାମର ଉଲ୍ଲେଖ କରିଛନ୍ତି:

ବାହ୍ୟାଭ୍ୟନ୍ତର ବିଷୟାକ୍ଷେପୀ ଚତୁର୍ଥଃ (ଯୋଗସୂତ୍ର ୨/୫୧)

ଅର୍ଥାତ୍ ଚତୁର୍ଥ ପ୍ରାଣାୟମଟି ଚିନ୍ତନ ପ୍ରଧାନ ଏବଂ ସହଜରେ କରାଯାଏ । ଚିତ୍ତ ଏବଂ ଇନ୍ଦ୍ରିୟର ବିଷୟଗୁଡ଼ିକୁ ନିୟନ୍ତ୍ରଣ କରିବା ଫଳରେ ଜୀବନର ବିଷୟଗୁଡ଼ିକୁ ମଧ୍ୟ ସହଜରେ ନିୟନ୍ତ୍ରିତ କରାଯାଇପାରେ, ପ୍ରାଣାୟାମ ପ୍ରକ୍ରିୟା ଏହିପରି ।

ତତ୍ରୈକାଗ୍ରଂ ମନଃ - ଏକାଗ୍ରମନ ଅର୍ଥାତ୍ ଗୋଟିଏ ଆଲମ୍ବନ - ନିର୍ଭର ସ୍ଥିର ମନ ।

ଯୋଗଂ ଆତ୍ମ ବିଶୁଦ୍ଧୟେ - ଧ୍ୟାନର ଉଦ୍ଦେଶ୍ୟ ଆତ୍ମଶୁଦ୍ଧି । ତାହାହେଲେ ଏହି ଧ୍ୟାନ ହିଁ ଯୋଗରେ ପରିଣତ ହୁଏ ।

ଯଥାଦୀପୋ ନିବାତସ୍ଥଃ (୬-୧୯)ଏଠାରେ ଯୋଗୀମାନଙ୍କର ଚିତ୍ତ ସହିତ ସ୍ଥିର ରହିଥିବା ପ୍ରଦୀପ ଶିଖା ସହିତ ତୁଳନା କରାହୋଇଅଛି ।

ଦୀପ - ନିର୍ବାଣର ଅର୍ଥ ହେଉଛି ସର୍ବଦା ସ୍ଥିର ଭାବରେ ଜଳୁଥିବା ପ୍ରଦୀପ । ଆଲୋକରେ ଅଭିଷେକ-ଧାରା ଏବଂ ଅନ୍ଧକାରରେ ଦୀପ-ଜ୍ୟୋତିର ଧ୍ୟାନ କରିବାର ପ୍ରଥା ରହିଛି । ଅଭିଷେକ ଧାରା ଉପରୁ ତଳକୁ ବହିଯାଏ । ତାହା ଈଶ୍ୱରଙ୍କ ଧାରା ଉପରୁ ତଳକୁ ବହିଯାଏ, ତାହା ଈଶ୍ୱରଙ୍କ କୃପାର ନିଦର୍ଶନ ସ୍ୱରୂପ । ଏଥିପାଇଁ ତାହାକୁ ଭକ୍ତର ଚିତ୍ତ ସହିତ ଉପମା ଦିଆଯାଇଥାଏ । ଦୀପ ଶିଖା ତଳୁ ଉପରକୁ ଉଠେ । ତାହା ଆତ୍ମ-ପ୍ରଚେଷ୍ଟାର ସୂଚକ । ଏଥିପାଇଁ ତାହାକୁ ଯୋଗୀ-ଚିତ୍ତ ସହିତ ତୁଳନା କରାଯାଇଥାଏ ।

ଯତୋ ଯତୋ ନିଶ୍ଚରତି ମନଶ୍ଚଞ୍ଚଳମସ୍ଥିରମ୍

ତତସ୍ତତୋ ନିୟମ୍ୟୈତଦାତ୍ମ ନ୍ୟେବ ବଶଂ ନୟେତ୍ (ଗୀତା - ୬/୨୬)

ଜଳ ପ୍ରବାହକୁ ଅଟକାଇବା ପାଇଁ ଯେପରି ବଂଧ ନିର୍ମାଣ କରାଯାଏ, ସେହିପରି ମନର ବଂଧ ମଧ୍ୟ ନିର୍ମାଣ କରିବା ଦରକାର । ବିବେକ ହେଉଛି ମନର ବଂଧ ।

ଆଉ ଗୋଟିଏ କଥା ଏଠାରେ କୁହାଯାଇଛି - ଆତ୍ମନ୍ୟେବ ବଶଂ ନୟେତ୍ । ଅର୍ଥାତ୍ ମନକୁ ଆତ୍ମ ଚିନ୍ତନରେ ନିଯୁକ୍ତ କରିବା ।

ଚିନ୍ତନର ଦୁଇପ୍ରକାର ପ୍ରକ୍ରିୟା ଅଛି - ୧) ମନନ - ବିଚାର ପ୍ରକ୍ରିୟା । ସେଥିରୁ କେଉଁଟା ସତ୍ କେଉଁଟା ଅସତ୍ ଏହା ବିବେକ ଜାଗ୍ରତ କରାଇଥାଏ । ୨) ଧ୍ୟାନ - ଭାବନାର ପ୍ରକ୍ରିୟା, ଏହାଦ୍ୱାରା ଦୃଢ଼ତା ପ୍ରାପ୍ତ ହୁଏ । ଭଗବାନଙ୍କଠାରୁ ଧ୍ୟାନ ଯୋଗର ନିର୍ଣ୍ଣୟ ସଂପର୍କରେ ଶୁଣିବାପରେ ଅର୍ଜୁନ ପ୍ରଶ୍ନ କଲେ:-

ଚଞ୍ଚଳଂହିଁ ମନଃକୃଷ୍ଣ ପ୍ରମାଥି ବଳବଦ୍ ଦୃଢ଼ମ୍ (୬-୩୪)

ଏପଟେ ମନ ଚଞ୍ଚଳ । ତେବେ ଅନ୍ୟ ଦିଗରେ ଜିଦ୍ । ଏ ଦୁଇଟି ଅବସ୍ଥା ମିଶି ଖୁବ୍ ଦୁଃସାଧ୍ୟ ହୋଇ ଉଠିଥାଏ । କିନ୍ତୁ ଜିଦ୍ କରିବାର, ଲାଭ ଆଦାୟ କରିବାର କୌଶଳ ସଫଳ ହୋଇଗଲେ ମନର ଚଞ୍ଚଳତାକୁ ସମାପ୍ତ କରିଦେବା ସଂଭବ ହୁଏ ।

ମନୋନିଗ୍ରହର ଏହି ଉପାୟର ବର୍ଣ୍ଣନା ପ୍ରସଙ୍ଗରେ ଭଗବାନ୍ ଅର୍ଜୁନଙ୍କୁ କହିଲେ:-

ଅଭ୍ୟାସେନ ତୁ କୌନ୍ତେୟ ବୈରାଗେଣ ଚ ଗୃହ୍ୟତେ

୧) ଅଭ୍ୟାସ ହେଲା ମନୋନିଗ୍ରହର ନିରନ୍ତର ପ୍ରଯତ୍ନ । ମନକୁ ସର୍ବଦା ବିଧାୟକ ଚିନ୍ତନ ଦ୍ୱାରା ଉତ୍ତମ ବିଷୟ ଆଡ଼କୁ ନେଇଯିବା । ଏହି ଅଭ୍ୟାସ କରିବା ଦରକାର ।

୨) ବୈରାଗ୍ୟ ହେଲା - ମନୋନିଗ୍ରହ ପାଇଁ ଯେଉଁ ପ୍ରୟାସ ତାର ନିଷେଧାର୍ଥକ ଦିଗ । ଅନିଷ୍ଟକାରୀ ବିଷୟଗୁଡ଼ିକୁ ବର୍ଜନ କରିବାର ଭାବନା । ଏହା ହେଉଛି ଅଭ୍ୟାସର ସହାୟକ ସାଧନ ।

ମନୋନିଗ୍ରହର ଯୁକ୍ତି ବର୍ଣ୍ଣନା କରିବା ଛଡ଼ା ଭଗବାନ ଅର୍ଜୁନଙ୍କୁ ଆଶ୍ୱାସନା ଦେବାକୁ ଯାଇ କହିଛନ୍ତି - ନ ହିଁ କଲ୍ୟାଣକୃତ୍ କଶ୍ଚିତ୍ ଦୁର୍ଗତିଂ ତାତ ଗଚ୍ଛତି । କୌଣସି ଶୁଭ ପ୍ରବୃତ୍ତି ବ୍ୟର୍ଥ ଯାଏନାହିଁ । ତାହା ସେବା କ୍ଷେତ୍ରରେ ହେଉ, ଧ୍ୟାନ କ୍ଷେତ୍ରରେ ହେଉ କିମ୍ବା ଭକ୍ତି କ୍ଷେତ୍ରରେ ହେଉ ।

ପ୍ରସନ୍ନ ଚେତସୋହ୍ୟାସୁ
ବୁଦ୍ଧି ପର୍ଯବତିଷ୍ଠତେ । (୨-୬୫)

ଚିତ୍ତର ସମସ୍ତ ଶକ୍ତି ପ୍ରସନ୍ନତା ଲାଭ ପାଇଁ ଲଗାଇବାକୁ ହେବ । ମଣିଷ ବୁଦ୍ଧିକୁ ସ୍ଥିର କରିବାପାଇଁ ଯତ୍ନ କରେ । ଆଖି ବନ୍ଦ କରେ । ଜୋର କରି ଅଣ୍ଟାକୁ ସଳଖ କରିଥାଏ । ତଥାପି ଚିତ୍ତ ସ୍ଥିର ହୁଏ ନାହିଁ । ଚିତ୍ତ ସବୁଆଡ଼କୁ ଦୌଡୁଥାଏ । କାହିଁକି ? କାରଣ ତାର ପ୍ରସନ୍ନତା ନାହିଁ । ଗୀତା କହିଛି ଚିତ୍ତକୁ ପ୍ରସନ୍ନ କର । ତାହାହେଲେ ଦୁଃଖ ଏକେବାରେ ଶୂନ୍ୟରେ ପରିଣତ ହେବ । ତାପରେ ଏକାଗ୍ରତା ଆସିବାରେ ଅସୁବିଧା ହେବ ନାହିଁ । ସର୍ବପ୍ରଥମେ ଚିତ୍ତକୁ ନିର୍ମଳ କର, ଶୁଦ୍ଧକର,

ସେ ଆପେ ଆପେ ଶୂନ୍ୟରେ ପହଂଚିଯିବ । ତାପରେ ବ୍ୟଗ୍ରତା ଆଣିବା ପାଇଁ ପ୍ରୟାସ କରିବାକୁ ହେବ । ଅର୍ଥାତ୍ ସଂପୂର୍ଣ୍ଣ ଧ୍ୟାନ ପ୍ରକ୍ରିୟା କଟିଗଲା । ଗୀତାରେ ଧ୍ୟାନ ପ୍ରକ୍ରିୟାର ସଂନ୍ଧାନ ମିଳେ ନାହିଁ ।

ଅପୂର୍ଯ୍ୟମାଣଂ ଅଚଳ ପ୍ରତିଷ୍ଠମ୍ (୨-୭୦)

ଏଠାରେ ସ୍ଥିତପ୍ରଜ୍ଞ କରୁଥିବା ଧ୍ୟାନ ଯୋଗର ଭୂମିକାର ଭାବ ବର୍ଣ୍ଣନା କରାଯାଇଛି । ଏହାକୁ ତାର ସେହି ଭାବନାକୁ ବ୍ୟାପକତା ଏବଂ ଭବ୍ୟତାର ଦର୍ଶନ କୁହାଯାଏ । ସମୁଦ୍ରପରି ସେ ପ୍ରତ୍ୟେକଟି ବିଷୟକୁ ନିଜ ଭିତରେ ଲୀନ କରି ଦେବା ପାଇଁ ସମର୍ଥ ହେବେ, ଆଚାର ବ୍ୟବହାର ମଧ୍ୟରେ କୌଣସି ବାଧା ନିଷେଧ ରହିବ ନାହିଁ । ତାଙ୍କର ବିଶାଳ, ଉଦାର ଦୃଷ୍ଟିର ବ୍ୟାପ୍ତି ମଧ୍ୟରେ ସାରା ବିଶ୍ୱ ଆତ୍ମସାତ୍ ହୋଇଯାଏ । ତାଙ୍କ ଦୃଷ୍ଟିରେ ସବୁ ଶୁଭ, ସବୁ ପବିତ୍ର, ସବୁ ମଙ୍ଗଳ ରୂପେ ଦେଖାଦିଏ ।

*** *** ***

ଶାରୀରଂ କେବଳଂ କର୍ମ (୪, ୨୧)

କର୍ମ ପାଇଁ ମଧ୍ୟ ପରିଗ୍ରହ ବଢ଼ାଇବା ଉଚିତ ନୁହେଁ, କିମ୍ବା ଏହାକୁ ବଢ଼ାଇବା ଉଚିତ ନୁହେଁ । ସହଜ ଭାବରେ ନିଜର ଦେହ ଦ୍ୱାରା ଯେତିକି ସଂଭବ ସେତିକି କର୍ମକରି ନିର୍ଲିପ୍ତ ହୋଇଯିବା କଥା । ପରିଗ୍ରହର ଅର୍ଥ ହେଉଛି ସାଧନା ଦୃଷ୍ଟିରୁ ଯେଉଁ ବସ୍ତୁର ପ୍ରୟୋଜନ ନାହିଁ ତାକୁ ଅନ୍ୟଥା ସଂଗ୍ରହ କରିବା । ଅପରିଗ୍ରହ ଏବଂ ଶରୀର ଶ୍ରମ ଉପରେ ଆଧାରିତ କର୍ମଯୋଗ ଧ୍ୟାନଯୋଗ ସହିତ ସମାନ ହୋଇଥାଏ ।

*** *** ***

ତଦ୍‌ବୁଦ୍ଧୟସ୍ତଦାତ୍ମାନଃ (୫/୧୭) - କର୍ମଯୋଗ ।

ଭକ୍ତି, ଧ୍ୟାନ, ଜ୍ଞାନ, କେଉଁଟିକୁ ବାଦ ଦେଇ ନିଷ୍ଠୟାତ୍ମକ କଳ୍ପନା କରିବା ସଂଭବ ନୁହେଁ । ଧ୍ୟାନର ଅର୍ଥ ହେଲା ଅଚଞ୍ଚଳତା, ଧୈର୍ଯ୍ୟ ଏବଂ ନିର୍ଣ୍ଣୟ ।

*** *** ***

୭ମ ଅଧ୍ୟାୟରେ, ୨୭ରୁ ୩୦ ଶ୍ଳୋକ ମଧ୍ୟରେ ଧ୍ୟାନଯୋଗ ସାଧନାର ପ୍ରଥମରୁ ଶେଷ ପର୍ଯ୍ୟନ୍ତ ଶ୍ରେଣୀ ବିଭାଗ ଯଥାକ୍ରମେ ନିମ୍ନମତେ ଲିପିବଦ୍ଧ କରାଯାଇଛି:-

୧) ନିଷ୍କାମ ପୁଣ୍ୟାଚରଣ

୨) ଚିତ୍ତଶୁଦ୍ଧି (ପାପ-ବାସନା, ବିବୃତ୍ତି)

୩) ଦ୍ୱନ୍ଦ ମୋହ - ନିରାସନ

୪)  ଦୃଢ଼ଭକ୍ତି

୫)  ଭକ୍ତିପୂର୍ବକ ଯୋଗ ସାଧନ

୬)  ବ୍ରହ୍ମାଦି-ତ୍ରୟୀର ଜ୍ଞାନ

୭)  ଅଧିଭୂତାଦି-ତ୍ରୟୀର ବିଜ୍ଞାନ

୮)  ଅନ୍ତକାଳୀନ ସାଧନା ( ପ୍ରୟାଣ ଯୋଗ)

୯)  ଈଶ୍ୱର-ପ୍ରବେଶ

*** *** ***

ଆଦିତ୍ୟବର୍ଣ୍ଣଂ ତମସଃ ପରସ୍ତାତ୍ (୮/୯) - ମୃତ୍ୟୁକାଳ ଉପସ୍ଥିତି ହେଲେ ଯୋଗୀମାନଙ୍କୁ ରାତ୍ରିର ଅନ୍ଧକାର ଭେଦକରି ବାହାରର ନିଷ୍କ୍ରାନ୍ତ ହୋଇଥିବା ଉଦୀୟମାନ ସୂର୍ଯ୍ୟ ସଦୃଶ ଈଶ୍ୱରଙ୍କ ଧାନରେ ମଗ୍ନ ହେବାକୁ ହୁଏ । ଏଥିରେ ଏପରି ଭାବନା ନିହିତ ଥାଏ ଯେ - ସଂସାରରୂପୀ ଅନ୍ଧକାର ଭେଦକରି ବର୍ତ୍ତମାନ ମୁଁ ବାହାରକୁ ଆସିଛି, ମୋର ଉଦୟ ହେଉଛି । ଅନେକ ସମୟରେ ଅସ୍ତ ହେଉଥିବା ସୂର୍ଯ୍ୟ ସହିତ ମୃତ୍ୟୁର ଉପମା ଦିଆଯାଇଥାଏ । କିନ୍ତୁ ଯୋଗୀ ଦୃଷ୍ଟିରେ ମୃତ୍ୟୁର ଅର୍ଥ ହେଲା ଉଦୟ ।

*** *** ***

ଭ୍ରୁବୋର୍ ମଧେ ପ୍ରଣମାଦେଶ୍ୟ ସମ୍ୟକ୍ (୮/୧୦) ଅନ୍ତକାଳ ଉପସ୍ଥିତ ହେଲେ ଈଶ୍ୱର ଚିନ୍ତାପାଇଁ ଦେହର ସମସ୍ତ ଶକ୍ତିର ଶ୍ରୋତ ଚିନ୍ତନ କେନ୍ଦ୍ରରେ ଏକତ୍ରିତ କରିବା ଉଚିତ । ଉଭୟ ଭ୍ରୁର ମଧବର୍ତ୍ତୀ ମିଳନ କେନ୍ଦ୍ରଟିର ବିଶେଷ ତାତ୍ପର୍ଯ୍ୟ ଥିବା ହେତୁ ତାହାକୁ ଚିନ୍ତନ କେନ୍ଦ୍ର ବୋଲି ମନେ କରାଯାଏ । ତଥାପି ତାହାର ସ୍ଥୁଳ ଅର୍ଥ ମଧ ଛାଡ଼ିବାର ନୁହେଁ । କାରଣ ଦୃଷ୍ଟି ସ୍ଥିର କରିବାପାଇଁ ଏହା ଗୋଟିଏ ସ୍ଥାନ । ଧାନର ପରିଭାଷା ଅନୁସାରେ ଦୃଷ୍ଟିର ଏକାଗ୍ରତାକୁ ପ୍ରତୀକ ରୂପେ ମାନି ନିଆ ଯାଇଛି ।

*** *** ***

ଦିବ୍ୟଂଦଦାମିତେ ଚକ୍ଷୁଃ ପଶ୍ୟମେ ଯୋଗମୈଶ୍ୱରମ୍ (୧୧/୮)

ଏକାଦଶ ଅଧ୍ୟାୟରେ ବିଶ୍ୱରୂପ ଦର୍ଶନର ଯେଉଁ ବର୍ଣ୍ଣନା ଦିଆଯାଇଛି ତାହା କେବଳ କଳ୍ପନା ପ୍ରସୁତ ସୁନ୍ଦର ରଚନାବଳୀ ନୁହେଁ । ତାହା ଜାଗ୍ରତ ଦୃଷ୍ଟିରୁ ଉଦ୍‌ଭବ ହୋଇଥିବା ଏକ ଆଧାତ୍ମିକ ଅନୁଭୂତି ।

ଏହି ଜାଗ୍ରତ-ଦୃଷ୍ଟି ଜ୍ଞାନ ଦୃଷ୍ଟି (୧୩/୧୪) ଠାରୁ ଭିନ୍ନ । ଜ୍ଞାନ ଦୃଷ୍ଟି ହେଲା ବିଚାର ପ୍ରଧାନ । ଏହା ହେଲା ଭାବ ପ୍ରଧାନ । ଏହାକୁ "ଧ୍ୟାନ ଦୃଷ୍ଟି" ମଧ୍ୟ କୁହାଯାଇପାରେ । କିନ୍ତୁ ଏହାକୁ ସାଧକର ଏକପ୍ରକାର "ଉପାର୍ଜନ" ଆଖ୍ୟା ଦେବାଠାରୁ "ଈଶ୍ୱରଙ୍କ ଦାନ' କହିବା ଉଚିତ ।

ଏଥିପାଇଁ ତାହାକୁ ସାଧକର ଧ୍ୟାନଦୃଷ୍ଟି ନକହି "ଈଶ୍ୱରଙ୍କ କୃପା ଦୃଷ୍ଟି' କହିବା ଠିକ୍ ହେବ ।

ଦିବ୍ୟଦୃଷ୍ଟିର ଅର୍ଥ ହେଲା ଈଶ୍ୱର ପ୍ରସାଦ ଲାଭ ଜାଗ୍ରତ-ଦୃଷ୍ଟି ଦର୍ଶିତଂ ଆତ୍ମ ଯୋଗାତ୍ (୧୧/୪୭)-ଆତ୍ମ ଯୋଗରେ କର୍ମଯୋଗ, ଧ୍ୟାନ ଯୋଗ, ଜ୍ଞାନଯୋଗ ଇତ୍ୟାଦି ସମସ୍ତ ଯୋଗର ସଂଗମ ହୁଏ ।

* * *

ଯେ ଭକ୍ତାସ୍ତ୍ୱାଂ ପର୍ଯ୍ୟୁପାସତେ (୧୨/୧) -ଭକ୍ତମାନେ ଉପାସନା କରିଥାନ୍ତି । ଉପାସନାର ଅର୍ଥ ହେଲା, ଉପାସ୍ୟ ବସ୍ତୁ ସହିତ ଏକାତ୍ମ ହୋଇ ସର୍ବଦା ଧ୍ୟାନ, ଚିନ୍ତନ ଓ ତନ୍ମୟ ହୋଇ ରହିବା ।

* * *

ମାଂଧ୍ୟାୟନ୍ତ ଉପାସତେ (୧୨/୬) -ଯେକୌଣସି ଶାରୀରିକ ସ୍ଥୁଳ କ୍ରିୟା ହେଉ ବା କାହିଁକି, ଧ୍ୟାନ ଚିନ୍ତନ ଆଦି ମାନସିକ ସହିତ ଯୋଡ଼ିଲେ ଯାଇ ସେଥିରେ ଭକ୍ତି ସଞ୍ଚାରିତ ହୁଏ । ତାହା ନହେଲେ ଏହା ଗୋଟିଏ ବ୍ୟବହାରିକ ଶକ୍ତି ହୋଇ ବାହାରିବ ଯାହାକି ସଂସାର ସାଗରରେ ବୁଡେଇ ଦେଇପାରିବ ।

* * *

ଧ୍ୟାନାତ୍ କର୍ମଫଳ ତ୍ୟାଗଃ (୧୨/୧୨)-ଧ୍ୟାନଠାରୁ କର୍ମଫଳ ତ୍ୟାଗକୁ ଶ୍ରେଷ୍ଠ କୁହାଯାଇଛି, କାରଣ ଧ୍ୟାନ ମଧ୍ୟରେ ସୂକ୍ଷ୍ମ ଭାବରେ ସ୍ୱାର୍ଥ ଜଡ଼ିତ ହୋଇ ରହିପାରେ ।

* * *

ଧ୍ୟାନେନାତ୍ମନି ପଶ୍ୟନ୍ତି କେଚିଦାତ୍ମାନଂ ଆତ୍ମନା ।
ଅନ୍ୟେ ସାଂଖ୍ୟେନ ଯୋଗେନ କର୍ମଯୋଗେନ ଚାପରେ ॥(୧୩/୨୪)

ଏଠାରେ ଆତ୍ମଦର୍ଶନର ଯଥାଯୋଗ୍ୟ ତିନୋଟି ପଦ୍ଧତି ବିଷୟରେ ବ୍ୟାଖ୍ୟା କରାଯାଇଛି । ଜୀବନ ଦୃଷ୍ଟିରେ ଯେଉଁ କର୍ମଯୋଗ ପ୍ରଧାନ ବୋଲି ବିବେଚିତ ହୋଇଛି, ଏଠାରେ ତାର ସ୍ଥାନ ଗୌଣ ହୋଇ ଯାଇଛି । ଏପରି ହେବା ସ୍ୱାଭାବିକ୍, କାରଣ ଏଠାରେ ପ୍ରତ୍ୟକ୍ଷ ଭାବରେ ଆତ୍ମଦର୍ଶନର ଉପାୟ ନେଇ ବିଚାର ବିଶ୍ଳେଷଣ କରାଯାଇଛି । ଧ୍ୟାନ ଯୋଗ ମାନସିକ ସ୍ତରରେ ସାଧନ ପଦ୍ଧତି ହୋଇଥିବାରୁ ତାହାକୁ ସ୍ଥାନ ଦିଆହୋଇଛି । ତତ୍ତ୍ୱ ବିଚାର (ସାଂଖ୍ୟ ଯୋଗ) ବୌଦ୍ଧିକ ସାଧନ ହୋଇଥିବାରୁ ସାକ୍ଷାତକାର ବ୍ୟାପାରରେ ତାହାର ଉପଯୋଗ କେତେକାଂଶରେ ଦୂରରୁ ହୋଇଥାଏ । କର୍ମଯୋଗର ବ୍ୟବହାର ଚିତ୍ତଶୁଦ୍ଧି ବାଟରେ ହୋଇଥାଏ । ସାଧକ ପକ୍ଷରେ ଏହି ତିନୋଟି ପଦ୍ଧତିର ଆବଶ୍ୟକତା ରହିଛି । ତଥାପି ଅବସ୍ଥାର ପ୍ରାଧାନ୍ୟ ଦୃଷ୍ଟିରୁ ସାଧନ ପଦ୍ଧତିର ଆବଶ୍ୟକତା ଅନୁଯାୟୀ ସାଧକର ପଥ କିପରି ହେବ ତାହା ଉଲ୍ଲେଖ କରାଯାଇଛି ।

* * *

ସତ୍ତ୍ୱଂ ସୁଖେ ସଞ୍ଜୟତି (୧୪/୯)-ଧ୍ୟାନ, ଅଧ୍ୟୟନ-ଚିନ୍ତନାଦି ପାଇଁ ସୁଖର ଆସକ୍ତି ସତ୍ତ୍ୱଗୁଣରେ ଜଡ଼ିତ ହୋଇ ରହିଥାଏ ।

*   *   *

ଯଦାଦିତ୍ୟଗତଂ ତେଜୋ ଜଗଦ୍‌ଭାସୟତେ ଖିଳମ୍ ।

ଯଦନ୍ଦ୍ରମସି ଯଚ୍ଚାଗ୍ନୌ ତତ୍ ତେଜୋ ବିଦ୍ଧି ମାମକମ୍ ।। (୧୫-୧୨)

ଧ୍ୟାନଯୋଗ ପ୍ରକ୍ରିୟାରେ ସୂର୍ଯ୍ୟ ଚନ୍ଦ୍ର ଏବଂ ଅଗ୍ନିକୁ ଜ୍ଞାନ ଭକ୍ତି ଏବଂ କର୍ମର ପ୍ରତୀକ ରୂପେ ଧରାଯାଏ ।

*   *   *

ଯତ୍ତଦଗ୍ରେ ବିଷମିବ ପରିଣାମେମୃତୋପମମ୍ ।

ତତ୍ ସୁଖଂ ସାତ୍ତ୍ୱିକଂ ପ୍ରୋକ୍ତଂ ଆତ୍ମବୁଦ୍ଧି ପ୍ରସାଦଜମ୍ ।। (୧୮/୩୭)

ସାତ୍ତ୍ୱିକ ସୁଖ ନିଷ୍କାମ କର୍ମ, ଧ୍ୟାନ, ବୈରାଗ୍ୟ ଏବଂ ତପ ଆଦି ଦ୍ୱାରା ପ୍ରାପ୍ତ ହୁଏ ବୋଲି ପ୍ରଥମେ କଷ୍ଟଦାୟକ ମନେ ହୋଇଥାଏ । କିନ୍ତୁ ଧୈର୍ଯ୍ୟ ଏବଂ ଉତ୍ସାହ ରଖି କାର୍ଯ୍ୟ କଲେ ଅନୁଭବର ଅମୃତ ଦ୍ୱାରା ତାହା ମଧୁର ହୋଇ ପାରିବ ।

ବିବିକ୍ତ ସେବୀ ଲଘ୍ୱାଶୀ ଯତ୍‌ବାକ୍ କାୟମାନସଃ ।

ଧ୍ୟାନଯୋଗ ପରୋନିତ୍ୟଂ ବୈରାଗ୍ୟଂ ସମୁପାଶ୍ରିତଃ ।। (୧୮/୫୨)

ଚିତ୍ତ୍ୟ, ବାକ୍ୟ ଏବଂ ଶରୀର-ଏହି ତିନୋଟି ଦ୍ୱାରା ଦେହ ନିର୍ବାହ ହୁଏ । ଏଗୁଡ଼ିକୁ ଧ୍ୟାନ ଯୋଗ ପ୍ରକ୍ରିୟାରେ ଯେତେ ଦୂର ସଂଭବ ବ୍ୟବହାର କରାଯିବା ଉଚିତ ।

ବୈରାଗ୍ୟ : ଦେଖିବା ଏବଂ ନ ଦେଖିବା ସମସ୍ତ ବିଷୟରେ ବିତୃଷ୍ଣାଭାବ ରଖିବା ଏବଂ ନିଜକୁ ଆୟତ୍ତରେ ରଖିବା ଧ୍ୟାନ ଯୋଗର ସହାୟକ ସାଧନ ।

ଗ) ବେଦୋପନିଷଦ୍

(ଅ) ବେଦ ଧ୍ୟାନ ପ୍ରଧାନ

ବେଦରେ ବର୍ଣ୍ଣିତ ଦେବତାମାନଙ୍କର ସ୍ୱରୂପ ବେଦ-ସ୍ୱାଧ୍ୟାୟମୂଳକ ଧ୍ୟାନ ସମାଧି ଦ୍ୱାରା ସାକ୍ଷାତକାର ହୁଏ ।

ବେଦ ଧ୍ୟାନ ଯୋଗ ପ୍ରଧାନ । ସେଥିରେ ଭିନ୍ନ ଭିନ୍ନ ଦେବତାମାନଙ୍କୁ ସ୍ୱୀକାର କରାଯାଇଅଛି । ଏହି ସବୁ ଦେବତାମାନେ ପରମାତ୍ମାଙ୍କର ଗୋଟିଏ ଗୋଟିଏ ଅଂଶରୂପେ ବିଦ୍ୟମାନ । ସେମାନଙ୍କର ଧ୍ୟାନ କରୁକରୁ ଅବଶେଷରେ ସେମାନଙ୍କ ସହିତ ସାକ୍ଷାତ୍‌କାର ମଧ୍ୟ ହୋଇଥାଏ ।

ବେଦରେ ନାନା ପ୍ରକାର ଦେବତାମାନଙ୍କର ବର୍ଣ୍ଣନା କରାଯାଇଥିଲେ ମଧ୍ୟ ସେମାନେ ସମସ୍ତେ ଏକ ପରାମାତ୍ମାଙ୍କର ଅଂଶ ଅଥବା ତାଙ୍କର ଐଶ୍ୱର୍ଯ୍ୟପୂର୍ଣ୍ଣ ଗୌଣ ଗୁଣ ନିର୍ଦ୍ଦେଶକ ବୋଲି ମନେ କରାଯାଏ । ପରମାତ୍ମା ଅନନ୍ତ ଗୁଣର ଅଧିକାରୀ ହେବା ଫଳରେ ସାଧକ ନିଜ ମନର ଶୁଦ୍ଧତା ଅର୍ଜନକରି ନିଜର ଉପଯୁକ୍ତ ବିଶିଷ୍ଟ ଗୁଣକୁ ଅନୁଶୀଳନ ପାଇଁ ବାଛିନିଏ । ଏହି ଗୁଣ ତାଙ୍କ ନିକଟରେ ଦେବତାର ସ୍ଥାନ ଲାଭ କରେ । ଏହିପରି ଭାବରେ ବିଭିନ୍ନ ଦେବତା ସାଧକର ବିକାଶପାଇଁ ବେଦରେ ବର୍ଣ୍ଣିତ ହୋଇଛନ୍ତି । ଧ୍ୟାନ ସମାଧି ଦ୍ୱାରା ବେଦକୁ ଅଧ୍ୟୟନ କରି ଏହି ଦେବତାମାନଙ୍କର ସ୍ୱରୂପର ସାକ୍ଷାତ୍‌କାର ହୋଇଥାଏ ।

ସ୍ୱାଧ୍ୟାୟାଂ ଇଷ୍ଟ ଦେବତା-ସଂପ୍ରୟୋଗଃ-ଏହି ଯୋଗ ସୂତ୍ର ମଧ୍ୟ ଏହି ବିଷୟର ସୂଚନା ଦିଏ ।

ବେଦର ଦୃଷ୍ଟି  ସାମଗ୍ରିକ ଅଟେ । ଏହା ଗୋଟିଏ ପରିପୂର୍ଣ୍ଣ ପରିକଳ୍ପନା । ବେଦରେ କର୍ମଯୋଗ, ଧ୍ୟାନଯୋଗ, ଭକ୍ତିଯୋଗ ଥିବାର ଜଣାଯାଏ-ଜ୍ଞାନ ଯୋଗ ତ ରହିଛି । କିନ୍ତୁ ବେଦ ଉପରେ ଗୋଟିଏ ଆବରଣ (କବଚ) ଅଛି । ଏହାକୁ ଅପସାରଣ କରି ନଦେଖିଲେ ତାହାର ଗୂଢ଼ଭାବ ଦୃଷ୍ଟି ଗୋଚର ହୁଏ ନାହିଁ ।

ବେଦରେ ଯେଉଁ ଧ୍ୟାନ ଉପାସନା ଆଦି ଯୋଗର ଉଲ୍ଲେଖ ରହିଛି ହିରଣ୍ୟଗର୍ଭ ହେଉଛନ୍ତି ତାର ପ୍ରଣେତା । ଇନ୍ଦ୍ର,ମିତ୍ର, ବରୁଣ ଆଦି ଭିନ୍ନ ଭିନ୍ନ ଦେବତା ବିଶେଷ ପ୍ରକାର ଧ୍ୟାନର ପ୍ରତୀକ । ବେଦର ଉପଲବ୍ଧି, ପ୍ରସ୍ତାବନା, ଚିନ୍ତନ ଇତ୍ୟାଦି ସବୁ କିଛି ଅତି ସୂକ୍ଷ୍ମ ।

*          *          *

ବେଦର ପ୍ରାର୍ଥନା-ତୁମର ଅନେକ ପ୍ରକାରର ଧ୍ୟାନଶକ୍ତି ଦ୍ୱାରା "ଚିତ୍ରୟା ଧିୟା"-ତୁମେ ଆମକୁ ଉତ୍ତମ ଶିକ୍ଷାଦାନ କର ।

*          *          *

ବ୍ରାହ୍ମଣ ନିଜର ମାନସିକ ଶକ୍ତି ହେତୁ ଧ୍ୟାନଯୁକ୍ତ ହୁଅନ୍ତି । ବିପ୍ରାସୌନ ମନ୍‌ମଭିଃ ସ୍ୱାଧ୍ୟଃ ।

*          *          *

ଗୃତ୍ସମଦ ଋଷି ପ୍ରାର୍ଥନା କରିଥିଲେ- ମା ତନ୍ତୁଶ୍ଛେଦି ବୟତଃ ଧିୟଂ ମେ- ଯେତେବେଳେ ମୁଁ ଧ୍ୟାନ କର୍ମରେ ଲିପ୍ତ ଥିବି ସେତେବେଳେ ତାର ଖିଅ ଯେପରି ଛିଣ୍ଡି ନଯିବ ।

*          *          *

ଯୋ ବିଶ୍ୱାଭି ବିପଶ୍ୟତି ଭୁବନା ସଂ ଚ ପଶ୍ୟତି
ସ ନଃ, ପର୍ଷଦତି ଦ୍ୱିଷଃ ।

ବୌଦ୍ଧ ଧର୍ମାବଲମ୍ବୀମାନେ ବିଶ୍ୱକୁ ଆଖି ଆଗରେ ରଖି-ବିପଶ୍ୟନା ସାଧନା କରୁଥିଲେ । ଭଗବାନ, ଏଠିରେ ଅଛନ୍ତି, ସେଇଠିରେ ଅଛନ୍ତି, ଏହି ବସ୍ତୁରେ ଅଛନ୍ତି-ଏହିପରି ଭାବରେ ସେ ପ୍ରତ୍ୟେକ ମଧ୍ୟରେ ଅଛନ୍ତି, ସେ ଭିନ୍ନ ଭିନ୍ନ ଭାବରେ ତିନି ପ୍ରକାର ବସ୍ତୁରେ ଅଛନ୍ତି । "ସଂପଶ୍ୟନା" ର ବିଷୟ ମଧ୍ୟ କୁହାଯାଇଛି । ଉଭୟର ମିଳନରେ ପରିପୂର୍ଣ୍ଣତା ଆସିଥାଏ । ଅଭିବିପଶ୍ୟନା ଏବଂ ଅଭିସଂପଶ୍ୟନା-ଏହି ଦୁଇପ୍ରକାର ସାଧନାକୁ ସାଧକ ବିଶ୍ୱାଭିମୁଖୀ ହୋଇ କରିଥାନ୍ତି । ଯେଉଁ ବ୍ୟକ୍ତି ବିଶ୍ୱାଭିମୁଖି ହୋଇ ଧ୍ୟାନ କରିଥାନ୍ତି ସେ ସବୁ ପ୍ରକାର ବିଦ୍ୱେଷ ଅତିକ୍ରମ କରି ଆଗେଇ ଯାଆନ୍ତି ।

(ଆ) ସତ୍ୟ ଧର୍ମାୟ ଦୃଷ୍ଟୟେ

* ସତ୍ୟର ଦର୍ଶନ ପାଇଁ ସତ୍ୟର ପ୍ରାର୍ଥନା ।

* ସୂର୍ଯ୍ୟ ବାୟୁ ଅଗ୍ନି - ଏହି ତିନିପ୍ରକାର ପ୍ରତୀକ ସାହାଯ୍ୟରେ ପରମେଶ୍ୱରଙ୍କ ଧ୍ୟାନ ।

* ପ୍ରାର୍ଥନା, ଦର୍ଶନ ଏବଂ ଜ୍ଞାନ ମିଶି ଧ୍ୟାନ ପୂର୍ଣ୍ଣ ହୁଏ ।

* ଜୀବନ ଚୈତନ୍ୟମୟ ପରମ ତତ୍ୱରେ ମିଶିଯାଉ ।

* ଅଗ୍ନି ସାକ୍ଷାତରେ ଚାରିତ୍ର୍ୟର ପ୍ରାର୍ଥନା

ହିରଣ୍ମୟେଣ ପାତ୍ରେଣ ସତ୍ୟସ୍ୟ ଅପିହିତଂ ମୁଖମ୍
ତତ୍ତ୍ୱ ପୂଷନ୍ ଅପ୍ରାବୃଣୁ ସତ୍ୟଧର୍ମାୟ ଦୃଷ୍ଟୟେ ॥

ସୁବର୍ଣ୍ଣମୟ ପାତ୍ର ଦ୍ୱାରା ସତ୍ୟର ମୁଖ ଢ଼ଙ୍କା ହୋଇ ରହିଛି । ହେ ଈଶ୍ୱର ପାଳନ କର୍ତ୍ତା ପ୍ରଭୁ ! ମୋ ପରି ସତ୍ୟଧର୍ମର ଉପାସକ ପାଇଁ ସେହି ଆବରଣ ଉନ୍ମୋଚନ କର ।

ଆତ୍ମା ହେଉଛି ସତ୍ୟକାମ ଏବଂ ସତ୍ୟସଂକଳ୍ପ । ଆତ୍ମା ଯଥାର୍ଥରେ ସତ୍ୟ ସ୍ୱରୂପ ଏବଂ ଶିବସ୍ୱରୂପ । ସତ୍ୟ ଉପରେ ଥିବା ସୁବର୍ଣ୍ଣମୟ ଆବରଣକୁ ଅପସାରିତ କରିବାପାଇଁ ଏଠାରେ ବିଶ୍ୱର ପାଳନକର୍ତ୍ତା ପରମେଶ୍ୱରଙ୍କ ନିକଟରେ ପ୍ରାର୍ଥନା କରାଯାଇଛି । ଏହି ପରମେଶ୍ୱର ସତ୍ୟଠାରୁ ଭିନ୍ନ ନୁହନ୍ତି । ସେ ହିଁ ସତ୍ୟ । ସତ୍ୟର ଦର୍ଶନ କରିବା ପାଇଁ ଏଠାରେ ସତ୍ୟଠାରେ ପ୍ରାର୍ଥନା କରାଯାଇଅଛି ।

ସତ୍ୟ ମଧ୍ୟରେ ନୀତିଧର୍ମର ସାର ଆସି ଯାଇଥାଏ, କାରଣ ସତ୍ୟ ହେଉଛି ନୀତି ଧର୍ମର ଆଧାର । ଏହାଛଡ଼ା ସତ୍ୟ ଗୋଟିଏ ସ୍ୱତନ୍ତ୍ର ଧର୍ମ ଅଟେ । ସେ ହେଉଛନ୍ତି ପ୍ରଥମ ଏବଂ ସେ ହେଉଛନ୍ତି ସତ୍ୟ । ସେ ହେଉଛନ୍ତି ପରମ ଏବଂ ସେ ହେଉଛନ୍ତି ପୂର୍ଣ୍ଣ ।

ଦର୍ଶନରପାଇଁ ସତ୍ୟ ଆତ୍ମା ହୋଇ ଥାଇ,
ପ୍ରାର୍ଥନାର ପାଇଁ ସତ୍ୟ ଈଶ୍ୱର ହୁଅଇ ।
ଆହରଣ ପାଇଁ ସତ୍ୟ ଧର୍ମେ ଦିଶୁଥାଇ ।

ଏହି ମନ୍ତ୍ରର ପ୍ରାର୍ଥନା ବୈଦିକ ଧର୍ମର ସାର୍ବଭୌମ ପ୍ରାର୍ଥନା । ତହିଁରୁ ଆମକୁ ପରବର୍ତ୍ତୀ ତିନୋଟି ମନ୍ତ୍ରର ଧ୍ୟାନତ୍ରୟୀ ସଂପାଦନ କରିବାକୁ ହେବ ।

ପୂଷନ୍ ଏକ ଋଷେଯମ ସୂର୍ଯ୍ୟ ପ୍ରଜାପତ୍ୟ ବ୍ୟୂହରଶ୍ମିନ୍ ସମୂହ,
ତେଜୋୟତ୍ ତେରୂପଂ କଲ୍ୟାଣତମଂ ତତ୍ତେ ପଶ୍ୟାମି,
ୟୋହସାବସୌ ପୁରୁଷଃ ସୋହହମସ୍ମି ।

ତୁମେହିଁ ଏହି ବିଶ୍ୱର ପାଳନକର୍ତ୍ତା, ଏବଂ ତୁମେହିଁ ଏକମାତ୍ର ନିରୀକ୍ଷକ । ତୁମେ ନିୟମକର୍ତ୍ତା ଏବଂ ତୁମେ ହିଁ ଉତ୍ତମ ପ୍ରବର୍ତ୍ତକ କର୍ତ୍ତା, ତୁମେ ସମସ୍ତଙ୍କୁ ପ୍ରଜାଙ୍କପରି ପାଳନ କର । ତୁମର ଏହି ପାଳନ କରୁଥିବା କିରଣ ସମୂହକୁ ପ୍ରକାଶ କରି ଏବଂ ଏକତ୍ରିତ କରି ଦେଖାଅ । ତୁମର ଏହି ତେଜୋମୟ ଏବଂ ପରମ କଲ୍ୟାଣମୟ ରୂପ ମୁଁ ବର୍ତ୍ତମାନ ଦେଖିପାରୁଛି । ସେ ଯେଉଁ ପରାତ୍ପର ପୁରୁଷ, ସେ ହେଉଛି ମୁଁ ।

ଏଠାରେ ସୂର୍ଯ୍ୟଙ୍କୁ ପ୍ରତୀକ କରି ଈଶ୍ୱରଙ୍କ ଧ୍ୟାନ କରିବାକୁ ହେବ । ଯେ ଅନ୍ତର୍ଯ୍ୟାମୀ ସୂର୍ଯ୍ୟଙ୍କ ପ୍ରେରକ ସେ ମୋର ବୁଦ୍ଧିର ମଧ୍ୟ ପ୍ରେରକ । ତାହାର ସଂଜ୍ଞା ହେଉଛି ସତ୍ୟ । ସୂର୍ଯ୍ୟ ଏବଂ ବୁଦ୍ଧିକୁ ସୁବର୍ଣ୍ଣମୟ ଢ଼ାଙ୍କୁଣୀ ବୋଲି ମନେକର ।

ମନ୍ତ୍ରର ପ୍ରଥମ ଦୁଇଟି ପଂକ୍ତିରେ ପ୍ରାର୍ଥନା ଶେଷ ହୋଇଛି । ତାପରେ ଭକ୍ତର ପ୍ରାର୍ଥନା ଶୁଣି ଈଶ୍ୱର ତାକୁ ଦର୍ଶନ ଦିଅନ୍ତି । ଏହିପରି ଆମକୁ ମାନିନେବାକୁ ହେବ । ତୃତୀୟ ପଂକ୍ତିରେ ଏହି ଦର୍ଶନର ବର୍ଣ୍ଣନା ରହିଛି । ଚତୁର୍ଥ ପଂକ୍ତିରେ ଦର୍ଶନଠାରୁ ପାଇବାର ଉପଲବ୍ଧି ବର୍ଣ୍ଣନା ହୋଇଛି ।

ଏହି ମନ୍ତ୍ରରେ ପରିପୂର୍ଣ୍ଣ ଧ୍ୟାନକୁ ସମ୍ମୁଖରେ ଉପସ୍ଥାପିତ କରାଯାଇଛି । ପ୍ରାର୍ଥନା, ଦର୍ଶନ ଏବଂ ବିଶ୍ୱାସ ମିଳିତ ହେଲେ ଧ୍ୟାନ ପରିପୂର୍ଣ୍ଣତା ଲାଭ କରେ । ଯେ ପର୍ଯ୍ୟନ୍ତ ଦର୍ଶନ ନ ହୋଇଛି ସେପର୍ଯ୍ୟନ୍ତ ଦର୍ଶନ ସ୍ଥାନରେ ଭାବନାକୁ ଏବଂ ବିଶ୍ୱାସ ସ୍ଥାନରେ ସନ୍ତୋଷକୁ ରଖି ଧ୍ୟାନକୁ ପୂର୍ଣ୍ଣ କରିବାକୁ ହେବ ।

ବ୍ୟୂହ ସମୂହ - ବିଶ୍ଲେଷଣ ଏବଂ ସଂଶ୍ଲେଷଣର ମିଳନ ହେଲେ ଯାଇ ଯେକୌଣସି ପୂର୍ଣ୍ଣତା ଲାଭ କରେ । କିନ୍ତୁ ଭୌତିକ ଚିନ୍ତନ ବେଶୀ ଭାଗ ବିଶ୍ଲେଷଣ ପ୍ରଧାନ ଏବଂ ଆଧ୍ୟାତ୍ମିକ ଚିନ୍ତନ ସଂଶ୍ଲେଷଣ ପ୍ରଧାନ ।

ଶୋଷଣ+ନିରୀକ୍ଷଣ+ନିୟମକ+ପ୍ରବର୍ତ୍ତନ+ପାଳନ - ଏହା ହେଉଛି ଈଶ୍ୱର ତତ୍ତ୍ୱର ବିଶ୍ଲେଷଣ । ତାର ସଂଶ୍ଲେଷଣ ହେଉଛି ପରମ - କଲ୍ୟାଣ ।

ଈଶ୍ୱରଙ୍କୁ ଅବାଙ୍ଗ -ଅ-ସ୍ପର୍ଶ-ଅରୂପ ଇତ୍ୟାଦି ନାନା ଭାବରେ ଅବ୍ୟକ୍ତ ବୋଲି କୁହାଯାଇଛି । ତାହାହେଲେ ତାଙ୍କର ରୂପ ଦର୍ଶନ କିପରି ହେବ, ଏଠାରେ ଏହି ପ୍ରଶ୍ନ ଉଠିପାରେ । ଏ ସଂପର୍କରେ ବ୍ରହ୍ମସୂତ୍ର ଏ ପ୍ରକାର ଉତ୍ତର ଦେଇଛନ୍ତି -

ଅପି ଚ ସଂରାଧନେ ପ୍ରତ୍ୟକ୍ଷାନୁମାନାଭ୍ୟାମ୍ । ସୂତ୍ରର ଗୋଟିଏ ଅର୍ଥ ହେଲା - ଶ୍ରୁତି ଏବଂ ସ୍ମୃତି ସମୂହର ସିଦ୍ଧାନ୍ତ ହେଉଛି ଯେ ଧ୍ୟାନ ଅବସ୍ଥାରେ ଈଶ୍ୱରଙ୍କର ଦର୍ଶନ ମଧ୍ୟ ହୋଇପାରେ। ସୂତ୍ରର ଅନ୍ୟ ଅର୍ଥ ହେଲା - ଈଶ୍ୱରଙ୍କର କଥା ଶୁଣିବା, ଈଶ୍ୱରଙ୍କର ରୂପ ଦେଖିବା, ଈଶ୍ୱରଙ୍କର ସ୍ପର୍ଶ ଅନୁଭବ କରିବା ଇତ୍ୟାଦି ସଗୁଣ ସାକ୍ଷାତକାର ତନ୍ମୟ ଅବସ୍ଥାରେ କୌଣସି କୌଣସି ଭକ୍ତ ପ୍ରତ୍ୟକ୍ଷ ଭାବରେ ଅନୁଭବ କରିଛନ୍ତି ଏବଂ (ତର୍କର ଉର୍ଦ୍ଧରେ ଥାଇ) ଅନୁମାନ ଦ୍ୱାରା ଏହାର ଯୁକ୍ତି ଯୁକ୍ତତା ମଧ୍ୟ ସ୍ୱୀକୃତି ଲାଭ କରିଛି ।

ବେଦାନ୍ତର ଗୋଟିଏ ବିଶେଷ ଯୁକ୍ତି ହେଉଛି ଯେ, ଏହି ପ୍ରକାର ପରସ୍ପର ବିରୋଧି ଦ୍ୱନ୍ଦର ଉତ୍ତମ ସହାବସ୍ଥାନ ସଂଭବପର । ଏହି ପ୍ରକାର ବିଶେଷ ବାଦାନୁବାଦର ଶାସ୍ତ୍ରୀୟ ନାମ ବିତର୍କ । ଇଂରାଜୀରେ ଏହାକୁ ଡାଇଲେକ୍‌ଟିକ୍‌ସ୍ କୁହାଯାଏ । ଯୋଗଶାସ୍ତ୍ର କହିଛି ଯେ ଏହି ପ୍ରକାର ତର୍କର ଉର୍ଦ୍ଧ୍ୱରେ ଥାଇ ବିଚାର ପ୍ରଣାଳୀର ସାହାଯ୍ୟରେ ପାର୍ଥିବ ବିଷୟରେ ଜ୍ଞାନଚର୍ଚ୍ଚା ବଜାୟ ରଖି ଯେଉଁ ବ୍ୟକ୍ତି ନିଜର ଆତ୍ମାକୁ ଏଥିରେ ଲୀନ କରିପାରେ ସେ ଆତ୍ମଜ୍ଞାନ ଲାଭ କରେ (ଯୋଗସୂତ୍ର ୧.୧୭)

ଯୋଽହସୌ ଅସୌ ପୁରୁଷଃ ସୋଽହଂ ଅସ୍ମି ।

ଯାହାକୁ "ଅସୌ ପୁରୁଷଃ" ସେହିପୁରୁଷ କୁହାଯାଇଛି । ସେ ହେଉଛି ମୁଁ । ସେହି ପୁରୁଷ, ଅର୍ଥାତ୍, ପରଲୋକରେ ଯେ ପରାତ୍ପର ପୁରୁଷ ଯାହାର ଅର୍ଥ ପରମେଶ୍ୱର । ସେହି ଯେ ସେପାରିର ବିଷୟ, ସେ ହିଁ ସଂପୂର୍ଣ୍ଣ ଭାବେ ଏଲୋକର ବସ୍ତୁ ଅର୍ଥାତ୍ ମୁଁ ହିଁ ସେହି ପୁରୁଷ ।

ବିଶ୍ଳେଷଣ ଦ୍ୱାରା ପ୍ରାପ୍ତ ପୋଷଣାଦି ଯେଉଁ ପାଞ୍ଚ ପ୍ରକାରର ରଶ୍ମି ପ୍ରକାଶ ଲାଭ କରେ - ଏହାହିଁ ହେଲା ଚିନ୍ତନର ପ୍ରାଥମିକ ଭୂମିକା । ସଂଶ୍ଳେଷଣ ଦ୍ୱାରା ପ୍ରାପ୍ତ ଯେଉଁ କଲ୍ୟାଣତମ ତେଜ-ତାହାକୁ ହିଁ ଦର୍ଶନର ଦ୍ୱିତୀୟ ଭୂମିକା ବୋଲି ଧରାଯାଏ । ପୁଣି ତାପରେ ମଧ୍ୟ ଯୋଽହସୌ ଅସୌ ପୁରୁଷଃ ସୋଽହଂ ଅସ୍ମି - ଏହା ଏକ ରସ ପ୍ରାପ୍ତିର ତୃତୀୟସ୍ତର ।

ସୋଽହମ୍ - ଏହା କଣ ଜପମନ୍ତ୍ର ନା ଏହା ଉପଲବ୍ଧି ? ଏହାକୁ ଏଠାରେ ଅନୁଭବ ରୂପରେ ପରବର୍ତ୍ତି ସ୍ତରରେ ସ୍ଥାନ ଦିଆଯାଇଛି । କିନ୍ତୁ ସାଧକ ପାଖରେ ତାହାହିଁ ଜପ । ପ୍ରାଣାୟାମ ସହିତ ଏହି ଜପ କରିବାକୁ ହେବ । କିନ୍ତୁ ଅନ୍ୟ ସମୟରେ ମଧ୍ୟ ସାଧାରଣ ଶ୍ୱାସ-ପ୍ରଶ୍ୱାସର ଗତି ସହିତ ଏହି ଜପ କରିବାରେ କୌଣସି ବାଧାନାହିଁ । ଯୋଗ ଶାସ୍ତ୍ରରେ ଏହି ପଦ୍ଧତି ନେଇ ବିଶଦ୍ ଆଲୋଚନା ହୋଇଅଛି । ଆତ୍ମୋପଲବ୍ଧି ପରେ ଜପରୂପ ଲୁପ୍ତ ହୋଇଯାଇ ଏହା ଅଖଣ୍ଡ ଜପରୂପରେ ପରିଣତ ହୁଏ । ଏହାକୁ ଅଜପା ନାମ ଦିଆ ହୋଇଛି ।

ସୋଽହମ୍ ଶବ୍ଦ ଦ୍ୱାରା କି ପ୍ରକାରର ଐକ୍ୟ ସୂଚିତ ହୋଇଛି ? ଏହାକୁ କଣ ପ୍ରେମାତିଶୟ ରୂପ କୁହାଯିବ, ନା ଅଙ୍ଗାଙ୍ଗୀଭାବରୂପ, ନା ଅଙ୍ଗାଙ୍ଗୀ ଗୁଣ ନା ସାଧର୍ମ୍ୟ ରୂପ ନା ତାଦାତ୍ମ୍ୟ ରୂପ କୁହାଯିବ ? ଯାହାର ଯେଉଁ ପ୍ରକାର କଳ୍ପନା ତାର ସେହିପ୍ରକାର ଅନୁଭବ ହେବ । ଅନୁଭବରୁ ହିଁ ଗ୍ରହଣ କରିବାକୁ ହେବ ।

ବାୟୁରନିଳଂ ଅମୃତଂ ଅଥେଦଂ ଭସ୍ମାନ୍ତଂ ଶରୀରମ୍ ।
ଓଁ କ୍ରତୋ ସ୍ମର, କୃତଂ ସ୍ମର କ୍ରତୋସ୍ମର କୃତଂସ୍ମର ॥

ଏହି ପ୍ରାଣ ଏହି ଚୈତନ୍ୟମୟ ଅମୃତ-ତତ୍ୱରେ ଲୀନ ହୋଇଯିବ । ଆଉ ତାପରେ ଏହି ଦେହ ଭସ୍ମରେ ପରିଣତ ହେବ । ହେ ଦୃଢ଼ ସଂକଳ୍ପବଦ୍ଧ ଜୀବ ଈଶ୍ୱରଙ୍କ ନାମ ନେଇ ତାଙ୍କୁ ସ୍ମରଣ କର । ତାଙ୍କ କାର୍ଯ୍ୟ ସ୍ମରଣ କର । ହେ (ମୋର) ଜୀବ (ନିଜର ସଂକଳ୍ପ ତ୍ୟାଗକରି) ତାଙ୍କ କୃତି ସ୍ମରଣ କର ।

ଏଠାରେ ବାୟୁ-ପ୍ରତୀକ ରୂପେ ଈଶ୍ୱରଙ୍କ ଧ୍ୟାନ କରିବାକୁ ହେବ । ଯେଉଁ ଅନ୍ତର୍ଯ୍ୟାମୀ ବାୟୁକୁ ଚାଳନା କରନ୍ତି, ସେ ହିଁ ମୋର ପ୍ରାଣର ପରିଚାଳକ । ତାହାରି ନାମ ସତ୍ୟ । ବାୟୁ ଏବଂ ପ୍ରାଣକୁ ସୁବର୍ଣ୍ଣମୟ ଢ଼ାଙ୍କୁଣୀ ରୂପେ ବୁଝିବାକୁ ହେବ ।

ଏହାର ଗୋଟିଏ ଅର୍ଥ ହେଉଛି — ବାୟୁ ଅର୍ଥାତ୍ ଦେହ ମଧ୍ୟରୁ ବାୟୁ ବା ପ୍ରାଣ, ଯାହା ଚଞ୍ଚଳ-ପ୍ରବାହ ଅନିଳ ମଧ୍ୟରେ ପ୍ରବାହିତ ହେଉଛି, ଯାହାକୁ ବ୍ରହ୍ମାଣ୍ଡଗତ ବାୟୁ ଏହି ଆଖ୍ୟା ଦିଆଯାଏ, ସେହିଥିରେ ବିଲୀନ ହୁଏ । ଦେହର ସମସ୍ତ ତତ୍ୱ ଏହି ଭାବରେ ତାର ମୂଳଗତ ଦେବତା ମାନଙ୍କ ସହିତ ବିଳୀନ ହୋଇଯିବ । ବ୍ୟାପକ ଭାବରେ ଏହାର ଅର୍ଥ ଏହିପରି ଭାବରେ କରା ହୋଇଥାଏ ।

ବାୟୁରନିଳମ୍ ର ଦ୍ୱିତୀୟ ଅର୍ଥ ଏପରି କରାଯାଏ -- ଜୀବ ଚୈତନ୍ୟମୟ ପରମାତ୍ମ-ତତ୍ୱରେ ଲୀନ ହୋଇଯାଏ । ଜୀବ ଉପାଧି ଯୁକ୍ତ ହୋଇ ବା ନିଜର ବାସନା ଅନୁଯାୟୀ ଗୋଟିଏ ଦେହରୁ ଅନ୍ୟ ଦେହ ପ୍ରାପ୍ତି ପାଇଁ ଯାଇଥାଏ । ଜୀବ ଏହି ବାଟରେ ନ ଯାଇ, ନିରୁପାଧିକ ହୋଇଥାଉ, ଏଠାରେ ଏହିପରି ଅଭିଳାଷ ପ୍ରକାଶ କରାହୋଇଛି ।

ଅନ୍ତିମ ସମୟର ସାଧନା ସମୟରେ ଈଶ୍ୱର ସ୍ମରଣ ପାଇଁ ଏକ ଉପାୟ ରୂପରେ ପ୍ରାଣବାୟୁ ନିରୋଧ କରିବାର ସାଧନା ବିଷୟ ଯୋଗଶାସ୍ତ୍ରରେ ଆଲୋଚନା କରାଯାଇଛି । ଗୀତାରେ ଅଷ୍ଟମ ଅଧ୍ୟାୟରେ ମଧ୍ୟ ସଂକ୍ଷିପ୍ତ ଭାବରେ ଏହି ବିଷୟଟି ରହିଛି । କୁହାଯାଇ ପାରେ ଯେ. ବାୟୁରନିଳମ୍ ଅମୃତମ୍ ଏହି ବାକ୍ୟ ଦ୍ୱାରା ତାହାକୁ ସୂଚିତ କରାହୋଇଛି । ଏହା ହେଉଛି ଏହି ବାକ୍ୟର ତୃତୀୟ ଅର୍ଥ । ଓଁ (ପ୍ରଣବ ମନ୍ତ୍ର) ଈଶ୍ୱରଙ୍କ ନାମ । ତିନୋଟି ବେଦ ମନ୍ଥନ କରିବା ପରେ ତହିଁରୁ ଏହି ସାର ନିଷ୍କାସିତ ହୋଇଛି । ଯୋଗ ସୂତ୍ରରେ ଜପ ପାଇଁ ଓଁକାର ମନ୍ତ୍ରଟି ଉଲ୍ଲେଖ କରା ହୋଇଛି ।

ଅଗ୍ନେନୟ ସୁପଥା ରାୟେ ଅସ୍ମାନ୍ ବିଶ୍ୱାନି ଦେବ ବୟୁନାନୀ ବିଦ୍ୱାନ୍ ।
ଯୁଯୋଧ୍ୟସ୍ମତ୍ ଜୁହୁରାଣମେନଃ ଭୂୟିଷ୍ଠାଂତେ ନାମ ଉକ୍ତିଂ ବିଧେମ ॥ (ମନ୍ତ୍ର ୧୮)

ହେ ମାର୍ଗ ଦର୍ଶନ ଦୀପ୍ତିମାନ୍ ପ୍ରଭୁ, ଯେଉଁ ସବୁ ତତ୍ୱ ବିଶ୍ୱ ରଚନାରେ ଜଡ଼ିତ ଅଛନ୍ତି ସେ ସବୁ ବିଷୟ ତୁମେ ଜାଣ । ଆମ୍ଭମାନଙ୍କୁ ସହଜ ବାଟରେ ଏହି ପରମ ଆନନ୍ଦ ଆଡ଼କୁ ନେଇ ଯାଅ । ଯେଉଁ ପାପ ବକ୍ରଗତି କରେ ଆମକୁ ତାଠାରୁ ଦୂରରେ ରଖ । ଆମେ ନମ୍ର ଭାବରେ ତୁମଠାରେ ବାରଂବାର ପ୍ରଣାମ କରି ବିନତୀ କରୁଅଛୁ ।

ଏଠାରେ ଅଗ୍ନିକୁ ଈଶ୍ୱରଙ୍କ ରୂପରେ ଧ୍ୟାନ କରିବାକୁ ହେବ । ଯେଉଁ ଅନ୍ତର୍ଯ୍ୟାମୀ ଅଗ୍ନିର ସୃଷ୍ଟିକର୍ତ୍ତା ସେ ଆମର ଶରୀରର ମଧ୍ୟ ସୃଷ୍ଟିକର୍ତ୍ତା । ସତ୍ୟ ହେଉଛି ତାର ସଂଜ୍ଞା । ଅଗ୍ନି ଏବଂ ଶରୀରକୁ ସୁବର୍ଣ୍ଣମୟ ଢ଼ାଙ୍କୁଣି ରୂପେ ଜାଣିବାକୁ ହେବ ।

ଜୀବନର ସମସ୍ତ ଗୁରୁତ୍ୱପୂର୍ଣ୍ଣ କାର୍ଯ୍ୟକୁ ଅଗ୍ନିସାକ୍ଷୀ କରି ସଂପାଦନ କରିବା ବୈଦିକ ରୀତି । ସେହି ଅନୁସାରେ ଏହି ମନ୍ତ୍ର ଅଗ୍ନି ଦେବଙ୍କୁ ସାକ୍ଷୀ ରଖି ଚରିତ୍ର ଲାଭ ପାଇଁ ପ୍ରାର୍ଥନା କରା ହୋଇଛି । ଅର୍ଥାତ୍ ଏହା ଅଗ୍ନିସାକ୍ଷୀ ଚାରିତ୍ର୍ୟ ରକ୍ଷା କରିବାର ପ୍ରତିଜ୍ଞା ।

ଈଶ୍ୱର ଦର୍ଶନ (ମନ୍ତ୍ର ୧୬) ଏବଂ ଈଶ୍ୱର ପ୍ରବେଶ (ମନ୍ତ୍ର ୧୭) ଏସବୁ ବସ୍ତୁ ଯଦିଓ ବ୍ୟକ୍ତିତ୍ୱର ବିଲୋପ ସାଧନ କରେ, ତଥା ସେଗୁଡ଼ିକ କେତେକ ବ୍ୟକ୍ତିଙ୍କ କ୍ଷେତ୍ରରେ ସୀମିତ ରହିଥିବା ହେତୁ ବ୍ୟକ୍ତିଗତ ଭାବରେ ହିଁ ରହିବ । ମନୁଷ୍ୟାଣାଂ ସହସ୍ରେଷୁ — କେତେକ ବିରଳ ମନୁଷ୍ୟ ମାନେ ହିଁ ତାହା ଲାଭ କରିବାକୁ ସମର୍ଥ ହୁଅନ୍ତି । ଆଉ ଯାହାଙ୍କର ଏହା ପ୍ରାପ୍ତ ହୁଏ, ତାଙ୍କର ସାଂସାରିକ ଜୀବନ ରହେ ନାହିଁ, କିନ୍ତୁ ଅନ୍ୟ ସମସ୍ତଙ୍କର ସଂସାର ତ ଥାଏ । ସୁତରାଂ ଚାରିତ୍ର୍ୟ ସାଧନାର ବିଷୟ ଏକା କଥା ନୁହେଁ, ଏହି ସାଧନା ସାମୁଦାୟିକ କରାଯାଇ ପାରେ । ଅଥବା ଏହା ଏହିପରି ଭାବରେ କରିବା ଉଚିତ । ସାମୁଦାୟିକ ଭାବରେ କଲେ ହିଁ ତାହା ପୂର୍ଣ୍ଣତା ପ୍ରାପ୍ତି ହୁଏ ଏବଂ ଏହି ବିଷୟର ପରୀକ୍ଷା-ନିରୀକ୍ଷା କରିବାର କ୍ଷେତ୍ର ପ୍ରସ୍ତୁତ ହୁଏ । ତା ଫଳରେ ଗୋଟିଏ ଦିଗରୁ ଏ କାର୍ଯ୍ୟ ସହଜ ମଧ୍ୟ ହୋଇଯାଏ ।

୧୬ ଠାରୁ ୧୮ ନମ୍ବର ପର୍ଯ୍ୟନ୍ତ ମନ୍ତ୍ର ଧ୍ୟାନ ତ୍ରୟୀ ଏକତ୍ର ହୋଇ ଗୋଟିଏ ସଂପୂର୍ଣ୍ଣ ଚିନ୍ତନ ଗଢ଼ି ଉଠିଛି । ଭୂଃ, ଭୁବଃ, ସ୍ୱଃ -- ଏ ଗୁଡ଼ିକ ଓଁକାରର ତିନିମାତ୍ରା । ଏହାର ଅଧିଭୌତିକ ଅର୍ଥ ହେଲା, ପୃଥ୍ୱୀ, ଅନ୍ତରୀକ୍ଷ ଓ ସ୍ୱର୍ଗ । ଅଗ୍ନି, ବାୟୁ, ସୂର୍ଯ୍ୟ ହେଲା ଅଧିଦୈବତ ଏବଂ ଶରୀର ପ୍ରାଣ ଓ ବୁଦ୍ଧି -- ଏହାର ଆଧାତ୍ମ ।

(ଇ) ତତ୍ ସବିତୁର୍ ବରେଣ୍ୟମ୍ ।

ପ୍ରେରଣା ଦାତା ଭଗବାନ ସବିତାଙ୍କର ତେଜ ଆମେ ଧ୍ୟାନ କରିବା ।

ସୂର୍ଯ୍ୟର ଅର୍ଥ ହେଉଛି ଉତ୍ତମ ପ୍ରେରଣା ଦାତା । (ସୁ+ଈର୍) । ସୂର୍ଯ୍ୟଙ୍କୁ ସୂକ୍ଷ୍ମ ରୂପେ ସବିତା କୁହାଯାଏ । ଗାୟତ୍ରୀ ମନ୍ତ୍ରରେ ଏହାର ବରଣୀୟ ସ୍ୱରୂପକୁ ଧ୍ୟାନ କରି ବୁଦ୍ଧି ପାଇଁ ତାଙ୍କ ନିକଟରୁ ଶ୍ରେଷ୍ଠ ପ୍ରେରଣା ଲାଭ ପାଇଁ ଆଶା କରା ଯାଇଛି ।

ଗୀତାରେ କୁହାଯାଇଛି -- "ଗାୟତ୍ରୀ ଛନ୍ଦସାମହମ୍" ବେଦରେ ଯେତେ ମନ୍ତ୍ର ଅଛି ତାର ସବୁର ସାର ହେଉଛି ଗାୟତ୍ରୀ ମନ୍ତ୍ର । ବେଦରେ ଗୋଟିଏ ମନ୍ତ୍ର ଅଛି — ବିଶ୍ୱାମିତ୍ରସ୍ୟ ରକ୍ଷତି ଭାରତଂ ଜନମ୍ -- ଭାରତବାସୀମାନଙ୍କୁ ବିଶ୍ୱାମିତ୍ର କୃତ ଏହି ବ୍ରହ୍ମ ମନ୍ତ୍ର ରକ୍ଷା କରି ଆସୁଛି । ସମଗ୍ର ଭାରତର ରକ୍ଷଣ କାର୍ଯ୍ୟ ଏହି ଗାୟତ୍ରୀ ମନ୍ତ୍ର ଦ୍ୱାରା ହୋଇଥାଏ । ଏହାର ବୈଶିଷ୍ଟ୍ୟ ହେଉଛି ଯେ ଏହା ନିର୍ଜନରେ ବସି ଚିନ୍ତା କରିବା ମନ୍ତ୍ର । କିନ୍ତୁ ଏକାନ୍ତ ଭାବରେ ଚିନ୍ତା କରିବା ସତ୍ତ୍ୱେ ସେଥିରେ 'ଧୀମହି' (ଆମେ ଧ୍ୟାନ କରୁ) ଉଲ୍ଲେଖ ରହିଛି । ଏହାର ତାତ୍‌ପର୍ଯ୍ୟ ହେଉଛି ନିର୍ଜନରେ

ଥିବା ସତ୍ତ୍ୱେ ବି ହୃଦୟକୁ ସମାନ ଭାବନା ସହିତ ଯୋଡ଼ି ଦିଆ ହୋଇଛି । ଏକାନ୍ତରେ ରହି ମଧ ହୃଦୟକୁ ସାମୂହିକ କରାଯାଇ ପାରିଛି । ଏହା ହେଲା ଗାୟତ୍ରୀ ମନ୍ତ୍ରର ଗୋଟିଏ ଦିଗ ।

ଅନ୍ୟ ଦିଗଟି ହେଉଛି ଯେ, ଏଥିରେ ଭଗବାନଙ୍କ ନିକଟରେ ମୁକ୍ତି କାମନା କରାଯାଇ ନାହିଁ, ବୁଦ୍ଧି କାମନା କରାଯାଇଛି । ଆମେ ଭଗବାନଙ୍କ ନିକଟକୁ ବୁଦ୍ଧି ପୂର୍ବକ ଯିବା । ସାଧାରଣତଃ ଆମେ କ'ଣ କହୁ ? ହେ ଭଗବାନ୍ ! ଆମେ ବୁଦ୍ଧି ଚାହୁଁ ନାହୁଁ, କୃପା ଚାହୁଁଛୁ । ପର୍ବତ ଗୁମ୍ଫାରେ ଭଗବାନଙ୍କ ନିକଟକୁ ଯାଇ ହେବ । ଏହା ମଧ ଭକ୍ତିର ଗୋଟିଏ ପ୍ରକାର । ଦୁଇ ପ୍ରକାରର ଭକ୍ତି ଅଛି । ଗୋଟିଏ ହେଲା ବାନରୀ ଭକ୍ତି, ଅନ୍ୟଟି ହେଲା ମାର୍ଜାରୀ ଭକ୍ତି । ବାନରୀ ଏପଟେ ସେପଟେ ଡ଼ିଆଁ ଡ଼େଇଁ କରେ ତଥାପି ତାର ଛୁଆ ତାକୁ ଜାବୁଡ଼ି ଧରି ଥାଏ । ଏଠାରେ ଛୁଆର ଦାୟିତ୍ୱ ବାନରୀର ନୁହେଁ । ଏହିପରି ଭାବରେ ଭଗବାନଙ୍କୁ ଜାବୁଡ଼ି ଧରିବାକୁ ହେବ । ବିଲେଇ ନିଜେ ତାର ସନ୍ତାନକୁ ପାଟିରେ ଧରି ଚଲାବୁଲା କରେ । ଅର୍ଥାତ୍ ସନ୍ତାନର ନିଜ ଉପରେ କୌଣସି ଦାୟିତ୍ୱ ନାହିଁ । ସଂପୂର୍ଣ୍ଣ ଦାୟିତ୍ୱ ମା ଉପରେ ଥାଏ । ବିଲେଇର କରିବାର କିଛି ନଥାଏ । ଭଗବାନ ତାକୁ ଟେକି ନିଅନ୍ତି । କିନ୍ତୁ ଏହି ମନ୍ତ୍ରରେ କ'ଣ କୁହାଯାଇଛି ? ଆମକୁ ବୁଦ୍ଧି ଦାନ କର । ଆମେ ବୁଦ୍ଧି ପ୍ରୟୋଗ କରି ତୁମ ନିକଟକୁ ଯିବା । ଏହି ମନ୍ତ୍ରରେ ଏହାହିଁ ହେଲା ଦ୍ୱିତୀୟ ବୈଶିଷ୍ଟ୍ୟ ।

ତତ୍ ସବିତୁର୍ ବରେଣ୍ୟଂ ଭର୍ଗୋ ଦେବସ୍ୟ --

ଆମେ କିପରି ବସ୍ତୁର ଧାନ କରିବା ? ଧାନ ପାଇଁ ଧାନର ଯୋଗ୍ୟ ବସ୍ତୁର ପ୍ରୟୋଜନ ଥାଏ । ଏଥିପାଇଁ ସବିତାର ନାମ ନିଆ ଯାଇଛି ।

ସବିତା ଅର୍ଥାତ୍ ସ୍ଥୁଳ ମୂର୍ତ୍ତି ସୂର୍ଯ୍ୟ -- ସମ୍ମୁଖରେ ଯାହାର ଉଦୟ ହେଉଛି । ଯିଏ ସମ୍ମୁଖରେ ଦଣ୍ଡାୟମାନ । ସବିତାର ଅର୍ଥ ହେଲା ପ୍ରେରଣାଦାନକାରୀ । ପ୍ରେରଣାଦାତା ଭଗବାନଙ୍କ ନିକଟରୁ ପ୍ରେରଣା ଲାଭ କରିବାକୁ ପ୍ରାର୍ଥନା କରା ହୋଇଛି । ପରମାତ୍ମାଙ୍କର ଅନନ୍ତ ଗୁଣରାଜି ବିଦ୍ୟମାନ । କିନ୍ତୁ ଧାନ କରିବା ପାଇଁ ବିଶେଷ ଗୁଣର ହିଁ ଧାନ କରିବା ଉଚିତ । କେଉଁ ଗୁଣର ଧାନ ହେବ ? ସେହି ଗୁଣର ଯାହାର ଚାହିଦା ଅଛି । ଯଦି ଭକ୍ତିର ଧାନ ହୁଏ ତେବେ ଯେଉଁ ଗୁଣ ଲାଭ ହେବ ତାହା ଭକ୍ତିର ସ୍ୱରୂପରେ ହେବ । ଗୁରୁ ନାନକ ଜପୁଜୀରେ ଭକ୍ତି ଲକ୍ଷଣର ଅପୂର୍ବ ବର୍ଣ୍ଣନା ଦେଇଛନ୍ତି -- "ବିନୁ ଗୁଣ କୀତେ ଭଗତି ନ ହୋଇ" -- ଗୁଣ ପ୍ରାପ୍ତି ନ ହେଲେ ଭକ୍ତି ଲାଭ ହୁଏ ନାହିଁ । ସଦ୍‌ଗୁଣ ସମୂହର ପ୍ରାପ୍ତି ହିଁ ଭଗବଦ୍ ଭକ୍ତିର ରୂପ । ଯେଉଁ ଭଗବାନଙ୍କୁ ଆମେ ଧାନ କରିବା, ତା'ର ଗୁଣ ଆମକୁ ଅର୍ଜନ କରିବାକୁ ହେବ । ସେଥିପାଇଁ ଏହି ଗୁଣ-ସଂପନ୍ନ ଭଗବାନଙ୍କର ଧାନ ଆମେ କରୁ । ଭଗବାନଙ୍କର ଧାନ କରିବାକୁ ହେଲେ, ସେହି ଭଗବାନଙ୍କର କୌଣସି ରୂପ ତ ରହିବା ଦରକାର । ଆକୃତିର ପ୍ରୟୋଜନ, ଆକୃତି ସଗୁଣ । ଏଥିପାଇଁ କୁହାଯାଇଛି, ତତ୍ ସବିତୁର୍ ବରେଣ୍ୟମ୍ -- ଆମେ ସବିତାର ତେଜରାଶୀର ଧାନ କରିବୁ । ଭର୍ଗ ଶବ୍ଦ ତେଜ ବାଚକ । ତାର ବିଶେଷ ଅର୍ଥ ହେଲା ତେଜର ଯେଉଁ ଦାହିକା ଶକ୍ତି ଅଛି ତାହା ଦହନ କରେ । ଆମ ଭିତରେ ଯେଉଁ ସବୁ ଦୋଷ ଅଛି, ଏହି ତେଜ ସେ ସବୁକୁ ଭସ୍ମୀଭୂତ କରିବ ।

ପ୍ରେରଣାର ଉତ୍ସ ହେଉଛନ୍ତି ଭଗବାନ । ତାଙ୍କର ଦାହକ ତେଜର, ଶୋଧକ ତେଜକୁ ଆବର୍ଜନା ଓ ପାପ ଦଗ୍ଧକାରୀ ତେଜକୁ ଆମେ ଧ୍ୟାନ କରୁ । ବରେଣ୍ୟମ୍ - ବରଣୀୟ । ଯେଉଁ ତେଜ କମନୀୟ ଅର୍ଥାତ୍ ଆକାଂକ୍ଷା କରିବା ପରି ତାହାକୁ ଆମେ ପାଇବା । ଏହା ଦ୍ୱାରା ଆମକୁ ଗୋଟିଏ ଅଧିକାର ଦେଇ ଦିଆଯାଇଛି । ଅର୍ଥାତ୍ ସେ ଆମକୁ ଆକ୍ରମଣ କରିନ୍ତି ନାହିଁ । ବରଣ କଲେ ତେବେ ଯାଇ ତାହାଙ୍କୁ ମିଳିଥାଏ । ତୁମେ ଏକୁଟିଆ ବସି ପ୍ରାର୍ଥନା କର କିମ୍ବା ସମସ୍ତଙ୍କୁ ନିଜ ମଧ୍ୟରେ କଳ୍ପନା କରି ପ୍ରାର୍ଥନା କରୁଥିଲେ ମଧ୍ୟ ଏହା ଘଟିବ । ଧିୟୋ ୟୋ ନ ପ୍ରଚୋଦୟାତ୍ । ଆମର ବୁଦ୍ଧିକୁ ପ୍ରେରଣା ଦାନ କର । ଏହି ବରଦାନ କାମନା କରାଯାଇଛି ।

(ଈ) ଅନ୍ତଃ ଶରୀରେ ଜ୍ୟୋତିର୍ମୟଃ

* କର୍ତ୍ତାଙ୍କର ଉପାସନା କର, କର୍ମର ନୁହେଁ ।

* ସୂର୍ଯ୍ୟଙ୍କ ପରି ପ୍ରେରଣା ଦାୟକ ମନ୍ଦିର ଆଉ ନାହିଁ ।

* ସୂର୍ଯ୍ୟ ଏବଂ ହୃଦୟ ମଧ୍ୟରେ ରାଜପଥ ।

* କର୍ମଯୋଗ ସାଧନାରେ ପୃଥିବୀ ଏବଂ ଜଳ, ଧ୍ୟାନ ଯୋଗ ସାଧନାରେ ଅବଶିଷ୍ଟ ତିନୋଟି ମହାଭୂତ - ତେଜ, ମରୁତ୍, ବ୍ୟୋମ ।

ମୁଁ ଯେଉଁ ଉପାସନା କରେ, ତାହା ଆତ୍ମ-ସୂର୍ଯ୍ୟର ଉପାସନା, ସେ ସମ୍ବନ୍ଧରେ ବେଦରେ ଗୋଟିଏ ମନ୍ତ୍ର ଅଛି —

ସତ୍ୟେନ ଲଭ୍ୟସ୍ ତପସା ହ୍ୟେଷ ଆତ୍ମା
ସମ୍ୟକ୍ ଜ୍ଞାନେନ ବ୍ରହ୍ମଚର୍ଯ୍ୟେଣ ନିତ୍ୟଂ
ଅନ୍ତଃ ଶରୀରେ ଜ୍ୟୋତିର୍ମୟୋ ହି ଶୁଭ୍ରୋ
ୟଂ ପଶ୍ୟନ୍ତି ୟତୟଃ କ୍ଷୀଣ ଦୋଷାଃ ।

ଏହା ଗୋଟିଏ ଅତ୍ୟନ୍ତ ଗଭୀର ଅର୍ଥ ସମ୍ବଳିତ ମନ୍ତ୍ର । ଯଦିଓ ଏହି ମନ୍ତ୍ରଟିକୁ ସୂର୍ଯ୍ୟ ଉପାସନାର ମନ୍ତ୍ର ବୋଲି ମାନ୍ୟ କରାଯାଏ ନାହିଁ ଏବଂ ସ୍ୱୀକୃତ ହୁଏ ନାହିଁ ତଥାପି ମୁଁ ସୂର୍ଯ୍ୟ-ଚିନ୍ତନ ପାଇଁ ଏହାକୁ ବ୍ୟବହାର କରୁଛି । 'ହ୍ୟେଷ ଆତ୍ମା' - ହୃଦୟରେ ଯେଉଁ ଆତ୍ମା ଅଛି ତାହାକୁ ସୂର୍ଯ୍ୟ କୁହାଯାଏ ଏବଂ ବାହାରେ ଯେଉଁ ସୂର୍ଯ୍ୟ ତାହାକୁ ମଧ୍ୟ ସୂର୍ଯ୍ୟ କୁହାଯାଏ । ଗୋଟିଏ ଦିଗରେ ସୂର୍ଯ୍ୟ ପ୍ରତୀକ ଏବଂ ଅପର ଦିଗରେ ଆତ୍ମା ପ୍ରତୀକ ଏହି ପ୍ରକାର ଉପାସନା ଆମର ପୂର୍ବପୁରୁଷମାନେ କରିଥାନ୍ତି । ବାହାରେ ଯେପରି ସୂର୍ଯ୍ୟ-ଜ୍ୟୋତି, ଅନ୍ତରରେ ସେହିପରି ସତ୍ୟ-ଜ୍ୟୋତି । ଏହି ଉଭୟ ପ୍ରକାର ଜ୍ୟୋତିର ଉପାସନା ସେମାନେ କରୁଥିଲେ ।

ଏହି ପ୍ରକାର ଅର୍ଥ କରି ସୂର୍ଯୋପାସନା କରାଗଲେ, ସତ୍ୟ ପ୍ରାପ୍ତି ହୁଏ ।

ଅନ୍ତଃ ଶରୀରେ ଜ୍ୟୋତିର୍ମୟୋ ହି ଶୁଭ୍ରଃ - ବାହାରେ ଯେପରି ସୂର୍ଯ୍ୟ ନାରାୟଣଙ୍କର ଉଦୟ ହୁଏ । ବାହାରର ସୂର୍ଯ୍ୟ ଯେପରି ବାହାରର ମେଘ ଦ୍ୱାରା ଆବୃତ ହେଲେ ତାର ଦର୍ଶନ

ମିଳେ ନାହିଁ । ସେହିପରି ହୃଦୟ ଉପରେ ଆବରଣ ପଡ଼ିଲେ ଅନ୍ତରରେ ଥିବା ଜ୍ୟୋତିର ଦର୍ଶନ ହୁଏ ନାହିଁ । ଅଥଚ ଅନ୍ତରସ୍ଥିତ ସୂର୍ଯ୍ୟ ପ୍ରଚଣ୍ଡ ତେଜୋମୟ । ଏହାର ଅର୍ଥ ହେଲା - ସୂର୍ଯ୍ୟ ଯେପରି ସ୍ୱୟଂ ପ୍ରକାଶ ସେହିପରି ଅନ୍ତର ମଧ୍ୟରେ ମଧ୍ୟ ସ୍ୱୟଂ ପ୍ରକାଶ ଭାବ ରହିଛି ।

ସୂର୍ଯ୍ୟ ଆତ୍ମା ଜଗତସ୍ତସ୍ଥୁଷଶ୍ଚ - ସୂର୍ଯ୍ୟ ସ୍ଥାବର-ଜଂଗମାତ୍ମକ ଜଗତର ଆତ୍ମାର ନାମ । ଆତ୍ମାର ନାମ ସୂର୍ଯ୍ୟ । ଏଥିପାଇଁ ସୂର୍ଯ୍ୟଙ୍କ ଉପରେ ମଧ୍ୟ ଆତ୍ମ ଭାବନା ରହିପାରେ । କୋରାନ୍ - - ଶରୀଫରେ ଗୋଟିଏ ବାକ୍ୟରେ ଏକ ପ୍ରକାର ବିଶେଷ ଧରଣର ଶ୍ରଦ୍ଧାର ପ୍ରକାଶ ଦେଖାଯାଏ । ସେଥିରେ ଲେଖା ହୋଇଛି ଯେ, ଯଦି ଈଶ୍ୱରଙ୍କର ଉପାସନା କରିବାକୁ ଚାହଁ ତାହାହେଲେ ସେ ଯାହାଙ୍କୁ ସୃଷ୍ଟି କରିଛନ୍ତି, ତାହାଙ୍କୁ ଉପାସନା କରିବ ନାହିଁ । ସୂର୍ଯ୍ୟ ବା ଚନ୍ଦ୍ର ଏମାନେ ସମସ୍ତେ ଈଶ୍ୱର ସୃଷ୍ଟ । ତେଣୁ ଏମାନଙ୍କର ଉପାସନା ନକରି ଯିଏ ଏମାନଙ୍କୁ ସୃଷ୍ଟି କରିଛନ୍ତି ତାଙ୍କର ଉପାସନା କର । ଅର୍ଥାତ୍ କର୍ତ୍ତାଙ୍କର ଉପାସନା କର, କର୍ମର ନୁହେଁ । କିନ୍ତୁ ଯେତେବେଳେ ସୂର୍ଯ୍ୟୋଦୟ ହୁଏ, ସେତେବେଳେ ଶରୀର ଇନ୍ଦ୍ରିୟ, ମନ ଏବଂ ବୁଦ୍ଧିରେ ପ୍ରାଣ ସଂଚାର ହୁଏ , ଏଥିରେ ସନ୍ଦେହ ନାହିଁ । ଯାହାର ଏହା ଅନୁଭବ ହେବ ସେ ଏକଥା ସ୍ୱୀକାର କରିବ । କିନ୍ତୁ ଯାହାର ଏହି ଅନୁଭବ ହୁଏ ନାହିଁ, ସେ ମଧ୍ୟ କଳ୍ପନା ସାହାଯ୍ୟରେ ଏହା ବୁଝିବାକୁ ସକ୍ଷମ ହେବ । ଏଥିପାଇଁ ସୂର୍ଯ୍ୟୋଦୟର ସମୟଟିକୁ ଖୁବ୍ ଗୁରୁତ୍ୱପୂର୍ଣ୍ଣ ବୋଲି ମନେ କରାଯାଏ । ମୋ ନିକଟରେ ସୂର୍ଯ୍ୟ ପରି ପ୍ରେରଣାଦାୟକ ଦ୍ୱିତୀୟ କୌଣସି ମନ୍ଦିର (ଆଶ୍ରମ ବା କାବା) ଆଖିରେ ପଡ଼େ ନାହିଁ । ଏହି ସୂର୍ଯ୍ୟ ଏତେ ବଡ଼ ଏବଂ ମହାନ୍ ପ୍ରେରଣା କ୍ଷେତ୍ର । ଏଥିପାଇଁ ଏହାଙ୍କୁ ଈଶ୍ୱରଙ୍କର ପ୍ରତୀକ ବୋଲି ମନେକରି ଯଦି ପରମାତ୍ମାଙ୍କର ଉପାସନା କରାଯାଏ ତାହାହେଲେ ତାହା ଅତ୍ୟନ୍ତ ଉତ୍ତମ କର୍ମ ହେବ ।

ସୂର୍ଯ୍ୟ ଏବଂ ଆମ୍ଭ ମଧ୍ୟରେ ଗୋଟିଏ ପ୍ରକାର ସଂବନ୍ଧ ରହିଛି ବୋଲି ମୋର ଧାରଣା । ଉପନିଷଦରେ ମଧ୍ୟ ଗୋଟିଏ ବାକ୍ୟ ରହିଛି, ଯେଉଁଥିରେ ଲେଖା ଯାଇଛି ଯେ, ସୂର୍ଯ୍ୟ-କିରଣ ଧମନୀ ଦେଇ ହୃଦୟରେ ପହଂଚିଥାଏ, ସୂର୍ଯ୍ୟ ଏବଂ ହୃଦୟ ମଧ୍ୟରେ ଗୋଟିଏ ରାଜପଥ ତିଆରି ହୋଇଅଛି ଏବଂ ଏହି ରାସ୍ତାରେ ଏଠାରୁ ସେଠାକୁ ଯିବା ଆସିବା କରାଯାଇପାରେ । ସୂର୍ଯ୍ୟ-କିରଣ ଯେପରି ଭାବରେ ହୃଦୟରେ ଆସି ପହଂଚେ, ସେହିପରି ଭାବରେ ହୃଦୟ ମଧ୍ୟ ସୂର୍ଯ୍ୟ ପର୍ଯ୍ୟନ୍ତ ପହଂଚିପାରେ । ମୋର ଏପ୍ରକାର ଅନୁଭବ ବରାବର ହୋଇଥାଏ । ମୋର ଏହି ଅନୁଭବ କେବଳ ସୂର୍ଯ୍ୟଙ୍କ ସଂପର୍କରେ ନୁହେଁ, ବରଂ ନକ୍ଷତ୍ରମାନଙ୍କ ସଂପର୍କରେ ମଧ୍ୟ ହୋଇଥାଏ । ରାତିରେ ଆକାଶକୁ ଦେଖିଲେ ଏପରି ମଧ୍ୟ ଅନୁଭୂତି ହୁଏ ଯେ ନକ୍ଷତ୍ରମଣ୍ଡଳୀ ଏବଂ ଆମ ଭିତରେ କୌଣସି ଗୋଟିଏ ରାସ୍ତା ପ୍ରସ୍ତୁତ ହୋଇଅଛି ।

ଆମ ଜୀବନରେ ଆମେ ଆମର ବୁଦ୍ଧି ଦ୍ୱାରା ଉତ୍ପନ୍ନ ବିଚାରକୁ ବାହାରେ ପ୍ରକାଶ କରୁ ଏବଂ ଆତ୍ମାରୁ ଉତ୍ପନ୍ନ ବିଚାରକୁ ନିଜ ଭିତରେ ରଖୁ । ଏ ଭାବରେ ଯଦି ଦେଖାଯାଏ ତାହାହେଲେ ସୂର୍ଯ୍ୟ ନାରାୟଣ ହେଲେ ବିଚାରର ପ୍ରତୀକ ବାୟୁ ବାସନା ଶୁଦ୍ଧିର ସାଧନ । ବାସନା ଶୁଦ୍ଧି ପାଇଁ ବୌଦ୍ଧିକ ବିଚାର ଗୁଡ଼ିକୁ ଦୂର କରି ଦେଇ ଆତ୍ମିକ ବିଚାର ଗୁଡ଼ିକୁ ନିଜ ଭିତରକୁ ନେବା ଉଚିତ ।

ଏହି ଦୁଇଟିର ମିଳନରେ ଧ୍ୟାନର ଆରମ୍ଭ । ଏଥିପାଇଁ ଶ୍ୱାସ-ପ୍ରଶ୍ୱାସ ସାଥିରେ ଧ୍ୟାନ ହୁଏ । ଯୋଗୀ ପୁରୁଷମାନେ ଗୋଟିଏ ସହଜ ସରଳ ଜପ ଶିଖାଇ ଦେଇଛନ୍ତି । ଯାହା ଦ୍ୱାରା କିଛି କହିବାର ପ୍ରୟୋଜନ ହୁଏ ନାହିଁ । ଏହି ମନ୍ତ୍ର ହେଉଛି 'ସୋଽହମ୍' । ଶ୍ୱାସ ପ୍ରଶ୍ୱାସ ସହିତ ଯେଉଁ ବାୟୁ ବାହାରକୁ ନିର୍ଗତ ହୁଏ ତାହା ହେଲା 'ଅହମ୍' ଏବଂ ଯେଉଁ ବିଶୁଦ୍ଧ ବାୟୁ ବାହାରୁ ଭିତରକୁ ଯାଏ, ତାହା ହେଲା 'ସଃ' ଅର୍ଥାତ୍ ପରମେଶ୍ୱରଙ୍କ ବାୟୁ । ଆମ ବିଚାର ଦେଇ ସୂର୍ଯ୍ୟ କିରଣର ପ୍ରବେଶ ଲାଭ ହୁଏ । ଏବଂ ଏସବୁ ବିଚାର ଦ୍ୱାରା ଆମେ ଚିତ୍ତକୁ ପରିପୂର୍ଣ୍ଣ କରୁ । ବାହାରେ ବିଶାଳ ଆକାଶ ପରିବ୍ୟାପ୍ତ ଏବଂ ଅନ୍ତରରେ ମଧ୍ୟ ଗୋଟିଏ ଛୋଟ ଆକାଶ ରହିଛି । ବିଶାଳ ଆକାଶର ତଳେ ବସି ଧ୍ୟାନ କରିବା ଉଚିତ । ଯଦି ବର୍ଷା ଆସିବ ତେବେ ଭିତରେ ବସି ଧ୍ୟାନ କରିବା ଦରକାର । ଶରୀରକୁ ଗୌଣ କରିବାକୁ ହେବ । ଏପରି କିଛି କଥା ନାହିଁ, ପୁଣି ଯେତିକି କରିପାରିବା ସଂଭବ ସେତିକି କରିବାକୁ ହେବ । ଅନନ୍ତ ଆକାଶ ତଳେ ବସି ଗୋଟିଏ ଦିଗରେ ବାସନା ଶୁଦ୍ଧି, ପ୍ରାଣ ଶୁଦ୍ଧି ଏବଂ ଅନ୍ୟ ଦିଗରେ ସୂର୍ଯ୍ୟ କିରଣର ପ୍ରବେଶ ଫଳରେ ସଂକୀର୍ଣ୍ଣ ବିଚାର ତ୍ୟାଗ କରିବାକୁ ହେବ । ଏହାଦ୍ୱାରା ଏହି ମହାନ୍ ଆକାଶର ଅନୁସନ୍ଧାନ ଏବଂ ସଂକୁଚିତ ବିଚାରଧାରକୁ ତ୍ୟାଗ କରିବା ଉଭୟ ପ୍ରକାର କାର୍ଯ୍ୟ ସାଧିତ ହେବ ।

ପଞ୍ଚ ମହାଭୂତ ମଧ୍ୟରୁ ଜଳ ଏବଂ ଅନ୍ନ (ପୃଥ୍ୱୀ ଏବଂ ଜଳ) ଛଡ଼ା ବାକି ତିନି ଭୂତ (ତେଜ, ବାୟୁ ଓ ଆକାଶ) ସହିତ ଧ୍ୟାନର ସଂବନ୍ଧ ଅଛି । କର୍ମଯୋଗରେ ଅନ୍ନ ଏବଂ ଜଳର ସମାବେଶ ହୁଏ । କର୍ମଯୋଗ ସାଧନାରେ ଏହି ଦୁଇ ଭୂତର ପ୍ରାଧାନ୍ୟ ରହିଛି ଏବଂ ଧ୍ୟାନ ଯୋଗ ଶେଷରେ ବାକି ତିନି ଭୂତର ପ୍ରାଧାନ୍ୟ ରହିଛି ।

(ଉ) ସେହି (ତତ୍) ସୂର୍ଯ୍ୟର ଦେବତ୍ୱ :

* ସୂର୍ଯ୍ୟଙ୍କ ମହିମା — ବିଚ୍ଛୁରିତ କିରଣ ସମୂହକୁ ଟାଣି ନେବା ।
* ସୂର୍ଯ୍ୟଙ୍କ ଅନ୍ତର୍ଯ୍ୟାମୀ -- ଆମ ସମସ୍ତଙ୍କର ଅନ୍ତର୍ଯ୍ୟାମୀ ।
* ହେ ସୂର୍ଯ୍ୟ ନାରାୟଣ ! ମୋତେ ନିରାକାର ଦେଖାଅ ।

ବେଦରେ ସୂର୍ଯ୍ୟ ସ୍ତୁତି ପାଇଁ ଗୋଟିଏ ସୁନ୍ଦର ଶ୍ଳୋକ ଅଛି ।

ତତ୍ ସୂର୍ଯ୍ୟସ୍ୟ ଦେବତ୍ୱଂ ତନ୍ମହିତ୍ୱମ୍ ।
ମଧ୍ୟା କର୍ତ୍ତୋର୍ ବିତତଂ ସଂଜଭାର ॥

ସୂର୍ଯ୍ୟଙ୍କର ଦେବତ୍ୱ, ତାଙ୍କର ମହିମା ଏଇଥିପାଇଁ ଯେ ସେ ସନ୍ଧ୍ୟା ସମୟରେ ତାଙ୍କର ବିଚ୍ଛୁରିତ ସମସ୍ତ କିରଣ ନିଜ ଭିତରକୁ ନେଇଯାଇ ପାରନ୍ତି । ନିଜ ମଧ୍ୟରେ ବିଲୀନ କରି ଦେଇ ପାରନ୍ତି । ଏପରି ଆକର୍ଷଣ କରିବାର ଶକ୍ତି ପ୍ରଭାବଶାଳୀ ନେତାମାନଙ୍କର ଏବଂ କର୍ମୀମାନଙ୍କ ମଧ୍ୟରେ ଦେଖାଯାଏ ନାହିଁ, ସେମାନେ ବିଚ୍ଛିନ୍ନ ହୋଇଥାନ୍ତି, ନିଜ ସ୍ଥାନକୁ ଫେରି ଆସି ପାରନ୍ତି ନାହିଁ । ସେମାନଙ୍କୁ କର୍ମର ପଛରେ ରହିବାକୁ ପଡ଼ିଥାଏ । ଏମାନେ କର୍ମର ସ୍ୱାମୀ ନରହି କର୍ମର ଦାସର ସ୍ଥାନ ଗ୍ରହଣ କରିଥାନ୍ତି । ଏବଂ ଏଥିପାଇଁ ନିଜ କାର୍ଯ୍ୟରେ ଯେଉଁ ଦୋଷ ତ୍ରୁଟି ଥାଏ,

ସେଗୁଡ଼ିକୁ ସେମାନେ ନିରପେକ୍ଷ ଦୃଷ୍ଟିରେ ଦେଖି ପାରନ୍ତି ନାହିଁ । ପରିଣାମ ସ୍ୱରୂପ, ଯେଉଁ ପ୍ରକାରର କାର୍ଯ୍ୟ ସେମାନେ ଚାହାନ୍ତି, ସେ ପ୍ରକାରର କାର୍ଯ୍ୟ ସେମାନେ କରି ପାରନ୍ତି ନାହିଁ ।

ଏଥିପାଇଁ କର୍ମଠାରୁ କିଛି ସମୟ ପାଇଁ ଅଲିପ୍ତ ରହି ଅନ୍ତର୍ମୁଖୀ ଚିନ୍ତନ ଦ୍ୱାରା ଆତ୍ମସ୍ଥ ହୋଇ ରହିବା ଏବଂ କର୍ମ ଆଡ଼କୁ ନିରପେକ୍ଷ ଦୃଷ୍ଟି ଦେବା ପ୍ରୟୋଜନ । କର୍ମକୁ ଶୁଦ୍ଧ, ପୁଷ୍ଟି ଓ ବିକାଶ କରିବା ପାଇଁ ଏସବୁର ପ୍ରୟୋଜନ । ନିଜର ଚିତ୍ତଶୁଦ୍ଧି ପାଇଁ ମଧ ତାର ଆବଶ୍ୟକତା ଅଛି । ଯେପର୍ଯ୍ୟନ୍ତ ଆମେ ନିର୍ଲିପ୍ତ ଭାବରେ କର୍ମ କରି ନପାରିଛୁ, କେବଳ ସେତିକି ନୁହେଁ, ଯେ ପର୍ଯ୍ୟନ୍ତ କେବଳ କର୍ମରେ ଲିପ୍ତ ନ ହୋଇ, କର୍ମରେ ନିଯୁକ୍ତ ଇନ୍ଦ୍ରିୟ ଗୁଡ଼ିକରୁ ଏବଂ ହତିଆର ସ୍ୱରୂପ ମନରୁ ମୁକ୍ତ ନ ହୋଇ ପାରିଛୁ, ସେ ପର୍ଯ୍ୟନ୍ତ ଆମେ ଦୁର୍ବଳ ହିଁ ରହିବା, ଆମେ ପ୍ରବାହ ସହିତ ଭାସି ଯିବା, ସେଥିପାଇଁ ବେଳେ ବେଳେ ଆତ୍ମ ଶୋଧନ କରିବା ନିତ୍ୟାନ୍ତ ପ୍ରୟୋଜନ ।

ଆମେ ସୂର୍ଯ୍ୟୋଦୟ ସମୟରେ କିଛି ସମୟ ପାଇଁ ବସି ରହୁ, ତାଦ୍ୱାରା ସୂର୍ଯ୍ୟୋପାସନା ହୁଏ ନାହିଁ । ସୂର୍ଯ୍ୟ ମଧ ଆମ ପରି, ଈଶ୍ୱର ତାହାଙ୍କୁ ସୃଷ୍ଟି କରିଛନ୍ତି ସୂର୍ଯ୍ୟଙ୍କୁ ନିମିତ୍ତ କରି ଯିଏ ସୂର୍ଯ୍ୟଙ୍କର ଅନ୍ତର୍ଯ୍ୟାମୀ ଏବଂ ଆମର ଅନ୍ତର୍ଯ୍ୟାମୀ ତାଙ୍କର ଉପାସନା କରିବା ଆମର କର୍ତ୍ତବ୍ୟ । ଏପ୍ରକାର ଚିନ୍ତା କରିବା କାର୍ଯ୍ୟର ପ୍ରତିବନ୍ଧକ ନୁହେଁ, ବରଂ କାମ କରିବା ଦ୍ୱାରା ଯେଉଁ ଶକ୍ତି କ୍ଷୟ ହୁଏ, ଏହା ତାର ପୂରଣ କରିବାର ଉପାୟ ।

ରାମ ଦାସ ସ୍ୱାମୀ କହିଛନ୍ତି -- ସୂର୍ଯ୍ୟ ନାରାୟଣ ଦେବା ନମସ୍କାର, ତୁହ୍ମୀ ନିରାକାର ବାଚ୍ୟବାବା -- ହେ ପରମେଶ୍ୱର, ସୂର୍ଯ୍ୟ ନାରାୟଣ, ତୁମକୁ ନମସ୍କାର । ତୁମେ ଆମ୍ଭମାନଙ୍କୁ ଏହି ନିରାକାର ରୂପ ଦର୍ଶନ କରାଇଥାଅ ।

ଏହା ଗୋଟିଏ ଅଦ୍ଭୁତ କଥା । ସୂର୍ଯ୍ୟ କିପରି ନିରାକାରକୁ ଦେଖାଇ ପାରିବେ ? ସେ ତ ସାକାର ହିଁ ଦିଶିବେ । ତାଙ୍କ ପାଇଁ ସମଗ୍ର ବିଶ୍ୱ ପ୍ରକାଶିତ ହୁଏ । କିନ୍ତୁ ରାମଦାସ ପ୍ରାର୍ଥନା କରିଛନ୍ତି ଯେ, ତୁମେ ମୋତେ ଏହି ନିରାକାରର ଦର୍ଶନ ଦିଅ । ଏହି ନିରାକାର ଆମ ମଧରେ ରହିଛନ୍ତି, ସେ ପର୍ଯ୍ୟନ୍ତ ଆମକୁ ପହଂଚିବାକୁ ହେବ ଏବଂ ଯିଏ ସାକାର, କର୍ମର ରୂପ, ତାହାଙ୍କୁ ଜାଣିବାକୁ ହେଲେ ମଧ ତାଙ୍କର ସାହାଯ୍ୟ ଦରକାର ।

(ଉ) ବ୍ୟୁହ ରଶ୍ମୀନ୍ ସମୁହ :

* ସୂର୍ଯ୍ୟନାରାୟଣ ପ୍ରାତଃ ସମୟରେ କିରଣ ବିକିରଣ କରନ୍ତି, ସନ୍ଧ୍ୟାରେ ନିଜ ମଧରେ ତାହାକୁ ଗୋଟାଇ ନିଅନ୍ତି ।
* ଆମେ ମଧ ଦିନରେ ନିଜର ବୃତ୍ତି ଗୁଡ଼ିକୁ ସେବା କାର୍ଯ୍ୟରେ ନାନା ଭାବରେ ବିନିଯୋଗ କରିବା ଏବଂ ସନ୍ଧ୍ୟା ସମୟରେ ସେ ଗୁଡ଼ିକୁ ନିଜ ଭିତରକୁ ଟାଣି ନେବା ।
* ଆବାହନ-ବିସର୍ଜନ ଏହି ଦୁଇଟି ତତ୍ୱର ଧାନ ସର୍ବଦା କରି ଚାଲିଲେ ତେବେ ଯାଇ ପୂର୍ଣ୍ଣ ଧାନ ହେବ ।

ସକାଳେ ଯେତେବେଳେ ସୂର୍ଯ୍ୟ-ନାରାୟଣ ଉଦୟ ହୁଅନ୍ତି ସେତେବେଳେ ନିଜର ରଶ୍ମି ଜାଲକୁ ବ୍ୟାପକ ଭାବରେ ବିସ୍ତୃତ କରି ଦିଅନ୍ତି । ନାନା ପ୍ରକାର ଟଣାଟଣି କରି ତାହାକୁ ସଜାଇବାକୁ ହୁଏ । ଅନେକ ପ୍ରକାର ଶକ୍ତି ସାହାଯ୍ୟରେ ପ୍ରଚୁର ପରିମାଣରେ କିରଣ ଚାରିଆଡ଼େ ପ୍ରକାଶ ଲାଭ କରେ । ସନ୍ଧ୍ୟା ସମୟରେ ନିଜର ସମଗ୍ର କିରଣ ରଖିବାକୁ ନିଜ ମଧ୍ୟରେ ସଂବରଣ କରି ନିଅନ୍ତି । ଏହି ଉଭୟ ପ୍ରକାର ପ୍ରୟୋଗ ମିଶି ଆଧ୍ୟାତ୍ମିକ ଜୀବନ ଗଢ଼ି ଉଠେ । ଏହି ପ୍ରକ୍ରିୟା ଅବଲମ୍ବନ କରି ଦିନରେ ଦୁଇଥର ପ୍ରତ୍ୟୁଷ ଏବଂ ସାୟଂ କାଳରେ ଅବସର ସମୟରେ ଉପାସନା କରାଯାଏ, ବେଦରେ ଏହାକୁ ଖୁବ୍ ସୁନ୍ଦର ଭାବରେ ବର୍ଣ୍ଣନା କରାହୋଇଅଛି । ଉଷା ସମୟରେ କାର୍ଯ୍ୟ ଗୋଟିଏ ପ୍ରକାର ଏବଂ ସନ୍ଧ୍ୟା ସମୟର କାର୍ଯ୍ୟ ଅନ୍ୟ ପ୍ରକାର । ଉଷା କାଳରେ ସୂର୍ଯ୍ୟ କିରଣ ବିସ୍ତାର ଲାଭ କରେ ଏବଂ ସନ୍ଧ୍ୟା ସମୟରେ ତାହା ସଂବରଣ କରାଯାଏ । ଏହି ଦୁଇ ତତ୍ତ୍ୱକୁ ନେଇ ପ୍ରତି ମୁହୂର୍ତ୍ତରେ ଧ୍ୟାନ କରୁଥିଲେ ପୂର୍ଣ୍ଣତା ଲାଭ ହେବ । ଏହାକୁ ହିଁ ଉପାସନା ଭାଷାରେ ଆବାହନ ଏବଂ ବିସର୍ଜନ କୁହାଯାଏ ।

ବେଦରେ ମନ୍ତ୍ର ଅଛି — 'ପରା ହି ମେ ବିମନ୍ୟବଃ ପତନ୍ତି ବସ୍ୟଇଷ୍ଟୟେ । ବୟୋ ନ ବସତୀରୁପ ।" ଋଷି କହୁଛନ୍ତି — ସନ୍ଧ୍ୟା ସମୟରେ ମୋର ମାନସିକ ବୃତ୍ତି ଗୁଡ଼ିକ ସାମଗ୍ରିକ ଫେରି ଆସେ ଏବଂ ମୋ ଭିତରେ ଲୀନ ହୋଇଯାଏ । ସବୁ ବସ୍ତୁ ମଧ୍ୟରେ ପରମାତ୍ମା ହେଉଛନ୍ତି ଶ୍ରେଷ୍ଠ ବସ୍ତୁ । ସେ ହେଉଛନ୍ତି ଅନ୍ତର୍ଯ୍ୟାମୀ । ଚଢ଼େଇମାନେ ଯେପରି ସନ୍ଧ୍ୟା ସମୟରେ ନିଜବସାକୁ ବାହୁଡ଼ି ଆସନ୍ତି, ସେହିପରି ପରମାତ୍ମାଙ୍କ ମଧ୍ୟରେ ଆଶ୍ରୟ ନେବା ପାଇଁ ମୋର ବୃତ୍ତି ଗୁଡ଼ିକ ଫେରି ଆସିବାରେ ଲାଗନ୍ତି । ପୁଣି ଆଉ ଗୋଟିଏ ମନ୍ତ୍ର ଅଛି —ଯେଉଁ ଠାରେ ଋଷି ଗୋଟିଏ ବିପରୀତ ଉପମା ନେଇଛନ୍ତି । "ପରା ମେ ଯନ୍ତି ଧୀତୟଃ, ଗାବୋ ନ ଗବ୍ୟୂ ତୀରନୁ । ଇଚ୍ଛନ୍ତିରୁ ରୁ ଚକ୍ଷୁସମ୍ ।' ମୋର ଧ୍ୟାନର ସମସ୍ତ ବୃତ୍ତି ସମୂହ ବର୍ତ୍ତମାନ ପ୍ରାର୍ଥନା ପାଇଁ, ଦଶର୍ନ ଲାଭ ପାଇଁ, ବାହାରକୁ ଯାତ୍ରା କରୁଛି ।

ଗୋରୁମାନେ ଯେପରି ପାଖ ଆଖରେ ଥିବା ଘାସପୂର୍ଣ୍ଣ ପଡ଼ିଆର ଭିନ୍ନ ଭିନ୍ନ ଆଡ଼କୁ ଦୌଡ଼ି ଯାଆନ୍ତି, ସେହିପରି ଭାବରେ ମୋର ବୃତ୍ତିଗୁଡ଼ିକ ଦୌଡ଼ି ଯିବାକୁ ଆରମ୍ଭ କରୁଛି । ଦୁଇଟି ମନ୍ତ୍ର ଏକତ୍ରିତ ହୋଇ ଗୋଟିଏ ପୂର୍ଣ୍ଣ ମନ୍ତ୍ର ତିଆରି ହୋଇଛି ।

ଆମେ ଆମର ବୃତ୍ତିଗୁଡ଼ିକୁ ସକାଳେ ବିକୀରଣ କରୁ ଏବଂ ସନ୍ଧ୍ୟା ସମୟରେ ନିଜ କୋଳକୁ ଟାଣିନେଉ । କେତେକ ଲୋକ କହିଥାନ୍ତି ଯେ, ଆମେ ମନକୁ ଏକାଗ୍ର କରିବା ପାଇଁ ପ୍ରତିଦିନ ସକାଳେ ଧ୍ୟାନ କରୁ, କିନ୍ତୁ ମନ ଏକାଗ୍ର ହୁଏ ନାହିଁ । ଏ ସମ୍ପର୍କରେ ଆମେ ପ୍ରଶ୍ନ କରୁ ଯେ ରାତିରେ କ'ଣ ସୁନିଦ୍ରା ହୋଇଥିଲା ? ସେତେବେଳେ ସେ କହନ୍ତି ହୋଇଥିଲା । ତାହାହେଲେ ତ କାମ ହୋଇଗଲା, ଚିତ୍ତ ଏକାଗ୍ର ହୋଇଗଲା, ରାତିରେ ଛଅ-ସାତ ଘଣ୍ଟା ଚିତ୍ତ ଏକାଗ୍ର ହୋଇଥିଲା, ତାହେଲେ ବର୍ତ୍ତମାନ ତା ଉପରେ ଅତିରିକ୍ତ ଅତ୍ୟାଚାର କାହିଁକି କରୁଛ ? ମନ କୁହେ ଯେ ସକାଳ ହେଲା, ବର୍ତ୍ତମାନ ମୁଁ ବାହାରକୁ ଯିବି, ସେବା କରିବି । ତା ବଦଳରେ ତୁମେ ତାକୁ ବୁଝାଇବାକୁ ଚାହୁଁଛ ଯେ, ବାହାରକୁ ଯାଆନାହିଁ । ଭିତରେ ବସିରହ । ସୂର୍ଯ୍ୟଙ୍କର କିରଣରାଜି

ବାହାରେ ବିସ୍ତାର ଲାଭ କରୁଛି । ଚଢ଼େଇମାନେ ବସା ଛାଡ଼ି ବାହାରକୁ ବାହାରି ଆସୁଛନ୍ତି, ଯେଉଁ ଆଲୁଅ ସୂର୍ଯ୍ୟ ମଧ୍ୟରେ ଲୀନ ହୋଇଥିଲା, ତାହା ବିଶ୍ୱକୁ ଦୀପ୍ତିମୟ କରୁଅଛି, ଏହା ଯଦି ଭଗବାନଙ୍କ ରୂପ ନହେବ ତେବେ ଆଉ କ'ଣ ହେବ ? ଏଥିପାଇଁ ଭୟ କାହିଁକି ? ଏଥିପାଇଁ ଯଦି ଭୋର ହୋଇଥାଏ ତେବେ ବାହାରକୁ ଯାଅ, ସେବାର କାମ କର । ମନ ଯଦି କାମରେ ଲାଗିବାକୁ ଚାହୁଁଛି, ତାହା ହେଲେ ତାକୁ ଏ କାମରେ ଲଗାଅ । ପୁଣି ସନ୍ଧ୍ୟା ଆସିବ ସେତେବେଳେ ଚିତ୍ତକୁ ନିଜ ଭିତରେ ସଂବରଣ କରିନେବ । ରାତିରେ ଚିତ୍ତକୁ ସଂବରଣ କରିବା ବଦଳରେ ଯଦି ଅତି ପ୍ରତ୍ୟୁଷରୁ ତାହା କରିବାକୁ ଚାହିଁବ ତେବେ ଚିତ୍ତ ବିଦ୍ରୋହ କରିବ ।

ମୁଁ ପ୍ରାୟ କହିଥାଏ-ଚିତ୍ତର ଏକାଗ୍ରତା ଏପରି କି ବଡ଼ କଥା ? ଏମିତିରେ ଚିତ୍ତ ଏକାଗ୍ର ହୋଇ ରହିଛି, ଏପଟେ ସେପଟେ ସୁଦ୍ଧା ଯାଏ ନାହିଁ । ନିଜ ସ୍ଥାନରେ ସ୍ଥିର ଥାଏ । କିନ୍ତୁ ବେଳେବେଳେ ଅନେକାଗ୍ରତାର ମଧ୍ୟ ଉପାସନା କରିବା ପ୍ରୟୋଜନ ହୋଇଥାଏ । ରୋଷେଇ କରି ଖାଦ୍ୟ ପ୍ରସ୍ତୁତ କରିବାକୁ ହେବ । ଏପଟେ ଚୁଲୀ ଜଳୁଛି, ରୁଟି ସେକା ହେଉଛି, ଅନ୍ୟ ଦିଗରେ ରୁଟି ବେଲା ହେଉଛି, ଏ ଆଡ଼କୁ ମନ ଦେବାକୁ ହେବ । ପୁଣି ସେପଟକୁ ମନ ଦେବାକୁ ହବ । ଏହିପରି ରୋଷେଇ କରିବା ସମୟରେ ରାନ୍ଧୁଣିଆକୁ ଏକା ସାଙ୍ଗରେ ଅନେକଗୁଡ଼ିଏ 'ବସ୍ତୁ' ପ୍ରତି ଧ୍ୟାନ ଦେବାକୁ ହେବ । ଏପରି ଯେଉଁଠି ଅନେକ ଆଡ଼କୁ ମନୋଯୋଗ ଦେବାକୁ ହୁଏ; ସେଠାରେ ବିଭିନ୍ନ ବସ୍ତୁ ପ୍ରତି ଏକା ସାଂଗରେ ମନୋଯୋଗୀ ହେବା ଆବଶ୍ୟକ ହୋଇଥାଏ । ବ୍ୟୂହ ଏବଂ ସମୂହ ଦୁଇଟିର ପ୍ରୟୋଗ କରିବା ଦରକାର । ଚିତ୍ତର ଯେଉଁଶକ୍ତି ଅଛି ତାର ପ୍ରୟୋଗ କରିବା ଆବଶ୍ୟକ । ଏହିପରି ଭାବରେ ମଣିଷର ଏକାଗ୍ରତା ଓ ଅନେକାଗ୍ରତା ଏହି ଦୁଇଟିର ପ୍ରୟୋଜନ ଦେଖାଯାଏ । କେତେବେଳେ ଗୋଟିକର ପ୍ରୟୋଜନ ହୁଏ ପୁଣି କେତେବେଳେ ଅନ୍ୟଟିର ପ୍ରୟୋଜନ ହୁଏ । ସେଥିପାଇଁ ମଣିଷକୁ ବ୍ୟୂହ ଏବଂ ସମୂହ ଦୁଇଟି କାର୍ଯ୍ୟ ହିଁ କରିବାକୁ ହୁଏ ।

(୯) ଓଁକାରର ଅର୍ଦ୍ଧମାତ୍ରା :

* ଅହମ୍
* "ଅ"କାରରୁ ପୃଥିବୀ ପରି ଦୃଢ଼ ।
* "ଉ"କାରରୁ ଅନ୍ତରୀକ୍ଷ ପରି ଗଭୀର ।
* "ମ"କାରରୁ ସ୍ୱର୍ଗ ପରି ଉଚ୍ଚ । ଏବଂ ଅର୍ଦ୍ଧମାତ୍ରାରୁ ତିନି ଲୋକ ଉପରେ ମୁଁ ବିଶ୍ୱକର୍ମା ।
* ଏଠାରେ ଅର୍ଦ୍ଧ ମାତ୍ରାର ଅର୍ଥ-

ବିରୋଧହୀନ ବୃତ୍ତି ।

ସବୁ ବିଷୟରେ ସହିଷ୍ଣୁତା ବା

ସର୍ବଭୂତରେ ଭଗବତ୍ ଭାବ ।

ଅବ୍ୟକ୍ତ ଈଶ୍ୱର ଓ ବ୍ୟକ୍ତି ଜଗତର ମଧ୍ୟବର୍ତ୍ତୀ ସ୍ଥାନରେ ଯେଉଁ ଶିକୁଳୀ ରହିଛି, ତାହା କିଛି ଅଂଶରେ ଅବ୍ୟକ୍ତ ଏବଂ କିଛି ଅଂଶରେ ବ୍ୟକ୍ତ ହେବା ଆବଶ୍ୟକ । ଓଁକାର ଏହିପରି ଗୋଟିଏ ଶିକୁଳୀ । ତାହା ନିଜର ଅ-ଉ-ମ୍ - ଏହି ଆକାର ରୂପରେ ବ୍ୟକ୍ତ ଜଗତରେ ବ୍ୟାପ୍ତ ଏବଂ ଓଁ ଏହି ସମଷ୍ଟି ଯୁକ୍ତ ଅବ୍ୟକ୍ତ ରୂପ୍‌ରେ ବ୍ରହ୍ମ ସହିତ ମିଳିତ ହୋଇ ରହିଅଛି । ଏଥିପାଇଁ ଏହାର ବର୍ଣ୍ଣନା କରିବା ସମୟରେ ଧ୍ୟାନରୁ ମୁନି "ତୂ କି ସଗୁଣ ମହଣୋ କି ନିର୍ଗୁଣରେ'' (ତୁମକୁ ସଗୁଣ କହିବି କି ନିର୍ଗୁଣ କହିବି)-ଏହି ସମସ୍ୟାର ପଡ଼ନ୍ତି । ଅ+ଉ+ମ୍ = ଓଁ ଏହି (ସମୀକରଣ) ଯେଉଁ ଧ୍ୱନି ତ୍ରୟର ଏକକୀକରଣ ତାହା ଗାଣିତିକ ନୁହେଁ, ବରଂ ରାସାୟନିକ କୁହାଯାଏ । ୨+୪=୬, ଏହା ହେଲା ଗଣିତର ସମୀକରଣ । ଚୂନ+ହଳଦୀ=ଲାଲ ରଂଗ ଏହାକୁ ରାସାୟନିକ ସମୀକରଣ କୁହାଯିବ । ପ୍ରଥମ ସମୀକରଣଟିର ପୂର୍ବର ଅଂଶ (ପୂର୍ବପକ୍ଷ) ଏବଂ ପରବର୍ତ୍ତୀ ଅଂଶ(ଉତ୍ତରପକ୍ଷ) ଏହି ଦୁଇଟିର ମଝିରେ ଯେଉଁ ସମାନ ଚିହ୍ନ(=) ଅଛି ତାହା ସମତାର ନିର୍ଦ୍ଦେଶକ । ଦ୍ୱିତୀୟ ସମୀକରଣଟିର ଅବସ୍ଥାନ ସେପରି ନୁହେଁ । ପୂର୍ବ ପକ୍ଷର ଦୁଇଟି ପଦାର୍ଥର ମିଳନ ଫଳରେ ପଦାର୍ଥ ଦୁଇଟି ଲାଲ ରଙ୍ଗରେ ପରିଣତ ହୋଇଛି । ତାଛଡ଼ା ସେଥିରେ ଗୋଟିଏ ସ୍ୱତନ୍ତ୍ର ଗୁଣର ବିକାଶ ଦେଖା ଦେଇଛି, ଯାହା ମଧ୍ୟରେ ଦୁଇଟି ପଦାର୍ଥର ଅସ୍ତିତ୍ୱ ଆଦୌ ନାହିଁ । ଅ+ଉ+ମ =ଓଁ ସମୀକରଣଟିର ମଧ୍ୟ ଏ ପ୍ରକାର ଅବସ୍ଥା । ଓଁକାର ଧ୍ୱନୀରେ ଅ+ଉ+ମ୍ ଏହି ତିନୋଟି ମାତ୍ରା ହିଁ ସମ୍ମିଳିତ ଭାବରେ ଯୁକ୍ତ ହୋଇ ଅଛି । ପୁଣି କୁହାଯାଇଛି ଯେ ଯେହେତୁ ଓଁକାର ଧ୍ୱନିରେ ଏହି ତିନୋଟି ମୂଳ ମାତ୍ରାଠାରୁ ଆହୁରି ଅଧିକ ଅର୍ଥ ରହିଛି, ସେଥିପାଇଁ ଓଁକାର ସାଢ଼େ ତିନି ମାତ୍ରା ବିଶିଷ୍ଟ ବୋଲି ଧରାଯାଏ ।

ସମୀକରଣଟିରେ ତିନିମାତ୍ରା ଉପରେ ଯେଉଁ ଅର୍ଦ୍ଧମାତ୍ରା ରହିଛି ତାହା କେଉଁଠାରୁ ଆସିଅଛି ? ଯେହେତୁ ତିନୋଟି ମାତ୍ରାର ଭିନ୍ନ ଭିନ୍ନ ଅର୍ଥ କରି, ତାହାକୁ ଯୁକ୍ତ କରିବା ଫଳରେ ଓଁକାର ଧ୍ୱନି ମଧ୍ୟରୁ ବୈଦିକ ଋଷିମାନେ ସାଢ଼େ ତିନିମାତ୍ରା ବାହାର କରି ନେଇଛନ୍ତି । ଉଦାହରଣ ଦେବାକୁ ଯାଇ ଋଷି ଅ+ବାଣୀ, ଉ=ମନ, ମ୍=ପ୍ରାଣ ଏହିପରି ଅର୍ଥର ଅବତାରଣା କରି ଓଁ=ଆତ୍ମା=ଏହି ଉତ୍ତର ଉଦ୍‌ଭାବନ କରିଛନ୍ତି । ଏହା କିପରି କଲେ ? ଅର୍ଥାତ୍ ଯଦି ତିନି ମାତ୍ରାର ଅର୍ଥ ପୃଥ୍ୱୀ, ଅନ୍ତରୀକ୍ଷ, ଓ ସ୍ୱର୍ଗ କରାଯାଏ ତାହାହେଲେ ଓଁକାର ଅର୍ଥାତ୍ ଏହି ତିନୋଟିକୁ ଯୋଡ଼ିଦେଇ 'ତ୍ରିଲୋକ' ଏହି ଅର୍ଥ ଆସିଯାଏ । କିନ୍ତୁ ବୈଦିକ ଋଷିମାନେ ଯାହାଙ୍କଠାରୁ ତ୍ରିଲୋକ ଉଦ୍‌ଭବ ହୋଇଛି ସେହି ଦେବରାଜଙ୍କ କଥା କହିଛନ୍ତି । ଏହାର ଅର୍ଥ କଣ ? ଜଗତ୍‌ର ଅର୍ଥ କିପରି ଜଗଦୀଶ ହୋଇପାରିବ ? ଯଦି ତ୍ରିମାତ୍ରାର ଅର୍ଥ ସ୍ୱପ୍ନ-ଜାଗରଣ-ସୁସୁପ୍ତି ଏହି ତିନି ଅବସ୍ଥାକୁ କୁହାଯିବ ତାହା ହେଲେ ସେମାନଙ୍କର ଯୁକ୍ତ ଫଳର ସବୁ ଅବସ୍ଥାର ସାକ୍ଷୀ ସ୍ୱରୂପ ତୃତୀୟ ଅବସ୍ଥାର ପ୍ରତିଫଳନ କିପରି ହୁଏ ? ଏହା ହିଁ ପ୍ରଶ୍ନ ।

ଏହି ପ୍ରଶ୍ନର ସମାଧାନ ପୂର୍ବରୁ ଗୋଟିଏ ବିଷୟ ମନେ ରଖିବା ପ୍ରୟୋଜନ । ଓଁକାରର ତିନିମାତ୍ରା ଅ,ଉ,ମ୍- ସାଧାରଣତଃ ଏହାର କୌଣସି ଅର୍ଥ ନାହିଁ । ଏଗୁଡ଼ିକ ବର୍ଣ୍ଣମାଳାର ବର୍ଣ୍ଣମାତ୍ର । କିନ୍ତୁ ଯେତେବେଳେ "ଅ''ର ଅର୍ଥ ପୃଥ୍ୱୀ, ବାକ୍ ଇତ୍ୟାଦି କରାଯାଏ ସେତେବେଳେ "ଅ'' ଏହି ଅକ୍ଷର ସ୍ଥାନରେ ପୃଥ୍ୱୀ ଅଥବା ବାଣୀ ମୂର୍ତ୍ତିରୂପ ଦେଖାଯାଏ । ଏହିପରି ଭାବରେ ଧ୍ୟାନରେ ଚିନ୍ତନ

କ୍ରିୟାର କଳ୍ପନା କରାଯାଏ । ଅ,ଉ,ମ୍-ଏହି ତିନିଟି ମାତ୍ରାକୁ ନେଇ ପ୍ରଥମେ ଧ୍ୟାନ ଚିନ୍ତନ କରି ତାପରେ ପୁଣି ଯୁକ୍ତ କରି ଏବଂ ମାତ୍ରା ତିନୋଟିକୁ ଯୋଡ଼ିନେଇ ପୁଣି ଧ୍ୟାନ ଚିନ୍ତନ କରିବା, ଏହି ଦୁଇଟି ଭିତରେ ଅନେକ ପାର୍ଥକ୍ୟ ରହିଛି ।

ବିଷୟଟିକୁ ଭଲ ଭାବରେ ବୁଝିବା ପାଇଁ ମୁଁ ବୀଜ ଗଣିତର ଗୋଟିଏ ଉଦାହରଣ ଦେଉଛି । କ୨ + ଚ୨ ଏବଂ (କ+ଚ)୨ ଏହି ଦୁଇଟି ବୈଦିକ ପଦ । ପ୍ରଥମଟିରେ ପ୍ରଥମେ କ ଏବଂ ଚ ଏହି ଦୁଇଟି ପଦକୁ ବର୍ଗ କରି ପୁଣି ଏହି ବର୍ଗକୁ ଯୋଗକରି ତାପରେ ପୁଣି ତାକୁ ବର୍ଗ କରାଯାଇଛି । ଏଥିପାଇଁ ଦ୍ୱିତୀୟ ପଦରେ "କଚ'' ଗୋଟିଏ ନୂଆ ପଦ ଅଥବା ଅର୍ଦ୍ଧମାତ୍ରାର ସୃଷ୍ଟି ହୋଇଛି ଏବଂ ଏହି ପଦର ମୂଲ୍ୟ ହେବ କ୨+ଚ୨+୨ କଚ । ଏହି ସିଦ୍ଧାନ୍ତ ଅନୁଯାୟୀ ଅ+ଉ+ମ୍=ଓଁ ଯଦି ସାମର୍ଥ ବୋଧକ ସମୀକରଣ ହୁଏ, ଅର୍ଥାତ୍ ତାର ଦୁଇ ପକ୍ଷର ମାତ୍ରା ଅଥବା ମୂଲ୍ୟମାନ ଏକପ୍ରକାର ହୁଏ, ତଥାପି "ଅ' ଧ୍ୟାନ + "ଉ'' ଧ୍ୟାନ + "ମ'' ଧ୍ୟାନ ଏହି ଫଳର ପ୍ରତ୍ୟାଶିତ ଓଁ ଧ୍ୟାନ, ଏହି ସିଦ୍ଧାନ୍ତରେ ମୂଲ୍ୟର ମାନ ଅଧିକ ହେବା ଉଚିତ । ଏହାର ମୂଲ୍ୟ କେତେ ହେବ, ତାହା ଭଲ ଭାବରେ ଧ୍ୟାନ କରିବା ଛଡ଼ା ଯଦି ସଂଭବ ନହୁଏ ତଥାପି ଏହାର ମୂଲ୍ୟ ଅଧିକ ହେବା ଉଚିତ ବା ହେବା ସଂଭବ, ଏପରି କଳ୍ପନା କରିବା ଭିତରେ ତ କୌଣସି ଆପତ୍ତି ନାହିଁ । ଯୋଗୀ ପୁରୁଷମାନେ ଏହି ଅତିରିକ୍ତ ମୂଲ୍ୟଟିକୁ ଅର୍ଦ୍ଧମାତ୍ରା ପରି ସାଂକେତିକ ସଂଜ୍ଞା ଦ୍ୱାରା ପ୍ରକାଶ କରନ୍ତି । ତାତ୍ପର୍ଯ୍ୟ ହେଉଛି ଯେ ଅ+ଉ+ମକୁ ଯୁକ୍ତ କରିବା ଦ୍ୱାରା ପ୍ରତ୍ୟାଶିତ ସମଷ୍ଟି ମଧ୍ୟରେ "ଅର୍ଦ୍ଧମାତ୍ରା'' ଅଧିକ ହେବା ଉଚିତ, ଏକଥା ଭୁଲିଗଲେ ଚଳିବ ନାହିଁ ।

ଯଦି "ଅ'' କାରର ଧ୍ୟାନ କରାଯିବ, ତେବେ ପୃଥିବୀର ପ୍ରଭୁ ବୋଲି ପରିଗଣିତ ହେବ, "ଉ'' କାରର ଧ୍ୟାନ କଲେ ଅନ୍ତରୀକ୍ଷରେ ତୁମର ଅଧିକାର ପ୍ରତିଷ୍ଠିତ ହେବ, "ମ'' କାରର ଧ୍ୟାନ କରିବା ଫଳରେ ତୁମେ ସ୍ୱର୍ଗର ସ୍ୱାମୀ ହେବାର ଶକ୍ତି ଅର୍ଜନ କରିବ । ଆଉ ଯଦି ସ୍ୱତନ୍ତ୍ର ଭାବରେ ତିନିଟିର ଧ୍ୟାନ କରିବ ତାହାହେଲେ ଜଗତ୍‌ଜୟୀ ପୁରୁଷ ବୋଲି ପରିଗଣିତ ହେବ । କିନ୍ତୁ ଜଗତବିଜେତା ବୋଲି ବିଖ୍ୟାତ ହେବା ପରେ ମଧ୍ୟ ଜଗଦୀଶଙ୍କୁ ହସ୍ତଗତ କରା ଯାଇପାରିବ ନାହିଁ । ଜଗଦୀଶ୍ୱରଙ୍କୁ ପାଇବା ପାଇଁ ହେଲେ ତିନିମାତ୍ରା ଯୁକ୍ତ କରି ଓଁକାରର ଧ୍ୟାନ କରିବାକୁ ହେବ । ଏହି ଯୋଗଶକ୍ତି ଦ୍ୱାରା ଆହୁରି ଅଧା ମାତ୍ରା ବଢ଼ିଯିବ ଏବଂ ସେତେବେଳେ ଜଗ= ଜଗଦୀଶ ଏହି ସମୀକରଣର ସମାଧାନ ହୋଇଯିବ ।

ତିନିମାତ୍ରା ସହିତ ଯୁକ୍ତ ହୋଇଥିବା ଅର୍ଦ୍ଧ ମାତ୍ରାର ପୃଥକ୍ ନିର୍ଦ୍ଦେଶନା ଛଡ଼ା ପୂର୍ଣ୍ଣତା ଲାଭ ହେବ ନାହିଁ । ଅଥବା ଏକେବାରେ ତାହାହେବା ସଂଭବ ନୁହେଁ । "ମୁଁ "ଅ'କାର ଦ୍ୱାରା ପୃଥିବୀ ପରି ଦୃଢ଼, "ଉ'' କାର ଦ୍ୱାରା ଅନ୍ତରୀକ୍ଷ ପରି ଗଭୀର, "ମ''କାର ଦ୍ୱାରା ସ୍ୱର୍ଗ ପରି ଉଚ୍ଚ(ଉନ୍ନତ)-ଏତିକି କେବଳ ନୁହେଁ, ପରନ୍ତୁ ଏହି ତିନିମାତ୍ରା ଦ୍ୱାରା ମୁଁ ତ୍ରିଭୁବନରେ ବ୍ୟାପ୍ତ ହୋଇରହିଛି, ମୁଁ ହୋଇଛି ବିଶ୍ୱରୂପ-ଏହିପରି ଧ୍ୟାନ କରିବା ଦ୍ୱାରା ଋଷିମାନଙ୍କ ମନରେ ସନ୍ତୋଷ ଆସେ ନାହିଁ । ଅର୍ଦ୍ଧ ମାତ୍ରା ଦ୍ୱାରା ମଧ୍ୟ ଋଷିଙ୍କ ମନରେ ସନ୍ତୋଷ ଆସେ ନାହିଁ ।'' ଅର୍ଦ୍ଧମାତ୍ରା ଦ୍ୱାରା ମୁଁ , "ତ୍ରିଲୋକ ଅତିକ୍ରମ କରି, ତ୍ରିଲୋକର ଅଭିଳାଷ ଅନୁଯାୟୀ ଆକୃଷ୍ଟ ହୋଇ ରୂପକାର

ବିଶ୍ୱକର୍ମାରେ ପର୍ଯ୍ୟବେସିତ।'' ଏହା ହେଉଛି ସେମାନଙ୍କର ଧ୍ୟାନ-ଚିନ୍ତନ। କିନ୍ତୁ ଏହି ସମୀକରଣର ସମାଧାନ ହେବା ପରେ ମଧ୍ୟ ମନରେ ଏ ପ୍ରକାର ପ୍ରଶ୍ନ ଉଠିପାରେ ଯେ, ଧ୍ୟାନ ସାହାଯ୍ୟରେ ଯଦି ଏହି ସମୀକରଣର ସମାଧାନ କରିବାକୁ ହେବ ଅର୍ଥାତ ଧ୍ୟାନପାଇଁ କୌଣସି ବ୍ରହ୍ମବାଚକ କାଳ୍ପନିକ ସଂକେତ ତିଆରି କରିବାକୁ ହେବ, ତାହାହେଲେ ତହିଁରେ ନିଜର ମନର ଅନ୍ତର୍ନିହିତ ଅର୍ଥ ରହିବାର ପ୍ରୟୋଜନ ନାହିଁ। ଏପ୍ରକାର କଥା ଯଦି ହୁଏ, ତାହାହେଲେ ଓଁକାରକୁ ନିର୍ବାଚନ କରିବା ମଧ୍ୟରେ କି ବୈଶିଷ୍ଟ୍ୟ ରହିଛି ? ଏହି ଓଁକାରକୁ ବା କାହିଁକି ପସନ୍ଦ କରାଯାଇଛି ? ଏଥିପାଇଁ କି, ଝଙ୍କାରକୁ ପସନ୍ଦ କରାହୋଇନାହିଁ ବୋଲି, କିନ୍ତୁ ଏ ଉତ୍ତର ଠିକ୍ ନୁହେଁ। ଓଁକାର ଭିତରେ ଯେଉଁ ଅନ୍ତର୍ନିହିତ ଶକ୍ତି ରହିଛି ତାହା ଅନ୍ୟ କେଉଁଠାରେ ନାହିଁ। ଆଉ ଏହି ଅନ୍ତର୍ନିହିତ ଶକ୍ତି ଋଷିମାନଙ୍କର ସମଗ୍ର ଦର୍ଶନର ରହସ୍ୟ (ଗୁଢ଼ ତତ୍ତ୍ୱ) 'ସର୍ବେଷମ ବିରୋଧେନ ବ୍ରହ୍ମକର୍ମ ସଭାରମ୍ଭେ'-ଏହି ପ୍ରତିଜ୍ଞାରେ ଏକଥା ବ୍ୟକ୍ତ କରାହୋଇଛି ଯେ, କାହାରି ସହିତ ବିରୋଧ ନକରି ମୁଁ ମୋର ଧର୍ମ ଆଚରଣ କରିବି। ସବୁ ପ୍ରକାର ଧର୍ମ ପ୍ରତି ନିର୍ବିରୋଧ ହେବା, ଅଭେଦ ଦୃଷ୍ଟି ରଖିବା, ଐକ୍ୟ ଭାବ ବଜାୟ ରଖିବା, ଏହା ହେଲା ଅଦ୍ୱୈତ ଚିନ୍ତା ଅଥବା ଏହା ହେବା ଉଚିତ। ଯେ କୌଣସି ଧର୍ମ ଗ୍ରହଣ କରନ୍ତୁ ନା କାହିଁକି, ଦୁନିଆରେ ବିଭେଦ କିପରି କମ୍ କରାଯାଇପାରିବ ଏହି ପ୍ରକାର ଚିନ୍ତା ହିଁ ତାକୁ କର୍ମରେ ପ୍ରବୃତ୍ତ (ନିଯୁକ୍ତ) ରଖିଥାଏ।

ବ୍ରାହ୍ମଣ ଧର୍ମ, କ୍ଷତ୍ରିୟ ଧର୍ମ ବା ପୁତ୍ର ଧର୍ମ, ଶିଷ୍ୟ ଧର୍ମ ଇତ୍ୟାଦି ସବୁ ଗୁଡ଼ିକ ସଂକୀର୍ଣ୍ଣ ଧର୍ମର ଉତ୍ପତି, ଅଭେଦଭାବ ଜାଗ୍ରତ କରିବା ପାଇଁ ସୃଷ୍ଟି ହୋଇଛି, ଏଥିପାଇଁ ଅଭେଦ ଭାବ ମଧ୍ୟରେ ହିଁ ଏଗୁଡ଼ିକ ବିଲୟ ପ୍ରାପ୍ତ ହୁଅନ୍ତି। ଯେଉଁ ମନୁଷ୍ୟ ସର୍ବଘଟରେ ଈଶ୍ୱର ଦର୍ଶନ କରନ୍ତି, ତାହାଙ୍କୁ ଉଦ୍ଦେଶ୍ୟ କରି ଉପନିଷଦରେ କୁହାଯାଇଛି ପିତା, ପିତା ନୁହନ୍ତି, ମାତା -ମାତା ନୁହନ୍ତି। ବେଦ, ବେଦ ନୁହେଁ। ବ୍ରାହ୍ମଣ ଧର୍ମ ସୀମିତ ଧର୍ମ। ଏଥିପାଇଁ ଯଦିଓ ତାର ଦୃଢ଼ ସଂକଳ୍ପ " ମୁଁ ଜଣେ ବ୍ରାହ୍ମଣ, ତଥାପି ତାର ଅର୍ଥ ନୁହେଁ ଯେ, ମୁଁ ବ୍ରାହ୍ମଣେତର ନୁହେଁ। ମୁଁ କ୍ଷତ୍ରିୟ, ବୈଶ୍ୟ, ଶୁଦ୍ର, ଅନ୍ତ୍ୟେଜ ସବୁ ମୁଁ, କିନ୍ତୁ ମୁଁ ନିଜକୁ ବ୍ରାହ୍ମଣ ଏହି ସଂକୀର୍ଣ୍ଣ ସୀମାବଦ୍ଧ ଅଥବା ବିନମ୍ର ଶବ୍ଦ ଦ୍ୱାରା ସମ୍ବୋଧନ କରିଥାଏ। ମୁଁ ବ୍ରାହ୍ମଣ ଏକଥା କହିବା ଭିତରେ ପରମେଶ୍ୱରଙ୍କର ଗୋଟିଏ ଅଙ୍ଗକୁ ସ୍ୱୀକାର କରୁଛି, କିନ୍ତୁ ମୁଁ ଚର୍ମକାର ନୁହେଁ, ଏହାର ଯଦି ଏହି ଅର୍ଥ ହୁଏ, ତାହାହେଲେ ଏହାଦ୍ୱାରା ଏହି ପରମେଶ୍ୱରଙ୍କର ଅପର ଅଙ୍ଗକୁ ମୁଁ ଅସ୍ୱୀକାର କରୁଛି। ବା ତିରସ୍କାର କରୁଛି। ଏଥିପାଇଁ ଈଶ୍ୱରଙ୍କୁ ମୁଁ ଯେତେ ଅଂଶରେ ସ୍ୱୀକୃତି ଦେଇଛି ସେତିକି ଅଂଶରେ ହିଁ ତାହା ଅସ୍ୱୀକୃତ ହୋଇଯାଏ, ଯେହେତୁ ଏହା ଈଶ୍ୱର ଦ୍ରୋହୀ ବୋଲି ପ୍ରମାଣ କରିଥାଏ।

ଏଥିପାଇଁ ଯଦିଓ ମୁଁ ମୋର ବିଶଷ୍ଟ ବ୍ରାହ୍ମଣ ଧର୍ମ ପାଇଁ ତିନୋଟି ମାତ୍ରାକୁ ରଖିଛି, ତଥାପି ଅର୍ଦ୍ଧମାତ୍ରା ଅନ୍ୟ ସବୁ ବ୍ରାହ୍ମଣେତର ଧର୍ମ ପାଇଁ ରଖି ଏହି ସାଢ଼େ ତିନି ମାତ୍ରା ବିଶିଷ୍ଟ ଓଁକାରର ଉପାସନା କରିବା ମୋ ଧର୍ମର ବାସ୍ତବିକ୍ ଅର୍ଥ। ଆଉ ଏଠାରେ ମଧ୍ୟ ଶେଷ ତିନିମାତ୍ରାଠାରୁ ଅର୍ଦ୍ଧମାତ୍ରାର ମୂଲ୍ୟ ଅଧିକ।

ଏହି ଅର୍ଦ୍ଧମାତ୍ରା ହେଲା "ଅବିରୋଧ ବୃତ୍ତି", "ସର୍ବ ସହିଷ୍ଣୁତା' ଅର୍ଥାତ୍ "ସର୍ବଭୂତେ ଭଗବତ୍ ଭାବନା', ଯାହାକୁ ଜୀବନର ମୂଳତତ୍ତ୍ୱ ବୋଲି କୁହାଯାଏ । ଏହାପରେ ସମଗ୍ର ଲୌକିକ ଅଥବା ଶାସ୍ତ୍ରୀୟ ଧର୍ମର ସୀମା ଲୁପ୍ତ ହୋଇଯାଏ । ଓଁକାର ମଧ୍ୟରେ; କୌଣସି ଧର୍ମକୁ ନିଷେଧାଜ୍ଞା ବା ଅସ୍ୱୀକାର ନ କରି ଏବଂ ସବୁ ଧର୍ମକୁ ସମର୍ଥନ ଅଥବା ଗ୍ରହଣ କରି ନିଜ ମଧ୍ୟରେ ଆତ୍ମସାତ୍ କରି, ଏହି ବିଶ୍ୱବ୍ୟାପକ ତତ୍ତ୍ୱକୁ ପ୍ରକାଶ କରିବାର ସାମର୍ଥ୍ୟ ରହିଛି । ଝଙ୍କାର ମଧ୍ୟରେ ଏହା ଅନୁପସ୍ଥିତ । ଏଥିପାଇଁ ଋଷିମାନେ ଓଁକାରକୁ ଧ୍ୟାନର ସର୍ବଶ୍ରେଷ୍ଠ ଅବଲମ୍ବନ ବୋଲି ଧରି ନେଇଛନ୍ତି ।

ଓଁକାରର ଏହି ଅନ୍ତର୍ନିହିତ ଶକ୍ତି କେଉଁ ପ୍ରକାରର ? ଓଁ ଯେହେତୁ ଗୋଟିଏ ଅବ୍ୟକ୍ତ ଧ୍ୱନି, ଲୌକିକ ଭାଷାରେ ଯଦିଓ ତାର କୌଣସି ଅର୍ଥ ସଂଭବପର ନୁହଁ, ଯେଉଁ ସବୁ ସ୍ଥାନରେ ଆମେ ହିନ୍ଦିରେ ହାଁ ବା ହୁଁ କହିଥାଉ ଏସବୁ ସ୍ଥାନରେ ଆମେ ସଂସ୍କୃତରେ ଓଁ କହିଥାଉ । ଓଁ ଗୋଟିଏ ଅନୁଜ୍ଞା ସୂଚକ ଅବ୍ୟୟ । ଉପନିଷଦରେ କୁହାଯାଇଛି, "ଓମିତ୍ୟେଜେ ଅନୁଜ୍ଞାକ୍ଷରମ୍' ।

ଈଶ୍ୱରଙ୍କ ସାମ୍ରାଜ୍ୟରେ ପ୍ରଜାମାନଙ୍କ ମଧ୍ୟରେ ପ୍ରତ୍ୟେକଙ୍କର ନିଜ ନିଜ ଧର୍ମର ଅନୁରୂପ ଆଚରଣର ସ୍ୱାଧୀନତା ଅଛି । କେବଳ ସେତିକି ନୁହେଁ, ଅଧର୍ମାଚରଣ ବା ଭୁଲ କରିବାର ସ୍ୱାଧୀନତା ମଧ୍ୟ ବିଶ୍ୱ ସମ୍ରାଟଙ୍କର ଅବ୍ୟକ୍ତ ସତ୍ତାରେ ଅନ୍ତର୍ଗତ ସମସ୍ତଙ୍କର ରହିଛି । ନିଜ ନିଜର ଦାୟିତ୍ୱ ବୋଧ ଜାଗ୍ରତ କର ଏବଂ "ଯଥେଚ୍ଛାସି ତଥା କରୁ "-ଯେପରି ଇଚ୍ଛା ହେଉଛି ସେହିପରି କର । ଏହି ବିରାଟ ସାମ୍ରାଜ୍ୟରେ ଏହା ହିଁ ଗୋଟିଏ ଆଦେଶ । ଏହି ପରି ଏହି ଦିବ୍ୟ ସାମ୍ରାଜ୍ୟରେ ଯେହେତୁ ସମସ୍ତଙ୍କ ପାଇଁ ସ୍ୱାଧୀନତାର ପୂର୍ଣ୍ଣ ଆଦେଶ ଅଛି, ଏଥିପାଇଁ ବହୁ ସାମ୍ରାଜ୍ୟ ଉଦୟ ହୋଇଛି ଏବଂ ସେଗୁଡ଼ିକର ଅସ୍ତ ମଧ୍ୟ ହୋଇଯାଇଛି । କିନ୍ତୁ ଟେନିସନ୍‌ଙ୍କର କବିତାର ପ୍ରଥମ ପଂକ୍ତି ପରି କେବଳ ମାତ୍ର ଏହି ସାମ୍ରାଜ୍ୟ ହିଁ ଚିରଦିନ ପାଇଁ ଉଦିତ, ଶାଶ୍ୱତ, ଅଚଞ୍ଚଳ ଏବଂ ଅବ୍ୟୟ । ସାର୍ବଜନିନ ସହନଶୀଳନତାର ଏହି ଅବ୍ୟୟ ସତ୍ତାକୁ ପ୍ରକାଶ କରିବା ପାଇଁ ଓଁ ଏହି ଅନୁଜ୍ଞା ସୂଚକ ଅବ୍ୟୟ ମଧ୍ୟରେ ନିଜର ଅଙ୍ଗୀଭୂତ ବ୍ୟକ୍ତିର ଉପସ୍ଥିତି ପାଇଁ ଋଷିମାନେ ଏହାକୁ ଧ୍ୟାନ ମନ୍ତ୍ର ରୂପେ ସ୍ୱୀକୃତି ଦେଇଥାନ୍ତି ।

(ଐ) ଧ୍ୟାନେନାତ୍ମନି ପଶ୍ୟନ୍ତି :

* ଆତ୍ମା ଦ୍ୱାରା

* ଆତ୍ମାକୁ

* ଆତ୍ମାରେ ଦେଖିବା

ଓଁକାର ଶବ୍ଦର ତିନିମାତ୍ରାକୁ ଲକ୍ଷ୍ୟ ରଖି ସମଗ୍ର ସୃଷ୍ଟି ଏବଂ ସୃଷ୍ଟି ତତ୍ତ୍ୱକୁ ତିନି-ତିନି ଭାଗରେ ବିଭକ୍ତ କରିବାର ଯେଉଁ ପଦ୍ଧତି ଉପନିଷଦରେ ଗ୍ରହଣ କରାଯାଇଛି ତାହା ଆଧ୍ୟାତ୍ମ ଶାସ୍ତ୍ରରେ ମଧ୍ୟ ପ୍ରଯୁଜ୍ୟ । ସମଗ୍ର ପରମାର୍ଥର ଯେଉଁ ତିନୋଟି ଭାଗ ଅଛି, ତାହା ଏହି ପ୍ରକାରର- (୧) ସିଦ୍ଧାନ୍ତ, (୨) ସାଧନା ଏବଂ (୩) ପୂର୍ବ ପ୍ରସ୍ତୁତି । ଗୀତାର ଭାଷାରେ ଏମାନଙ୍କୁ ସାଂଖ୍ୟ

ଧ୍ୟାନ ଏବଂ କର୍ମର ବିଶିଷ୍ଟ ସଂଜ୍ଞା ଦିଆଯାଇଛି । କେବେ କେବେ ସାଧନା ଏବଂ ପୂର୍ବ ପ୍ରସ୍ତୁତି ଦୁଇଟିକୁ ପୃଥକ୍ ଶ୍ରେଣୀ ଭୁକ୍ତ ନକରି ଦୁଇଟିକୁ ଗୋଟିଏ ସାଧନାର ଅନ୍ତର ଓ ବାହାର ଦୁଇଟି ଦିଗ ବୋଲି ମନେକରି ଦୁଇଟିକୁ ଏକତ୍ର କରି "ଯୋଗ" ନାମକ ବ୍ୟାପକ ସଂଜ୍ଞା ଦିଆଯାଇଥାଏ । ଏପରି କରିବା ପରେ ସାମଗ୍ରିକ ପରମାର୍ଥର ସିଦ୍ଧାନ୍ତ ଏବଂ (ଅନ୍ତରଙ୍ଗ ଓ ବହିରଙ୍ଗ) ସାଧନା, ଅଥବା "ସାଂଖ୍ୟ" ଏବଂ "ଯୋଗ" କେବଳ ମାତ୍ର ଏହି ଦୁଇଟି ବିଭାଗ ହୋଇଥାଏ ଏବଂ ଶେଷ ପର୍ଯ୍ୟନ୍ତ, ସାଧକର ଦୃଷ୍ଟିରେ ଯେହେତୁ କେବଳ ମାତ୍ର ସାଧନାର ଦିଗ୍‌ଦର୍ଶନ ପାଇଁ ସିଦ୍ଧାନ୍ତର ପ୍ରୟୋଜନ ହୋଇଥାଏ । ସେଥିପାଇଁ ଏହି ଦୁଇ ବିଭାଗର ସମଷ୍ଟି ବ୍ୟାପକ ସଂଜ୍ଞାର ଅନ୍ତର୍ଭୁକ୍ତ ହୋଇ ଏକା ଯୋଗର ସାଂଖ୍ୟ ଯୋଗ, ଧ୍ୟାନ ଯୋଗ ଏବଂ କର୍ମ ଯୋଗ ଏହି ତିନି ଶ୍ରେଣୀର ହୋଇଥାଏ । ଯୋଗକୁ ଯଦି ଆମେ ପରମାର୍ଥର ଆତ୍ମ ସ୍ୱରୂପ ମନେ କରିବା, ତାହାହେଲେ ଏହି ଆତ୍ମାର ତିନୋଟି ଅଙ୍ଗକୁ ନିମ୍ନ ଲିଖିତ ଭାବରେ କଳ୍ପନା କରାଯାଇଥାଏ -

ସାଂଖ୍ୟ ଯୋଗ ମନ
ଧ୍ୟାନ ଯୋଗ ପ୍ରାଣ
ଏବଂ କର୍ମଯୋଗ ହେଲା ବାଣୀ ।
ଧ୍ୟାନେନାତ୍ମନି ପଶ୍ୟନ୍ତି କେଚିଦାତ୍ମନ ମାତ୍ମନା ।
ଅନ୍ୟେ ସାଂଖ୍ୟେନ ଯୋଗେନ କର୍ମ ଯୋଗେନ ଚାପରେ ।।

କେହି ଧ୍ୟାନ ମାର୍ଗ ଦ୍ୱାରା, କେହି ସାଂଖ୍ୟମାର୍ଗ ଦ୍ୱାରା କେହି କେହି ବା କର୍ମମାର୍ଗ ଦ୍ୱାରା ଆତ୍ମ ଦର୍ଶନ କରିଥାଆନ୍ତି । (ଗୀତା ୧୩/୧୪) । ଏହି ବାକ୍ୟରେ ଯଦିଓ ଗୀତାରେ ମୋକ୍ଷ ଲାଭର ଉପାୟ ରୂପେ-ସାଂଖ୍ୟ, ଧ୍ୟାନ ଓ କର୍ମ ମାର୍ଗ ଏହି ତିନୋଟି ସ୍ୱତନ୍ତ୍ର ପଥ ଦେଖା ହୋଇଅଛି, ତଥାପି ଏହି ତିନୋଟିର ତିନି ସ୍ୱତନ୍ତ୍ର ଜୀବନ ଧାରା ରୂପେ ମନେ ନକରି, ଗୋଟିଏ ଜୀବନର ତିନିଟି ପାହାଚ କୁହାଯାଏ । ପୁଣି କୁହାଯାଏ ଯେ କୌଣସି ପ୍ରକାର ସଫଳ ଜୀବନରେ ଯେପରି ଅନେକ ସଂଯୁକ୍ତ ଜୀବନ ଓତଃପ୍ରୋତ ଭାବରେ ଜୋଡ଼ି ହୋଇଥାଏ, ସେହିପରି ପରମାର୍ଥ ମାର୍ଗରେ ସ୍ୱାଭାବିକ ଭାବରେ ଏହି ତିନି ପ୍ରକାରର ପ୍ରସଙ୍ଗ ବହିର୍ଭୂତ ମାର୍ଗ ରହିଛି । ଉପରେ ଉଲ୍ଲେଖ କରାଯାଇଥିବା ଗୀତା-ବାଣୀରେ ତିନିପ୍ରକାର ପଥରେ ହିଁ ସାଧକର ଆତ୍ମ-ଦର୍ଶନ ହୋଇଥାଏ । ଏହି ଭାବ ପ୍ରକାଶ କରିବାକୁ ଯାଇ "ଆତ୍ମା ସାହାଯ୍ୟରେ ଆତ୍ମାକୁ, ଆତ୍ମା ଭିତରେ ଦଶର୍ନ କରିବା" ଏହି ପ୍ରକାର ଚକ୍ରାକାର ଭାଷାର ପ୍ରୟୋଗ କରା ହୋଇଅଛି । କିନ୍ତୁ ଏହି ତିନୋଟି ବାଟକୁ ଏକତ୍ରିତ କରି କେବଳ ଗୋଟିଏ ବିଶାଳ ମାର୍ଗ ପ୍ରସ୍ତୁତ ହୋଇଛି-ଏପରି କଳ୍ପନା ଯଦି କରାଯାଏ, "ତାହାହେଲେ ଆତ୍ମା ଦ୍ୱାରା ଦେଖିବା"-କର୍ମଯୋଗର ତତ୍ତ୍ୱ, "ଆତ୍ମାକୁ ଦେଖିବା"-ସାଂଖ୍ୟ ଯୋଗର ତତ୍ତ୍ୱ, ଏବଂ ""ଆତ୍ମାରେ ଦେଖିବା"-ଧ୍ୟାନ ଯୋଗର ତତ୍ତ୍ୱ, ଏହି ଭାବରେ ପୃଥକୀକରଣ କରାଯାଇପାରେ । ପୁଣି ତିନିଟି ମାର୍ଗକୁ ମିଶାଇଦେବା ପରେ, ଆତ୍ମାଦ୍ୱାରା ଆତ୍ମାକୁ , ଆତ୍ମା ମଧ୍ୟରେ ଦେଖିବାର ପ୍ରକ୍ରିୟା ସଂପୂର୍ଣ୍ଣତା ଲାଭ କରେ । ଏହି ପରି ଗୁଡ଼େଇ ତୁଡ଼େଇ ହୋଇଥିବା ଭାଷା ମଧ୍ୟରେ ଗୋଟିଏ ରଚନାତ୍ମକ ଅର୍ଥ ନିହିତ ହୋଇ ରହିଛି ।

ଉପନିଷଦରେ ବ୍ରହ୍ମବିଦ୍ୟା ସଂବନ୍ଧୀୟ ଯାବତୀୟ ଅର୍ଥ ସଂକ୍ଷିପ୍ତ ରୂପେ ଓଁକାର ଶବ୍ଦ ମଧ୍ୟରେ ଏକୀଭୂତ ହୋଇ ରହିଛି । ଏଥିପାଇଁ ସେଥିରେ ପରମାର୍ଥ-ବୃକ୍ଷ ସମ୍ପର୍କରେ ଉପରେ ବର୍ଣ୍ଣନା କରାଯାଇଥିବା ତିନିଟି ଶାଖା ବୀଜ ରୂପେ ସମାବିଷ୍ଟ ହୋଇଅଛି । ଏହାର ଉପଲବ୍ଧି ପାଇଁ "ଓଁ ତତ୍ ସତ୍"ର ଶରଣାପନ୍ନ ହେବା ଆବଶ୍ୟକ । ଓଁ ତତ୍ ସତ୍ ସଂକେତ ମଧ୍ୟରେ ଓଁକାରର ବ୍ୟକ୍ତ ଓ ଅବ୍ୟକ୍ତ ସୃଷ୍ଟି ମଧ୍ୟରେ ସନ୍ନିବିଷ୍ଟ ଅର୍ଥ ସୁସ୍ପଷ୍ଟ କରିବା ପାଇଁ ସତ୍ ଏବଂ ତତ୍ ସଂଜ୍ଞା ଦୁଇଟି ରଖି ଦିଆହୋଇଛି । ଯଦି ଓଁକାରର ସତ୍ତା ଦେଖିବାକୁ ହେବ ତାହାହେଲେ ଓଁ ସତ୍‌ର ଉପାସନା କରିବା ଆବଶ୍ୟକ ଏବଂ ଓଁକାର ତତ୍ତ୍ୱ ଦେଖିବାକୁ ହେଲେ ଓଁ ତତ୍‌ର ଉପାସନା କରିବାକୁ ହେବ । କିନ୍ତୁ ପ୍ରଥମେ ସତ୍ତାକୁ ଉତ୍ତମ ରୂପେ ଦେଖିବାଛଡ଼ା ତତ୍ତ୍ୱ ଉପଲବ୍ଧି ଆଶା କରିବା ସଂଭବ ନୁହେଁ । "ସତ୍" ଈଶ୍ୱରଙ୍କର ବ୍ୟକ୍ତ ଅଥବା ସଗୁଣ ରୂପ । ଏବଂ "ତତ୍" (ଅର୍ଥାତ୍ ସେ) ଅବ୍ୟକ୍ତ ବା ନିର୍ଗୁଣ ରୂପ । ସେ ଅର୍ଥାତ୍ ଦୃଶ୍ୟ ହେଉଥିବା ଦୃଷ୍ଟିର ବାହାରେ ଅର୍ଥାତ ଯାହା "ଏହା" ନୁହେଁ, ତାର ଅର୍ଥ ଏହି ପ୍ରକାର । "ନେତି, ନେତି ଅଭାବାତ୍ମକ ଆଦେଶର ଭାବାତ୍ମକ ରୂପାନ୍ତର ହେଲା ତତ୍ । ସୃଷ୍ଟିର ବାହାରେ ଯେଉଁ ପରମେଶ୍ୱର ଅଛନ୍ତି ତାହା କିପରି, ସେହି ଅନୁଭବ ଲାଭ କରିବା ପୂର୍ବରୁ ସୃଷ୍ଟିର ଭିତରେ ଯେଉଁ ପରମେଶ୍ୱର ଅଛନ୍ତି ତାର ରୂପ କ'ଣ ତାହା ଚିହ୍ନିବା ଆବଶ୍ୟକ । ପରମେଶ୍ୱରଙ୍କର ତାତ୍ତ୍ୱିକ ସ୍ୱରୂପ (ତତ୍ କିମ୍ବା ସେ ଏହି ଭାବ)କୁ ଉପଲବ୍ଧି କରିବା ପାଇଁ ପରମେଶ୍ୱରଙ୍କର ସ୍ୱତ୍ୱ ଗୁଣ ସମ୍ପନ୍ନ ଯେଉଁ ଅବସ୍ଥା (ଅର୍ଥାତ୍ ଅଛନ୍ତି ଏହି ଭାବ) ତାହାକୁ ଉପଲବ୍ଧି କରିବା ସାଧନ ସ୍ୱରୂପ ହୋଇପାରେ ।

ଓଁ ଗୋଟିଏ ଗୁଢ଼ ଧ୍ୱନି, ଏଥିପାଇଁ ତାର ଗୁପ୍ତ ଅର୍ଥ "ତତ୍" ଦ୍ୱାରା ସୂଚିତ କରାଯାଏ । ଏହିପରି "ସନାତନ" ହିଁ ଏହି ରୂପରେ ବିଖ୍ୟାତ । ଏଥିପାଇଁ ତାର ପ୍ରକାଶ୍ୟ ଅର୍ଥ "ସତ୍" ଦ୍ୱାରା ଦେଖାଯାଏ । ସାଂଖ୍ୟ, ଧ୍ୟାନ ଓ କର୍ମ, ପରମାର୍ଥ ପ୍ରାପ୍ତିର ଏହି ତିନୋଟି ବାଟ ଏହି "ସତ୍" କାର ମଧ୍ୟରେ ଗୃହୀତ ହୋଇ ରହିଛି ଏବଂ "ତତ୍" କାର ଦ୍ୱାରା ପରମାର୍ଥର ଅର୍ଦ୍ଧମାତ୍ରା ଦେଖାଯାଇଅଛି । ପ୍ରକାଶ୍ୟ ଅର୍ଥରେ ଓଁ ସତ୍ ଏବଂ ଗୁଢ଼ ଅର୍ଥରେ ଓଁ ତତ୍ ଏହିପରି ଓଁକାରର ଦୁଇଟି ଅର୍ଥ । ଓଁ କାରର ଗୁଢ଼ ଅର୍ଥ ଶବ୍ଦ ଦ୍ୱାରା ବ୍ୟାଖ୍ୟା କରାଯାଏ ନାହିଁ । ବରଂ ସାଧକ ପକ୍ଷରେ ତାର ବିଶେଷ ଆବଶ୍ୟକତା ମଧ୍ୟ ନାହିଁ । ପ୍ରକାଶ୍ୟ ଅର୍ଥ ହିଁ ସାଧକ ପକ୍ଷରେ ଉପଯୋଗୀ । ତେଣୁ ସାଂଖ୍ୟ ଯୋଗ, ଧ୍ୟାନଯୋଗ ଏବଂ କର୍ମଯୋଗର ମାତ୍ରା ତିନିଟି ଗୋଟିଏ "ସତ୍" କାର ର ମଧ୍ୟରେ କିପରି ଗୁପ୍ତ ଭାବରେ ଅବସ୍ଥାନ କରିଛି, ଏହା ବୁଝାଇବା ପାଇଁ "ସତ୍"କାରର ବିଭିନ୍ନ ଅର୍ଥର ପରୀକ୍ଷା-ନିରୀକ୍ଷା ହେବା ଉଚିତ । ଭଗବତ୍ ଗୀତାରେ-

ସଦ୍‌ଭାବେ ସାଧୁଭାବେ ଚ ସଦିତ୍ୟେତ୍ ପ୍ରଯୁଜ୍ୟତେ ।

ପ୍ରଶସ୍ତେ କର୍ମଣି ତଥା ସତ୍ ଶବ୍ଦଃ ପାର୍ଥ ଯୁଜ୍ୟତେ ॥

ଏହି ଶ୍ଳୋକରେ ସତ୍ ଶବ୍ଦର ଅର୍ଥ କୁହାଯାଇଛି ଯେ (୧) ସଦ୍‌ଭାବ (୨) ସାଧୁଭାବ ଏବଂ (୩) ପ୍ରଶସ୍ତ କର୍ମ । ସଦ୍‌ଭାବ ଅର୍ଥାତ୍ ହେବାର ଭାବନା ଅର୍ଥାତ୍ ବସ୍ତୁସ୍ଥିତି । "ସଦ୍" ଭାବରେ ଅନ୍ତର୍ଭୁକ୍ତ ଆଧ୍ୟାତ୍ମ ବିଦ୍ୟାର ଯେ ବସ୍ତୁ ବର୍ଣ୍ଣନା ବିଷୟକ ଶାଖା ତାକୁ ଏକତ୍ର ସମାବିଷ୍ଟ କରିବା

ସଂଭବ । ଈଶ୍ୱରଙ୍କ ଅସ୍ତିତ୍ୱ ଏବଂ ସେ ବିଷୟରେ ସୁନିଶ୍ଚିତ ହେବା ପ୍ରସଂଗରେ ସିଦ୍ଧାନ୍ତର ସବୁ କିଛି ଏହି ଶୀର୍ଷକର ତାଲିକା ଭୁକ୍ତ ହୁଏ । "ସଦ୍" ଭାବ ବା ଅସ୍ତିତ୍ୱର ସିଦ୍ଧାନ୍ତ ଏହି ଶୀର୍ଷକରେ ତାଲିକା ଭୁକ୍ତ ହୋଇଥାଏ । "ସଦ୍" ଭାବ ବା ଅସ୍ତିତ୍ୱର ସିଦ୍ଧାନ୍ତ ନିର୍ଣ୍ଣୟ ହେବା ପରେ ଏହାକୁ ଆଧାର କରି ସାଧୁତାର ନିୟମର ମଧ୍ୟ ମିମାଂସା ଆପେ ଆପେ ହୋଇଯାଏ । ଅର୍ଥାତ୍ ପ୍ରକାରାନ୍ତରେ କୁହାଯାଏ; ବିଷୟଟି କ'ଣ ହେବା ପରେ 'କ'ଣ ହେବା ଉଚିତ', ଏହା ନିର୍ଦ୍ଧାରଣ କରିବା ସଂଭବ । ସଦ୍‌ଭାବ ହେଲା ସଦ୍ ଶବ୍ଦର ବାଚ୍ୟାର୍ଥ ଏବଂ ତା ଭିତରୁ ଲକ୍ଷଣ ଯୁକ୍ତ ଦ୍ୱିତୀୟ ଅର୍ଥଟି ହେଉଛି ସାଧୁଭାବ । ସାଧୁତ୍ୱ ଅର୍ଥାତ୍ ଅସ୍ତିତ୍ୱର ଭାବନାତ୍ମକ ସୃଷ୍ଟିର ରୂପାନ୍ତର । ସଦ୍‌ଭାବର ଅନ୍ତର୍ଗତ ଅସ୍ତିତ୍ୱର ସନାତନ ନିୟମ ରଚନାକାରୀ "ସାଂଖ୍ୟ" ଦର୍ଶନର ସମାବେଶ ହେବ ଏବଂ ସାଧୁଭାବର ଅନ୍ତର୍ନିହିତ ଚିନ୍ତାଧାରାର ଭୂମିକାରେ ସେଗୁଡ଼ିକର ନିୟୋଜିତ କରିବାର କ୍ଷମତା ସଂପନ୍ନ 'ଧ୍ୟାନର' ଉଦ୍‌ଭବ ହେବ । କିନ୍ତୁ ଯେଉଁ ଯୁକ୍ତି ଦ୍ୱାରା 'ହୁଏ'ରୁ 'ହେବା ଉଚିତ୍' ଏହି ଅର୍ଥ ସୁସ୍ପଷ୍ଟ ହୁଏ, ସେହି ଯୁକ୍ତି ଦ୍ୱାରା 'ହେବା ଉଚିତ'ରୁ 'କରିବା ଉଚିତ' - ଏହି ଅର୍ଥ ବାହାରିବା ଉଚିତ । ସୃଷ୍ଟିରେ ଯେପରି ନିୟମିତତାର ଗୁଣ ରହିଛି ସେହି ବିଷୟ ସୂର୍ଯ୍ୟ ଇତ୍ୟାଦିର ଉଦାହରଣ ଭିତରେ ସଂଭାବନା ଦ୍ୱାରା ଆମ ବିଚାର ମଧ୍ୟରେ ଦେଖାଯାଏ । ତାପରେ ଆମ ଭିତରେ ମଧ୍ୟ ଏହି 'ଗୁଣ ପ୍ରକାଶ କରିବା ଉଚିତ' । ଏହି ସଦ୍ ଭାବନା ଦ୍ୱାରା ମୁଁ ସୂର୍ଯ୍ୟଙ୍କ ଧ୍ୟାନ କରିବା ସ୍ଥିର କଲି । କିନ୍ତୁ ମୁଁ ଯଦି ନିଜର ସୂର୍ଯ୍ୟବଂଶଜାତ ରାଜଯୋଗ ପରିତ୍ୟାଗ ନକରି ଏପ୍ରକାର ଧ୍ୟାନ କରିବାକୁ ଚାହିଁବି ତାହହେଲେ ତାହା ସମ୍ଭବପର ହେବ ନାହିଁ । ମୋତେ ନିଜର ଅବିନ୍ୟସ୍ତ କର୍ମଧାରା ମଧ୍ୟରେ । 'ପାର୍ଥକ୍ୟ' ସୃଷ୍ଟି କରିବାକୁ ହେବ, ଏଥିପାଇଁ ଗୀତାରେ 'ସଦ୍' ଶବ୍ଦର ତୃତୀୟ ଅର୍ଥ 'ପ୍ରଶସ୍ତ କର୍ମ' ବୋଲି କରାଯାଇଛି ।

ଏହିପରି ସଦ୍‌ଭାବ, ସାଧୁଭାବ ଏବଂ ପ୍ରଶସ୍ତ କର୍ମ, ଏହି ତିନୋଟି ଶୀର୍ଷକର ଅନ୍ତର୍ଗତ ସାଂଖ୍ୟଯୋଗ, ଧ୍ୟାନ ଯୋଗ ଏବଂ କର୍ମଯୋଗ, ଏହି ତିନୋଟିର ଅନ୍ତର୍ନିହିତ ଭାବ ହୋଇପଡ଼େ । ଏଥିପାଇଁ ଆଧ୍ୟାତ୍ମ ବିଦ୍ୟାର ତିନୋଟି ମାତ୍ରା ଦେଖାଇବାର କାମ ସଦ୍ ଶବ୍ଦ ଦ୍ୱାରା ନଷ୍ପତ୍ତି କରାଯାଏ । ପୁଣି ଏହି ତିନିମାତ୍ରାପରେ ଯେଉଁ ଅର୍ଥ ଅବଶିଷ୍ଟ ରହେ, ତାହା ତତ୍ ଶବ୍ଦ ଦ୍ୱାରା ପରିସ୍ଫୁଟ ହୁଏ । ଲକ୍ଷ୍ୟ ଭେଦ କରିବାକୁ ହେଲେ ପ୍ରଥମେ ଲକ୍ଷ୍ୟବସ୍ତୁର ଦିଗ ନିର୍ଣ୍ଣୟ କରିବା ଦରକାର । ତୀରର ପ୍ରୟୋଜନୀୟ ଗତି ଥିବା ସତ୍ତ୍ୱେ ଯଦି ଦିଗ ଭୁଲ ହୁଏ, ତାହେଲେ କାର୍ଯ୍ୟ ସିଦ୍ଧି ହେବ ନାହିଁ । ଧରନ୍ତୁ ଦିଗ ନିର୍ଣ୍ଣୟ ହେଲା, କିନ୍ତୁ ଆବଶ୍ୟକ ଅନୁଯାଇ ଗତିରେ ବେଗ ସଂଚାରିତ ନହେବ, ତାହାହେଲେ ମଧ୍ୟ କାର୍ଯ୍ୟ ସିଦ୍ଧି ହେବ ନାହିଁ । ପରମାର୍ଥର ଲକ୍ଷ୍ୟ ସ୍ଥିର ରଖିବା ପାଇଁ ଠିକ୍ ଭାବରେ ଧ୍ୟାନ ଯୋଗ ଶର ନିକ୍ଷେପ କରିବା ଆବଶ୍ୟକ । କିନ୍ତୁ ସାଂଖ୍ୟ ଯୋଗ ଦ୍ୱାରା ଲକ୍ଷ୍ୟର ସଠିକ୍ ଦିଗ ନିର୍ଣ୍ଣୟ ହୁଏ ଏବଂ କର୍ମଯୋଗ ଦ୍ୱାରା ଶରର ଗତି ସଂଚାର ହୋଇଥାଏ । ଏହି ପରିଭାବରେ ଏହି ତିନୋଟିର ତିନିପ୍ରକାର କାର୍ଯ୍ୟ । ବଲ୍ ଫିଙ୍ଗିବାର କାର୍ଯ୍ୟ ହାତଦ୍ୱାରା କରିବାକୁ ହୁଏ । କିନ୍ତୁ ବଲ୍ ଉପରେ ଦୃଷ୍ଟି ସ୍ଥିର ରଖିବାକୁ ହେବ ଏବଂ ଯେଉଁଠି ବଲ୍ ପଡ଼ିବ ସେଠାକୁ ପାଦ ଦୌଡ଼ିଯିବ । ପରମାର୍ଥ ରୂପକ ବଲ୍ ମଧ୍ୟ ଧ୍ୟାନରୂପକ ଚାଳନା ଦ୍ୱାରା ଗତିଶୀଳ ହେବ, କିନ୍ତୁ ପଦ ଯୁଗଳ କର୍ମଯୋଗ ରୂପକ ପାଦ ଯୁଗଳ ଦ୍ୱାରା ଧାବିତ ହେବ ଏବଂ ସାଂଖ୍ୟ ଯୋଗ ରୂପକ ଚକ୍ଷୁ ଦୁଇଟି ଦ୍ୱାରା ଦେଖିବାକୁ ହେବ ।

ପ୍ରବନ୍ଧ ଲେଖିବାକୁ ହେଲେ ଜ୍ଞାନ ତ ରହିବା ଆବଶ୍ୟକ ଏବଂ ଜ୍ଞାନ ସହିତ ବ୍ୟବସ୍ଥିତ ଭାବରେ ବିଷୟଟି ତର୍କସିଦ୍ଧ ହେବା ପ୍ରୟୋଜନ ଏବଂ ତାହା ସମ୍ୟକ୍ ରୂପରେ ପ୍ରକାଶ କରିବାର ଭାଷା ଥିବା ଆବଶ୍ୟକ । ପରମାର୍ଥ ସମ୍ପର୍କୀୟ ବିଷୟ ଲେଖିବା ସମୟରେ ଧ୍ୟାନ ଯୋଗ ସମ୍ବନ୍ଧୀୟ ଜ୍ଞାନ, ସାଂଖ୍ୟ ଯୋଗର ଯୁକ୍ତିବାଦ ଓ କର୍ମଯୋଗର ଭାଷା, ଏହି ତିନୋଟିର ତ୍ରିବେଣୀ ସଂଗମ ହେବା ପ୍ରୟୋଜନ ।

ସଂପୂର୍ଣ୍ଣ ପ୍ରାଣାୟାମରେ ଦେହସ୍ଥ ଅଶୁଦ୍ଧ ବାୟୁ ନିର୍ଗତ କରିବା ପାଇଁ ରେଚକ କ୍ରିୟା, ବାହାର ବିଶୁଦ୍ଧ ବାୟୁ ଦେହ ଭିତରକୁ ପ୍ରବେଶ କରିବା ପାଇଁ ପୂରକ-କ୍ରିୟା ଏବଂ ଏହି ବିଶୁଦ୍ଧ ବାୟୁକୁ ଫୁସ୍‌ଫୁସ୍ ସହିତ ସଂଯୁକ୍ତ କରିବା ପାଇଁ କୁମ୍ଭକ କ୍ରିୟା ଏହି ତିନି ପ୍ରକାରର କ୍ରିୟା ହୋଇଥାଏ । ଏହି ପ୍ରକ୍ରିୟା ଗ୍ରହଣ କରିନେବାପରେ ପାରମାର୍ଥିକ ପ୍ରାଣାୟାମରେ କର୍ମଯୋଗକୁ ରେଚକ, ସାଂଖ୍ୟଯୋଗକୁ ପୂରକ ଏବଂ ଧ୍ୟାନ ଯୋଗକୁ କୁମ୍ଭକ ବୋଲି ଅଭିହିତ କରାଯିବ ।

ଜୀବନର ଯେକୌଣସି ସଂପୂର୍ଣ୍ଣ କ୍ରିୟାରେ ସାଂଖ୍ୟ, ଧ୍ୟାନ ଓ କର୍ମ ସ୍ପଷ୍ଟ ଭାବରେ ଦେଖା ଯିବ । ଏହି ତିନୋଟି ମାତ୍ରା ଆୟତ୍ତକୁ ଆସିବା ପରେ ପୁରୁଷାର୍ଥବାଦ ସଂପୂର୍ଣ୍ଣତା ଲାଭ କରିଥାଏ । ଏହାପରେ ଅର୍ଦ୍ଧମାତ୍ରାର ଗୁପ୍ତ ଯୋଗର ସାଧନା ବାକି ରହିଥାଏ ।

ଏହି ଯୋଗରେ ସାର୍ବଭୌମ ସତ୍ତା ଆଗରେ ସାଂଖ୍ୟ, ଧ୍ୟାନ ଏବଂ କର୍ମର ସ୍ୱାତନ୍ତ୍ର୍ୟ ସୀମାବଦ୍ଧ ହୋଇଯାଏ । ଏଥିପାଇଁ କେବଳ ଏହି ତିନୋଟି ଶକ୍ତି ଉପରେ ନିର୍ଭର କରି ଅଟକି ଯିବା ଉଚିତ ହେବ ନାହିଁ । ନୌକା, ପାଲ, କାତ ଏବଂ ବସିବାସ୍ଥାନ ଠିକ୍ ଥିଲେ ମଧ୍ୟ ଯଦି ବାୟୁ ପ୍ରବାହ ଅନୁକୂଳ ନଥିବ ତେବେ ତାଠାରୁ ଯେଉଁ ଫଳ ପାଇବା କଥା ତାହା ବିଶୃଙ୍ଖଳାରେ ପର୍ଯ୍ୟବସିତ ହେବ । ଏଥିପାଇଁ 'ସତ୍' କ୍ରିୟାର ତିନୋଟି ମାତ୍ରା ଠିକ୍ ରୂପେ ଏକତ୍ରିତ ହୋଇ ସନ୍ନିବିଷ୍ଟ ହେବା ପରେ ମଧ୍ୟ 'ତତ୍' ସଂପର୍କିତ କ୍ରିୟାର ଅର୍ଦ୍ଧମାତ୍ରା ଯେ ପର୍ଯ୍ୟନ୍ତ ଆୟତ୍ତକୁ ନଆସିଛି ସେ ପର୍ଯ୍ୟନ୍ତ ଫଳପ୍ରାପ୍ତି ବାବଦରେ ଅନାସକ୍ତ ବୃତ୍ତି ବଜାୟ ରଖିବା ମଙ୍ଗଳ । ସେଥିପାଇଁ 'ତତ୍' କାରର ସଠିକ୍ ଅର୍ଥ ଯେପର୍ଯ୍ୟନ୍ତ ନମିଳିଛି ସେ ପର୍ଯ୍ୟନ୍ତ ସାଧକ ଦୃଷ୍ଟିରେ ଗୀତାରେ 'ତତ୍' ଅର୍ଥାତ୍ 'ଫଳ ଆଖା ତ୍ୟାଗ' ରୂପକ କାର୍ଯ୍ୟ କରିବା ପରି ଅର୍ଥ ଦିଆଯାଇଛି । (ଗୀତା ୧୭/୨୫)

କିନ୍ତୁ 'କେହି ସାଂଖ୍ୟ ମାର୍ଗ ସାହାଯ୍ୟରେ, କେହି ଧ୍ୟାନ ମାର୍ଗ ଅବଲମ୍ବନ କରି, କେହିବା କର୍ମ ମାର୍ଗରେ ରହି ତହିଁରୁ ଆତ୍ମଦର୍ଶନ ଲାଭ କରିଥାଆନ୍ତି ।' ଏ ପ୍ରକାର ଉକ୍ତିରୁ ବୁଝାଯାଏ ଯେ ଗୀତାରେ ମୋକ୍ଷ ପ୍ରାପ୍ତି ପାଇଁ ତିନିଟି ପୃଥକ୍ ଅଭିପ୍ରେତ ପଥ କୁହାଯାଇଛି । ଉପରର ବିଶ୍ଳେଷଣରୁ ଏହା ବୁଝାଯାଏ ଯେ ସାଂଖ୍ୟ, ଧ୍ୟାନ ଓ କର୍ମ ଏହି ତିନୋଟି ଗୋଟିଏ ମାର୍ଗର ପ୍ରୟୋଜନୀୟ ଏବଂ ଅପରିହାର୍ଯ୍ୟ ଅଂଶ । ତାହେଲେ ମନରେ ପ୍ରଶ୍ନ ଉଠେ ଯେ, ସେମାନଙ୍କୁ କିପରି ଏକତ୍ରିତ କରାଯିବ ? ଏହି ପ୍ରଶ୍ନର ସମାଧାନ କରିବା କିଛି କଷ୍ଟ କାମ ନୁହେଁ ।

ପ୍ରଥମେ ଏହା ଚିନ୍ତା କରିବାକୁ ହେବ ଯେ, ଯେଉଁମାନେ ସେହି ଗୋଟିଏ ପରମାର୍ଥ ଯୋଗର ଅଙ୍ଗ ଭାବରେ ସାଂଖ୍ୟ, ଧ୍ୟାନ ଓ କର୍ମ ଏହି ତିନୋଟିକୁ ମାନି ନେଇଛନ୍ତି, ସେମାନଙ୍କ ପକ୍ଷରେ ଏହି ତିନି ବିଭାଗ ମଧ୍ୟରୁ କେଉଁଟା ଆଗେ କେଉଁଟା ପରେ ଏପରି କୌଣସି ଧରାବନ୍ଧା ନିୟମ ନାହିଁ । ତାହେଲେ -

........"କରନା ତୁଝେ କର୍ମ, କର୍ମ ସେ ହୋ ଉପାସନା,

ଉପାସନା ସେ ମିଲେ ଜ୍ଞାନ, ଜ୍ଞାନ ପାନା ହିଁମୋକ୍ଷ ହୈ"..........

ଏହି ଗୋଟିଏ ପଂକ୍ତି ପ୍ରଥମେ ତୁମକୁ କର୍ମ କରିବାକୁ ହେବ; କର୍ମରୁ ଉପାସନା, ଉପାସନା କରିବା ଦ୍ୱାରା ଜ୍ଞାନ ଲାଭ ହେବ । ଜ୍ଞାନ ପ୍ରାପ୍ତି ହେଉଛି ମୋକ୍ଷ ଲାଭ ।

ଏହା ଏପରି 'ଗୋଟିଏ' କ୍ରମ ଯାହା ସାଧାରଣ ଭାବରେ ସାମାଜିକ ମନୋବିଜ୍ଞାନର ଅନୁକୂଳ ବୋଲି ଧରାଯାଏ ଏବଂ ଯାହାକୁ ଶାସ୍ତ୍ରକାରମାନେ ସମସ୍ତଙ୍କ ପକ୍ଷରେ ଗ୍ରହଣ ଯୋଗ୍ୟ ବୋଲି ନିର୍ଦ୍ଦେଶ ଦେଇଛନ୍ତି । ଏହି ଦୃଷ୍ଟିରୁ କର୍ମଯୋଗକୁ ପୂର୍ବ ପ୍ରସ୍ତୁତି ବୋଲି ବ୍ୟାଖ୍ୟା କରାଯାଏ । କିନ୍ତୁ ଏହାର ଅର୍ଥ ନୁହେଁ ଯେ ଏହା ହିଁ ଏକମାତ୍ର କାର୍ଯ୍ୟକ୍ରମ ଯାହା ଶାସ୍ତ୍ରକାରମାନଙ୍କ ନିକଟରେ ଗ୍ରହଣଯୋଗ୍ୟ । କୌଣସି ବିଶିଷ୍ଟ କାର୍ଯ୍ୟକ୍ରମ ଅନୁସାରେ ଚାଲିବାକୁ ହେବ, ତାହା କୌଣସି ବିଶେଷ ସଂପ୍ରଦାୟର ସିଦ୍ଧାନ୍ତ ହୋଇପାରେ, କିନ୍ତୁ ଶାସ୍ତ୍ରୀୟ ସିଦ୍ଧାନ୍ତ ତାହା ନୁହେଁ । 'ମଣିଷର ମନ' ଏତେ ପ୍ରକାର ସମସ୍ୟାରେ ଭାରାକ୍ରାନ୍ତ ଯେ ତା ପାଇଁ କୌଣସି ବିଶେଷ ନିୟମ ଯେ ଗ୍ରହଣ ଯୋଗ୍ୟ ଏହା ନିଶ୍ଚିତ କରି କହିବା କଷ୍ଟକର । ଏ ପ୍ରକାର ବିଶୃଙ୍ଖଳ ଓ ଅନିୟମିତ ମନକୁ ସୁଶୃଙ୍ଖଳ କରିବା ପାଇଁ କୌଣସି ନିର୍ଦ୍ଦିଷ୍ଟ କାର୍ଯ୍ୟକ୍ରମ ନିର୍ଦ୍ଦେଶ କରିବା ସଂଭବ ନୁହେଁ ।

ଭଗବାନ ଗୀତାରେ କହିଛନ୍ତି :-

ଯତଃ ଯତଃ ନିଶ୍ଚରତି ମନଶ୍ଚଞ୍ଚଳଂଅସ୍ଥିରଂ
ତତସ୍ ତତୋ ନିୟମ୍ୟୈତଦ୍ ଆତ୍ମନ୍ୟେବ ବଶଂ ନୟେତ୍ ॥

(ଗୀତା-୬/୨୬)

ମନ ଚଞ୍ଚଳ ଏବଂ ସର୍ବଦା ଦୌଡ଼ା ଦୌଡ଼ି କରେ ସେହି ଦିଗରୁ ତାକୁ ଫେରାଇ ଆଣି ଆତ୍ମା ମଧ୍ୟରେ ତାକୁ ସ୍ଥିର ଭାବରେ ରଖିବାକୁ ହେବ । ଏହିପରି ଭାବରେ ଗୀତା ମଧ୍ୟ ମଣିଷର ବିବେକ ବୁଦ୍ଧି ଉପରେ ସଂପୂର୍ଣ୍ଣ ଦାୟିତ୍ୱ ଅର୍ପଣ କରିଛି । ପାତଞ୍ଜଳି ଯୋଗସୂତ୍ର ମଧ୍ୟ 'ଚିତ୍ତବୃତ୍ତି ନିରୋଧ' ରୂପକ ପ୍ରତିଜ୍ଞାବଦ୍ଧ ହୋଇ ଏହି ଗୋଟିଏ ଅବସ୍ଥା ପ୍ରାପ୍ତ ହୋଇଛି । ମନକୁ ଜୟ କରିବା ପାଇଁ କେବେ କେବେ ମନରୁ ଉତ୍ପନ୍ନ ହେଉଥିବା ଛୋଟ ଛୋଟ ବାସନାକୁ ତୃପ୍ତ କରିବାକୁ ପଡ଼େ, କେବେ କେବେ ଏପରି ଚେଷ୍ଟା କରିବାକୁ ପଡ଼ିବ ଯେଉଁଥିରେ ମନକୁ ଶୋକ ସ୍ପର୍ଶ କରିବ ନାହିଁ । ପୁଣି କେବେ କେବେ ବ୍ରହ୍ମନିଷ୍ଠ ବ୍ୟକ୍ତିମାନଙ୍କ ଚରିତ୍ର ସଂବନ୍ଧରେ ଚିନ୍ତା କରିବା ପ୍ରୟୋଜନ ହୁଏ । କେତେବେଳେ ମନକୁ ଜଡ଼ବତ୍-ମୂଢ଼ବତ୍ ପ୍ରକଟ କରିବାର ଇଚ୍ଛାର ପ୍ରୟୋଜନ ହୁଏ । ଏସବୁ ନାନା ପ୍ରକାରର ଉପାୟ ବା ପଦ୍ଧତି ସମୂହର ଦିଗ୍‌ଦର୍ଶନ ଯୋଗସୂତ୍ରରେ (୧/୩୬-୩୮) ବ୍ୟାଖ୍ୟା କରାଯାଇଛି । ଏସବୁ ପ୍ରକ୍ରିୟା ସାଧକ ଜୀବନରେ ଖୁବ୍ ସହାୟକ ହୁଏ ଏଥିରେ ସନ୍ଦେହ ନାହିଁ । କିନ୍ତୁ ସର୍ବ ଶେଷରେ ଯଥାଭିମତ ଧ୍ୟାନାଦ୍ ଅର୍ଥାତ୍ 'ପ୍ରସଙ୍ଗ ଅନୁଯାୟୀକାର୍ଯ୍ୟ କରିବା' ଏହା ହିଁ ଅନୁମୋଦିତ କରାଯାଇଛି ।

ଏଥିପାଇଁ ପ୍ରଥମେ ପୂର୍ବ ପ୍ରସ୍ତୁତି ରୂପରେ କର୍ମଯୋଗ, ତାପରେ ଧ୍ୟାନ ପାଇଁ ସାଧନା(ଅର୍ଥାତ୍ ଉପାସନା ବା ଭକ୍ତି) ଏବଂ ସର୍ବଶେଷରେ ସାଂଖ୍ୟ ସିଦ୍ଧାନ୍ତ ଜନିତ ଜ୍ଞାନ, ପରମାର୍ଥ ପାଇଁ ଏ ପ୍ରକାର କୌଣସି କ୍ରମ ନିର୍ଦ୍ଦେଶ ନାହିଁ । ଯେଉଁ ମଣିଷ ଜିଜ୍ଞାସୁ ବୃତ୍ତି ସଂପନ୍ନ ସେ ପ୍ରଥମେ ସିଦ୍ଧାନ୍ତର ସମାଧାନ କରିବ ଏବଂ ତାପରେ ଏହିସବୁ ସିଦ୍ଧାନ୍ତକୁ ଆତ୍ମସାତ୍ କରିବା ପାଇଁ ଧ୍ୟାନ ଯୋଗ ଏବଂ କର୍ମଯୋଗର ଅନୁଷ୍ଠାନ କରିବ । ଆର୍ତ୍ତ-ବୃତ୍ତି ସଂପନ୍ନ ମଣିଷ ପ୍ରଥମେ ସାଧନା ଆଡ଼କୁ ଧାଇଁବ ଏବଂଏହି ସାଧନାର ସ୍ଥାୟିତ୍ୱ ରକ୍ଷା କରିବା ପାଇଁ ସାଂଖ୍ୟ ଯୋଗ ଏବଂ କର୍ମଯୋଗର ଆଶ୍ରୟ ନେବ । ଅର୍ଥାର୍ଥୀ ବୃତ୍ତିଯୁକ୍ତ ମଣିଷ ପ୍ରଥମେ ପୂର୍ବ ଲବ୍ଧ କର୍ମଯୋଗର ଆଚରଣ କରିବ ଏବଂ ସେହି କର୍ମଯୋଗକୁ ସୁବିନ୍ୟସ୍ତ କରିବା ପାଇଁ ସାଂଖ୍ୟଯୋଗ ଏବଂ ଧ୍ୟାନ ଯୋଗର ସହାୟତା ନେବ । ଏହିପରି ସାଂଖ୍ୟ, ଧ୍ୟାନ ଏବଂ କର୍ମ ଏହିଗୁଡ଼ିକ ମଧ୍ୟରେ କେଉଁଟିର ଭୂମିକା ପ୍ରଥମ ତାହା ନିର୍ଣ୍ଣୟ କରିବା ପାଇଁ ତିନି ପ୍ରକାରର ବାଟ ରହିଛି ।

ଏହାଛଡ଼ା ପରବର୍ତ୍ତୀ ଦୁଇଟି ଭୂମିକା ଭିତରେ କ୍ରମ ଅନୁଯାୟୀ ଏହି ତିନୋଟି ବାଟ ଦୁଇପ୍ରକାର ହୋଇଯିବ । ଅର୍ଥାତ ସବୁ ମିଶି ଛଅ ପ୍ରକାର ହେଲା । କିନ୍ତୁ ଶ୍ରେଣୀ ଯେଉଁ ଭାବରେ ହେଉ ଏବଂ ଯେଉଁଭାବରେ ହେଉ ନା କାହିଁକି ଏହା ନିଶ୍ଚିତ ଯେ ଏହି ତିନି ପ୍ରକାର ଭୂମିକାର ପରିପୂର୍ଣ୍ଣ ଅନୁଭବ ସହିତ ଯୋଗ ସାଧନା କରିବା ଛଡ଼ା ପରମାର୍ଥିକ ଜୀବନର ସଫଳତା ଆସିବ ନାହିଁ ।

ଏହା ବହୁ ଜନ୍ମର କାମ । ଏହି ସବୁ ବହୁଜନ୍ମ ଆଡ଼କୁ ଦେଖିଲେ ଆମର ପରିଷ୍କାର ବୋଧଗମ୍ୟ ହେବ ଯେ, ସାଂଖ୍ୟ, ଧ୍ୟାନ ଓ କର୍ମ ଗୋଟିଏ ଯୋଗର ତିନୋଟି (ଅଂଗ) ଶାଖା । କିନ୍ତୁ କେବଳ ଏହି ଜନ୍ମ ପର୍ଯ୍ୟନ୍ତ ଦୃଷ୍ଟିକୁ ସୀମିତ ରଖିଲେ ଏହି ତିନୋଟି ଯାକ ଭିନ୍ନ ଭିନ୍ନ ପଦ୍ଧତି ଭାବରେ ଦେଖାଯିବ । ସିଦ୍ଧାନ୍ତ ଏବଂ ସାଧନାକୁ ଅବଲମ୍ବନ କରି କୌଣସି ଏକ 'ଜାତକ' ଏହି ଜନ୍ମରେ ଅବଶିଷ୍ଟ କର୍ମ ଯୋଗର ଅନୁଷ୍ଠାନ କରି ଖୁବ୍ କମ୍ ସଫଳତା ଅର୍ଜନ କରିବାକୁ ସକ୍ଷମ ହୋଇପାରେ । ସେତେବେଳେ ଇତିହାସ କହିବ ଯେ 'କର୍ମଣୈବ ହି ସଂସିଦ୍ଧିମାସ୍ଥିତା ଜନକାଦୟ' - ଜନକଙ୍କ ପରି ବ୍ୟକ୍ତିଙ୍କର କର୍ମଯୋଗ ଦ୍ୱାରା ହିଁ ସିଦ୍ଧ ଲାଭ ହୋଇଛି । ପୁଣି ଏହାକୁ ଦେଖି କେହି ସିଦ୍ଧାନ୍ତ ଦ୍ୱାରା ଏପରି ସ୍ଥିର କରିବେ ଯେ 'କର୍ମଭିର ନିଃଶ୍ରେୟସମ୍'- କର୍ମ ଦ୍ୱାରା ହିଁ ମୁକ୍ତି ଲାଭ ହୁଏ । ଏହି ସବୁକଥା ବ୍ୟବହାରିକ ଦୃଷ୍ଟିରୁ କୁହାହୋଇଛି । ଜୈନମାନଙ୍କ ଭାଷାରେ ଏହାକୁ "ବ୍ୟବହାର -ନୁହେଁ" କୁହାଯାଏ । ଯେଉଁ ବାକ୍ୟ ଭିତରେ କୌଣସି ତତ୍ତ୍ୱ କୌଣସି ବିଶେଷ କାରଣ ବଶତଃ ବଦ୍ଧ ହୋଇ ରହିଥାଏ ତାହାକୁ ଶାସ୍ତ୍ରକାରମାନେ "ନୁହେଁ ଏହି ଆଖ୍ୟା ଦେଇଥାନ୍ତି । ଗୀତାରେ ଯେଉଁସବୁ ଶ୍ଳୋକରେ ମୁକ୍ତିର ତିନି ପ୍ରକାର ବାଟ କଥା ବର୍ଣ୍ଣନା କରାଯାଇଛି, ସେଥିରେ ଏହି ଜନ୍ମ ବିଷୟରେ ଲେଖା ହୋଇଛି, ଏଥିପାଇଁ ଏଗୁଡ଼ିକ 'ନୁହେଁ ବୋଲି କୁହାଯାଏ ।

ଏସବୁକୁ ବାଦ ଦେଇ ସାଂଖ୍ୟ, ଧ୍ୟାନ ଓ କର୍ମକୁ ଜୀବନର କୌଣସି ପରିପୂର୍ଣ୍ଣ କ୍ରିୟାର ତିନୋଟି ପ୍ରୟୋଜନୀୟ ଅଂଗ ବୋଲି ମାନିନେବା ପରେ ସାଂଖ୍ୟ, ଧ୍ୟାନ ଓ କର୍ମ ପୂର୍ଣ୍ଣ ଅଙ୍ଗ ବୋଲି ବିବେଚିତ । ଏଥିପାଇଁ ପ୍ରତ୍ୟେକ ବିଭାଗରେ ପୁଣି ସାଂଖ୍ୟ, ଧ୍ୟାନ ଓ କର୍ମ, ଏହିପରି

ଉପ-ବିଭାଗର ବ୍ୟବସ୍ଥା କରାହେବ । ପ୍ରତ୍ୟେକ ଉପ ବିଭାଗରେ ପୁଣି ଏହି ପ୍ରକାର ତିନି ତିନିଟି ଉପ-ବିଭାଗ ହେବ । ଏହି ପ୍ରକାର ବିଚାର ପଦ୍ଧତି ପଛରେ ଏପରି ଅନନ୍ତ 'ଉପ' ଯୋଗ କରାଯାଇପାରେ । କିନ୍ତୁ ଶାସ୍ତ୍ରକାରମାନଙ୍କର ସବୁ ବିଷୟକୁ ସୁଚାରୁ ରୂପେ କରିବାର ବ୍ୟବସ୍ଥା ଥିଲା । ସେଥିପାଇଁ ସେମାନେ ଏହି ପ୍ରକାର ବିଚାର ଧାରାର ସମର୍ଥନ କରିଛନ୍ତି । ଯେଉଁମାନେ ଏହି ଚକ୍ରାକାର ଯୁକ୍ତିର ସମସ୍ୟାର ସମାଧାନ କରି ନେଇଛନ୍ତି, ସେ କ୍ଷେତ୍ରରେ ଅନ୍ତହୀନ ଯୁକ୍ତିର ସ୍ଥାପନା କରିବାର ଭୟ ଦୂର ହୋଇଯିବା ସଂଭବ । ଯେହେତୁ ସେ ଜାଣେ ଯେ ଯେତେ ଅସୀମ ଆବର୍ତ୍ତ ସଂଖ୍ୟାର ଯୋଗ ହେଉନା କାହିଁକି ତାହା ସଂପୂର୍ଣ୍ଣ ଭାବରେ ସସୀମ ସଂଖ୍ୟାରେ ପରିଣତ ହୁଏ । ଯେପରି ୧/୧୦+୧/୧୦୦+୧/୧୦୦୦(ପୌନଃପୁନିକ)... ଦଶମିକର ଅନନ୍ତ ପର୍ଯ୍ୟନ୍ତ ଯୁକ୍ତ କରାଗଲେ ମଧ୍ୟ ସେତେବେଳେ ୯/୯ ହୁଏ । ଧ୍ୟାନ, କର୍ମ-ସଖ୍ୟା ଏଗୁଡ଼ିକ ମଧ୍ୟରୁ ପ୍ରତ୍ୟେକର ଅତିରିକ୍ତ ଧ୍ୟାନ କର୍ମ-ସାଂଖ୍ୟ ଗୁଡ଼ିକର ଅନନ୍ତ ପରମ୍ପରାକୁ ମାନି ଚଳିଲେ ମଧ୍ୟ ପୁଣି ଅନୁଭବ ହୁଏ ଯେ ଶାସ୍ତ୍ରକାରମାନେ ଏହି ଅନନ୍ତର ମଧ୍ୟ ଅନ୍ତ ଜାଣିଥିଲେ । ଅକାରଣରେ ଅବର୍ତ୍ତ ଦଶମିକ ପରି ଧ୍ୟାନ ଇତ୍ୟାଦି ମଧ୍ୟରେ ସେମାନେ ଆବର୍ତ୍ତର କଳ୍ପନା ଗ୍ରହଣ କରିଥିଲେ । ଯେପରି ଗୁରୁଙ୍କ ପୂଜାକୁ ଭକ୍ତି ବା ଧ୍ୟାନ ଏହି ନାମର ଅନ୍ତର୍ଭୁକ୍ତ ବୋଲି ଧରାଯାଏ, ତଥାପି ଗୀତାରେ ସଂପୂର୍ଣ୍ଣ ଗୁରୁ ଉପାସନାରେ ୧-ପ୍ରଣିପାତ, ୨-ପରିପ୍ରଶ୍ନ ଏବଂ ୩-ସେବା ଏହିପରି ତିନୋଟି ମଧ୍ୟବର୍ତ୍ତୀ ବିଭାଗ ସୃଷ୍ଟି କରାଯାଇଛି । (ଗୀତା-୪-୩୪) ଏଗୁଡ଼ିକ ମଧ୍ୟରୁ 'ସେବା' ପ୍ରଧାନତଃ ଶାରୀରିକ ଅର୍ଥାତ୍ କର୍ମ-ସଂପାଦନ ଦ୍ୱାରା ସଂଭବ ବୋଲି ଏହାକୁ କର୍ମଯୋଗ ସହିତ ଅନ୍ତର୍ଭୁକ୍ତ କରାଯାଇପାରେ । ଏହିପରି "ପ୍ରଣିପାତ' ଅର୍ଥାତ ପ୍ରଣାମକୁ ଭକ୍ତିଯୁକ୍ତ ଧ୍ୟାନର ପ୍ରତୀକ ରୂପେ ମାନି ନିଆଯାଇଛି । 'ପରିପ୍ରଶ୍ନ' ମଧ୍ୟରେ ବୁଦ୍ଧି-ବିଚାରକୁ ଗ୍ରହଣ କରାହୋଇଛି । ସେଥିପାଇଁ ଏହାକୁ ସାଂଖ୍ୟ ମଧ୍ୟରେ ଧରି ନିଆହୋଇଛି । ଏହିପରି ଗୀତାରେ ଗୋଟିଏ ଧ୍ୟାନ ଯୋଗ ଭିତରେ ଧ୍ୟାନ, କର୍ମ ଓ ସାଂଖ୍ୟ ଏହି ତିନି ମାତ୍ରାର ବର୍ଣ୍ଣନା କରାହୋଇଛି ।

'ପରିପ୍ରଶ୍ନ'ରେ ଗୁରୁମୁଖ ଶ୍ରୁତ ବିଦ୍ୟାକୁ ସ୍ପଷ୍ଟ ଭାବରେ ଜ୍ଞାନ ଯୋଗ ଅଥବା ସାଂଖ୍ୟ ଶ୍ରେଣୀଭୁକ୍ତ ବୋଲି ଧରାଯିବ ।କିନ୍ତୁ ଉପନିଷଦରେ ତାହାକୁ ମଧ୍ୟ ୧-ଶ୍ରୋତବ୍ୟ, ୨-ମନ୍ତବ୍ୟ, ୩-ନିଦିଧ୍ୟାସିତବ୍ୟ ଏହିପରି ତିନିପ୍ରକାର ବିଭାଗ ଦ୍ୱାରା ଦର୍ଶାଯାଇଛି । (ବୃ : ୪,୫,୬,) ଏଗୁଡ଼ିକ ମଧ୍ୟରୁ ଶ୍ରୋତବ୍ୟ ହେଲା କର୍ମଯୋଗ, ମନ୍ତବ୍ୟ ସାଂଖ୍ୟଯୋଗ ଏବଂ ନିଦିଧ୍ୟାସିତବ୍ୟ ହେଲା ଧ୍ୟାନ ଯୋଗ । ଏହି ତିନି ପ୍ରକାରର ପ୍ରଚେଷ୍ଟା ଦ୍ୱାରା ଯାହା କିଛି ଦର୍ଶନୀୟ ତାହାର ସମାଧାନ ହେବ, ଏହା ହେଉଛି ଉପନିଷଦର ପରିକଳ୍ପନା ।

ଏହି ଦ୍ରଷ୍ଟବ୍ୟର ଅଥବା ଆତ୍ମ ଦର୍ଶନର ମଧ୍ୟ ୧-ଆତ୍ମାଦ୍ୱାରା । ୨-ଆତ୍ମାକୁ, ୩-ଆତ୍ମା ମଧ୍ୟରେ ଦେଖିବା, ଏହି ରୂପରେ ତିନୋଟି ଶ୍ରେଣୀ ବିଭାଗ କରାଯାଇଛି । ବର୍ତ୍ତମାନ ଅଧ୍ୟାୟର ପ୍ରାରମ୍ଭରେ ଏହାର ସ୍ପଷ୍ଟ ବ୍ୟାଖ୍ୟା ଦିଆଯାଇଛି ।

ତାତ୍ପର୍ଯ୍ୟ ହେଉଛି, ଧ୍ୟାନ-କର୍ମ-ସାଂଖ୍ୟ ସ୍ୱାଭାବିକ ଭାବରେ ପରସ୍ପର ସହିତ ଘନିଷ୍ଠ ଭାବରେ ଜଡ଼ିତ । ସେଥିପାଇଁ ଏ ଭିତରୁ ଗୋଟିକୁ ଅନ୍ୟଠାରୁ ସଂପୂର୍ଣ୍ଣ ଭାବରେ ପୃଥକ୍ କରିବା

ସଂଭବପର ନୁହେଁ । ଏପରି ଅବସ୍ଥାରେ ଏହି ତିନୋଟିକୁ ସ୍ୱତନ୍ତ୍ର ସାଧନ କୁହାହେବ କି ନାହିଁ, ତାହା ଆଲୋଚନା କରିବାର ବିଶେଷ କୌଣସି ପ୍ରୟୋଜନ ନାହିଁ । ଯେଉଁମାନେ କର୍ମଯୋଗ ମାଧ୍ୟମରେ ମୁକ୍ତି ଲାଭର ଇଚ୍ଛୁକ ସେମାନେ କର୍ମ ଯୋଗ ସହିତ ଜ୍ଞାନମୂଳକ ଓ ଭକ୍ତି ପ୍ରଧାନ ବିଶେଷଣ ଯୋଡ଼ି ଦେବାକୁ ଭୁଲନ୍ତି ନାହିଁ । କିନ୍ତୁ ଯେପରି ଭାବରେ କର୍ମଯୋଗକୁ ସବୁବେଳେ ଜ୍ଞାନ ମୂଳକ + ଭକ୍ତି ପ୍ରଧାନ ବୋଲି ଅନୁଭବ କରିବା ପ୍ରୟୋଜନ, ସେହିପରି ଜ୍ଞାନ ଯୋଗକୁ ଭକ୍ତି ପ୍ରଧାନ + କର୍ମ କାରକ ଏବଂ ଭକ୍ତି ଯୋଗକୁ କର୍ମପ୍ରେରକ + ଜ୍ଞାନ ମୂଳକ ବୋଲି ବୁଝିବା ଉଚିତ । ଏ ପ୍ରକାର ଇଙ୍ଗିତ ଦେବା ପରେ ଏହି ତିନି ପ୍ରକାର ଯୋଗ ମଧ୍ୟରେ ଏକମାତ୍ର ଶବ୍ଦର ପାର୍ଥକ୍ୟ ଛଡ଼ା କୌଣସି ବିଶେଷ ଧରଣର ଗୁରୁତ୍ୱପୂର୍ଣ୍ଣ ପାର୍ଥକ୍ୟର ଲେଶମାତ୍ର ଅବଶିଷ୍ଟ ରହେ ନାହିଁ ।

ଏହି କାରଣରୁ ଯଦି କୁହାଯାଏ ଯେ ଏଗୁଡ଼ିକ ହେଉଛି ତିନୋଟି ସ୍ୱତନ୍ତ୍ର ପଥ, ସେଥିରେ କିଛି ଅସୁବିଧା ନାହିଁ । ଉଷ୍ଣତା, ଗତି ଏବଂ ଜ୍ୟୋତି ଏହି ତିନୋଟି ପୃଥକ୍ ତତ୍ତ୍ୱ । ଯେତେବେଳେ ଏହି ତିନୋଟି ସୂର୍ଯ୍ୟ-କିରଣ ମଧ୍ୟରେ ଏକତ୍ର ହୋଇଥାଏ, ସେତେବେଳେ ଏଗୁଡ଼ିକର ପୃଥକୀକରଣ ଅସମ୍ଭବ ହୋଇପଡ଼େ । ସୂର୍ଯ୍ୟ କିରଣର ଗତି କଥା କହିବା ମାତ୍ରେ ତା ଭିତରକୁ ଆଲୋକ ଏବଂ ଉଷ୍ଣତାର କଳ୍ପନା ଆସିଯାଏ । ପାଣିର ଗତି ବିଷୟରେ କହିବାକୁ ଗଲେ ହୁଏତ ଉଷ୍ଣତା କଥା ଆସେ ନାହିଁ । ଅଥବା ବଳଦର ଗତି ମଧ୍ୟରେ ଜ୍ୟୋତିର କଳ୍ପନା ଆସିବ ନାହିଁ । କିନ୍ତୁ ସୂର୍ଯ୍ୟ କିରଣର ଗତି ପ୍ରବାହ ମଧ୍ୟରେ ଦୁଇଟିର କଳ୍ପନା ଆସିଯାଏ । ଏହିପରି ପରମାର୍ଥ ଯୋଗର କିରଣମାଳାର ମଧ୍ୟରେ ସାଂଖ୍ୟ-ଯୋଗର ଆଲୋକ ରଶ୍ମି, ଧ୍ୟାନ ଯୋଗର ଉଷ୍ଣତା ଏବଂ କର୍ମଯୋଗର ଗତିଶୀଳତା ଏହି ତିନୋଟି ସ୍ୱତନ୍ତ୍ର ତତ୍ୱ ନିଜ ନିଜର ସ୍ୱାତ୍ତ୍ୱନ୍ତତା ଭୁଲି ଏକତ୍ରିତ ହୋଇ ଯାଇଛି ।

ସୀତାର ଦ୍ୱାରା ସଂଗୀତର ମିଳିତ ସପ୍ତସ୍ୱର ନିଜ ନିଜର ବୈଶିଷ୍ଟ୍ୟ ସ୍ୱାଧୀନ ଭାବରେ ବଜାୟ ରଖିଥାଏ । କିନ୍ତୁ ସାରଂଗୀ ସଂଗୀତରେ ସପ୍ତସ୍ୱରର ନିଜ ନିଜର ସ୍ୱାତନ୍ତ୍ର୍ୟ ଭୁଲି ଗୋଟିଏ ଲୟରେ ପରିଣତ ହୁଏ । ପରମାର୍ଥ ସଂଗୀତ ସାରଂଗୀର ସଂଗୀତ ପରି । ସେଥିରେ ଥିବା ମିଳିତ ସ୍ୱର ସଂଗୀତକୁ ବିନଷ୍ଟ ନକରି ପୃଥକ୍ କରିବା ସଂଭବ ନୁହେଁ । କିନ୍ତୁ ଯଦି କୌଣସି ସାରଂଗୀ ବାଦକଠାରୁ ଜ୍ଞାନ ଅର୍ଜନ ପାଇଁ କେହି ପ୍ରଶ୍ନ କରେ, ତେବେ ସାରଂଗୀର କେଉଁକେଉଁ ସ୍ୱର କେଉଁ କେଉଁ ସ୍ୱରରୁ ନିର୍ଗତ ତାହା ସେ କହି ପାରିବେ । ଅର୍ଥାତ୍ ସ୍ୱର ନିଜର ସ୍ୱତନ୍ତତା ଭୁଲି ଗଲେ ମଧ ତାର ନଷ୍ଟ ହେବାର କିଛି ନାହିଁ । ଏହିପରି 'ସ୍ୱତନ୍ତ୍ର' ଥିବା ସତ୍ତ୍ୱେ ସ୍ୱତନ୍ତ୍ରତାକୁ ଭୁଲିଯାଇ ତିନି ମାତ୍ରାର ସମାହାରରେ ଓଁକାରର ସୃଷ୍ଟି ହୋଇଥାଏ । ଏହିପରି ଭାବରେ ବ୍ୟାଖ୍ୟା କରାଗଲେ ସାଂଖ୍ୟ ଧ୍ୟାନ ଏବଂ କର୍ମ ଗୋଟିଏ ଗୋଟିଏ ସ୍ୱତନ୍ତ୍ର ପଥ ହେବା ସତ୍ତ୍ୱେ ତିନୋଟି ମିଳିତ ଭାବରେ ଗୋଟିଏ ପଥ । ଏହା ହେଉଛି ଚରମ ସିଦ୍ଧାନ୍ତ ।

ଘ). ଯୋଗୀମାନଙ୍କଠାରେ ଦୁର୍ଲଭ, ସନ୍ଥ ପୁରଷମାନେ ତାର ଦ୍ରଷ୍ଟା

* ନିର୍ଗୁଣ ଅବସ୍ଥାରେ ମଧ୍ୟ ସଗୁଣ-ସାକାର ମନକୁ ଆକର୍ଷଣ କରେ ।
* କାରଣ ନିରାକାର ହିଁ ଆକାର ଧାରଣ କରେ ।

ଜ୍ଞାନ ଦେବ ଯୋଗୀ ପୁରୁଷ ଥିଲେ । ଯୋଗମାର୍ଗରେ ସେ ଗୋରଖନାଥଙ୍କ ସହିତ ତୁଳନୀୟ । ଗୋରଖନାଥ ଜ୍ଞାନ ଦେବଙ୍କ ଗୁରୁପରମ୍ପରାର ଅନ୍ତର୍ଗତ । କିନ୍ତୁ ଗୋରଖନାଥଙ୍କର ସାଧନା ପଥରେ ଯେଉଁ ଗୁଢ଼ବାଦ ଆଖିରେ ପଡ଼େ, ଜ୍ଞାନଦେବ ତାହା ଲକ୍ଷ୍ୟ କରି ନାହାନ୍ତି । ଜ୍ଞାନ ଦେବଙ୍କର ଯୋଗ ସାଧନା ଭକ୍ତି ମାର୍ଗକୁ ସାଷ୍ଟାଙ୍ଗ ପ୍ରଣିପାତ କରେ । ଭକ୍ତର ବର୍ଣ୍ଣନା କରିବାକୁ ଯାଇ ଜ୍ଞାନ ଦେବ କହିଛନ୍ତି- ଯୋଗ ସାଧନା ଛଡ଼ା ଭକ୍ତ ଖୋଲା ଆଖିରେ କୈବଲ୍ୟର ବର୍ଣ୍ଣନା କରିଥାଏ । ସେ ଆହୁରି  କହନ୍ତି ଯେ, ଯୋଗୀମାନଙ୍କ ପାଖରେ ଯାହା ଦୁର୍ଲଭ ମୁଁ ତାହା ଅନୁଭବ କରିଛି ଏବଂ ଏହି ରୂପ ଦର୍ଶନରେ ମୋର ଯେପରି ଆଶା ମେଣ୍ଟେ ନାହିଁ ।

ଯୋଗୀୟାଁ ଦୁର୍ଲଭ ତୋ ମ୍ୟାଂ ଦେଖିଲା ସାଜଣୀ ।

ପାହତାଁ ପାହତାଁ ମନା ନ ପୁରେ ଧନୀ ।

ଯୋଗୀ ଜଗତକୁ ଗୋଟିଏ ପାଖରେ ରଖି ଭଗବାନଙ୍କୁ ଖୋଜିବୁଲେ । ସେଥିପାଇଁ ତା ହାତରେ ଶୂନ୍ୟ ରହେ । ଜ୍ଞାନଦେବ ସମଗ୍ର ଜଗତକୁ ଈଶ୍ୱର ରୂପେ ଦର୍ଶନ କରନ୍ତି । ସେଥିପାଇଁ ତାଙ୍କର ପୂର୍ଣ୍ଣ ଦର୍ଶନ ଲାଭ ହୁଏ । ଗୋରଖନାଥଙ୍କୁ ଯଦି ଆମେ ଶୂନ୍ୟବାଦୀ ବୋଲି କହିବା ତେବେ ଜ୍ଞାନ ଦେବଙ୍କୁ ଆମେ ପୂର୍ଣ୍ଣବାଦୀ ବୋଲି କହିପାରିବା । ଶୂନ୍ୟବାଦୀ ଗୋରଖନାଥ ସାରା ଭାରତବର୍ଷ ବୁଲେଇଥିଲେ, ତଥାପି ତାଙ୍କର ଯିବା ପଥ ଗୁପ୍ତ ହୋଇ ରହିଛି । କିନ୍ତୁ ଜ୍ଞାନ ଦେବ ସଂପୂର୍ଣ୍ଣ ସମାଜକୁ ଆତ୍ମସାତ୍ କରି ନେଇଥିଲେ । ସେ କହିଛନ୍ତି, ଦୁଆର ପାଖରେ ଛୋଟ ଚାରାଗଛ ପୋତିଛି, ଦେଖୁ ଦେଖୁ ତାହା ଲତା ପତ୍ରରେ ଆକାଶ  ଛାଇ ଯାଇଛି ।

ପାତଞ୍ଜଳୀ ଯୋଗସୂତ୍ରରେ ଯୋଗର ପ୍ରକ୍ରିୟା ବର୍ଣ୍ଣନା କରିଛନ୍ତି ଏବଂ ତା ଭିତରେ ନାନା ପ୍ରକାର ଦର୍ଶନ ବିଷୟ ବ୍ୟକ୍ତ କରିଛନ୍ତି । କିନ୍ତୁ ସେ ସଗୁଣ ଦର୍ଶନ କଥା ବର୍ଣ୍ଣନା କରିନାହାଁନ୍ତି । ଜ୍ଞାନ ଦେବ ମହାରାଜ ସଗୁଣ ଦର୍ଶନ, ନିର୍ଗୁଣ ଦର୍ଶନ, ଧ୍ୟାନ ମୂଳକ ଦର୍ଶନ, ଭକ୍ତି ପୂର୍ବକ ଦର୍ଶନ, ସ୍ୱପ୍ନ ମଧ୍ୟରେ ଦର୍ଶନ ଇତ୍ୟାଦି ବିଭିନ୍ନ ପ୍ରକାର ଦର୍ଶନର ସୁବିସ୍ତୃତ ଆଲୋଚନା କରି ତାହା ଲିପିବଦ୍ଧ କରିଛନ୍ତି । ସେ ନିଜର ବିଷୟ  ହିଁ ଲେଖିଛନ୍ତି । ଜ୍ଞାନଦେବ ମହାରାଜଙ୍କୁ କେହି ଯଦି କହନ୍ତି ଯେ ଖ୍ରୀଷ୍ଟାନମାନଙ୍କର ଧ୍ୟାନରେ ଯୀଶୁଖ୍ରୀଷ୍ଟଙ୍କ ଦର୍ଶନ ହୁଏ , ତାହାହେଲେ ସେ ଆପତ୍ତି କରନ୍ତେ ନାହିଁ । କାହା ନିକଟରେ କୃଷ୍ଣଙ୍କ ମୂର୍ତ୍ତି ପ୍ରିୟ ପୁଣି କାହା ନିକଟରେ ରାମଚନ୍ଦ୍ରଙ୍କ ମୂର୍ତ୍ତି ପ୍ରିୟ, କାହା ନିକଟରେ ବୁଦ୍ଧ ମୂର୍ତ୍ତି, କାହା ପାଖରେ ଶାଳଗ୍ରାମ ଶୀଳା, କାହା ପାଖରେ ଶିବଲିଙ୍ଗ କାହା ପାଖରେ ଜ୍ୱଳନ୍ତ ଜ୍ୟୋତି, ପୁଣି କାହା ପାଖରେ ଜଳର ପ୍ରବାହ । ଏହିପରି ଧ୍ୟାନ ମଧ୍ୟରେ ହୋଇପାରେ । ଜ୍ଞାନ ଦେବ ମହାରାଜ ତାଙ୍କ ରଚନାରେ ନିଜର ଅନୁଭବରୁ ଏହିସବୁ ବିଷୟରେ ବିଶେଷ ଭାବରେ ଆଲୋଚନା କରିଛନ୍ତି । ବାବା(ବିନୋବାଜୀ) ତହିଁରୁ ନିର୍ବାଚିତ ଅଂଶ ବାଛି ବାଛି 'ଜ୍ଞାନଦେବ ଚିନ୍ତନିକା' ନାମକ ପୁସ୍ତକରେ ଅନ୍ତର୍ଭୁକ୍ତ କରିଛନ୍ତି ।

(ବିନୋବାଜୀ ଜ୍ଞାନ ଦେବଙ୍କର ୧୫୦ଟି ଭଜନ ବାଛିନେଇ ତା ଉପରେ ପୃଥକ୍ ଚିନ୍ତନିକା (ବ୍ୟାଖ୍ୟା)ରଚନା କରିଥିଲେ । ଚିନ୍ତନିକାର ସବୁଗୁଡ଼ିକ ଭଜନକୁ ଯୋଗମାର୍ଗର ପଥ-ଦୀପିକା (ପଥ ପ୍ରଦର୍ଶକ) କୁହାଯାଇପାରେ । ବିନୋବାଜୀଙ୍କର ଅନ୍ତରର ଅନୁଭୂତି ମଧ୍ୟ ଏହି

ଉଦ୍ଦେଶ୍ୟରେ ପ୍ରକୃତ ବାଣୀମୟ ହୋଇ ଉଠିଛି । ପରମାର୍ଥ ପଥର ଜିଜ୍ଞାସୁମାନଙ୍କ ନିକଟରେ ସଂପୂର୍ଣ୍ଣ ଚିନ୍ତନିକା ଦେଖିବାର ଓ ବୁଝିବାର ଯୋଗ୍ୟ । ଏ ଚିନ୍ତନିକାରୁ ଧ୍ୟାନ ସଂବନ୍ଧୀୟ ଅଂଶ ଏଠାରେ ଉଦ୍ଧୃତ କରାହେଲା । ସଂପାଦକ) ତୁମର ନାମ ମଧ୍ୟରେ ସମାଧି ଲାଭ ହେଉ ।

ନାମ ସଂକୀର୍ତ୍ତନ କରୁ କରୁ ଜ୍ଞାନ ଦେବ ନିର୍ବିକଳ୍ପାତ୍ମକ ସମାଧିରେ ପହଂଚି ତାପରେ ସେ ମନମଧ୍ୟରେ ପ୍ରଭୁଙ୍କ ଧ୍ୟାନରତ ଅବସ୍ଥାରେ ବର ପ୍ରାର୍ଥନା କଲେ ବୃତ୍ତିଗୁଡ଼ିକ ସହିତ ମୋର ଅହଂକାର ଲୋପ ହେଉ । ମୋର ପ୍ରତିଟି ପ୍ରବୃତ୍ତି ଭିତରେ ନିବୃତ୍ତିର ଛାପ ପଡୁ । ମୋର ମନ ଯେପରି ତୁମର ଚରଣ ତଳେ ନିବିଷ୍ଟ ରହୁ । ମୋର ଦେହ ଇନ୍ଦ୍ରିୟ ସବୁ ତୁମଠାରେ ରୂପାନ୍ତରିତ ହେଉ, ମୋର କୌଣସି କୀର୍ତ୍ତି ଯେପରି ନ ରହେ । ଦୟା, କ୍ଷମା, ଶାନ୍ତିରୂପ ସିଦ୍ଧିମଧ୍ୟ ମୋ ନିକଟରେ ଉପାଧି ରୂପରେ ମଧ୍ୟ ପ୍ରକାଶିତ ହେଉଛି । ସେଥିପାଇଁ ମୋତେ କେବଳ ମାତ୍ର ତୁମ ନାମ ଭିତରେ ସମାଧିସ୍ଥ ହୋଇ ରହିବାକୁ ଦିଅ ।

ହୃଦୟ ମନ୍ଦିରରେ ସ୍ଥାପନ କର-

ରାମ ଓ କୃଷ୍ଣ ଈଶ୍ୱରଙ୍କର ଏହି ଦୁଇଟି ନାମ ବଡ଼ ମଧୁର । ଗୋଟିଏ ହେଲା ସତ୍ୟମୂର୍ତ୍ତି, ଅନ୍ୟଟି ହେଲା ପ୍ରେମ ମୂର୍ତ୍ତି । ଦୁଇଟି ମିଶି ଏକ ।

ମୋର ହୃଦୟ ମନ୍ଦିରରେ ଏହାଙ୍କୁ ପ୍ରତିଷ୍ଠାକର । ଯଦ୍ୱାରା ସବୁପ୍ରକାର ବନ୍ଧନ ଛିନ୍ନ ହେବ । ଆଉ ତୁମରି ଶକ୍ତି ଦ୍ୱାରା 'ତୁମର' ମୁକ୍ତି ହେଉ ।

ଧ୍ୟାନ କରିବା ସମୟରେ ଜ୍ଞାନ ଦେବ ବାଣୀ ସାହାଯ୍ୟରେ ଏହି ନାମ ଜପ କରିଥିଲେ ଏବଂ ମନ ମଧ୍ୟରେ ଏହି ଉଭୟରୂପ ମଣ୍ଡିତ ଶ୍ରୀମୂର୍ତ୍ତିର ଚିନ୍ତା କରୁଥିଲେ ।

* * *

ଅବଲୀଳା କ୍ରମେ (ଅନାୟାସରେ) ସଂସାର ଅତିକ୍ରମ କର-

ଯମ ନିୟମ ପାଳନ ପୂର୍ବକ ଚିତ୍ତବୃତ୍ତିର ନିରୋଧ କରିବା ସାଧକ ପକ୍ଷରେ ଅନିବାର୍ଯ୍ୟ । ସେଥିପାଇଁ ଶାସ୍ତ୍ରସମ୍ମତ ଉପାୟ ବିଷୟରେ ବର୍ଣ୍ଣନା କରାହୋଇଛି । ତାହା ହେଉଛି-ଅଭ୍ୟାସ-ନୈରାଶ୍ୟ ଯୁକ୍ତ ଅଷ୍ଟାଙ୍ଗ ଯୋଗ ।

କିନ୍ତୁ ଯୋଗ ଶାସ୍ତ୍ରର ବକ୍ତବ୍ୟ ହେଉଛି ଯେ, ଯୋଗ ସାଧନ ଦ୍ୱାରା ସାଧ୍ୟ ହୋଇପାରୁଥିବା ଏହି କାର୍ଯ୍ୟ ଈଶ୍ୱରଙ୍କଠାରେ ଆତ୍ମସମର୍ପଣ ପଥରେ ସହଜରେ ହୋଇ ପାରିବ । ଏଥିପାଇଁ ଜ୍ଞାନ ଦେବ କହିଛନ୍ତି :-

ହରି-ନାମ ଗାଅ ହରି-ନାମ ଶୁଣ ଏବଂ ସେଥିରେ ତନ୍ମୟ ହୋଇଯାଅ । ଆଉ ଅବଲୀଳା କ୍ରମେ (ଅନାୟାସେ) ସଂସାର ଅତିକ୍ରମ କରିଯାଅ । ଶାସ୍ତ୍ରୀୟ ଉପାୟ କଠିନ-

ତାହାହେଲେ ଅତିକମ୍‌ରେ ଏହି ସହଜ ଉପାୟଟି ଅବଶ୍ୟ ପାଳନ କର ।

* * *

ନାରାୟଣଙ୍କ ନାମ ନେବା ମାତ୍ରେ ନାରାୟଣ-ଏହି ଗୋଟିଏ ମାତ୍ର ଶବ୍ଦରେ ଭକ୍ତର ଜ୍ଞାନ, ଧ୍ୟାନ, ଜପ ସବୁକିଛି ଆସିଯାଏ ।

ନାରାୟଣ-ନରମାନଙ୍କର ଦେବତା । ଏଥିପାଇଁ ନାରାୟଣଙ୍କ ନାମ ଭୂତ ଦୟାରେଏବଂ ସମାଜ ସେବା ପାଇଁ ଉଦ୍ଦିଷ୍ଟ ।

ସଂକୁଚିତ ଭାବନା ହେତୁ, ସଂସାରରେ ବ୍ୟକ୍ତିଗତ ଧନ ସଂପତ୍ତି ସଂଚୟର ଇଚ୍ଛା ଉତ୍ପନ୍ନ ହୁଏ । କିନ୍ତୁ ନାରାୟଣଙ୍କ ନାମ, ଅର୍ଥାତ ସର୍ବଭୂତରେ ଦୟା ହେଉଛି ସଂସାରରେ ସର୍ବୋତ୍ତମ ପ୍ରୟୋଜନୀୟ ସଂପତ୍ତି । ଏହା ହେଲା ନିବୃତ୍ତିନାଥଙ୍କର ବାଣୀ, ଆଉ ଏଥିରେ ଜ୍ଞାନ ଦେବଙ୍କର ମନ ନିବଦ୍ଧ ହୋଇଛି ।

*　　　*　　　*

ସତ୍ ସଂଗ ବିନା..............

ସନ୍ଥ ସମାଗମର ଅପେକ୍ଷା ନକରି ସ୍ୱାଧୀନ ଭାବରେ ଯୋଗ ଆଦିର କ୍ରିୟା କରିବାକୁ ଗଲେ କିଛି ନା କିଛି ଭୁଲ ହୋଇଥାଏ । ଏ କଥା ସତ୍ୟ ଯେ ଭାବ ବିନା ଭଗବାନ, ଗୁରୁବିନା ସାକ୍ଷାତକାର, ତାଛଡ଼ା ଦେବ କୃପା, ଆଉ ପ୍ରେମ ଛଡ଼ା କଲ୍ୟାଣ, କେଉଁଠୁ ମିଳିବ ? ଏଥିପାଇଁ ଜ୍ଞାନ ଦେବ ନିଶ୍ଚିତ ଭାବରେ ବୁଝିଛନ୍ତି-

ସତ୍‌ସଂଗ ଛଡ଼ା ପରିତ୍ରାଣର ଉପାୟ ନାହିଁ ।

*　　　*　　　*

ମଙ୍ଗଳ ଗୁଣ ଚିନ୍ତନ -

ଜ୍ଞାନ ଦେବ ଈଶ୍ୱର ମୂର୍ତ୍ତିର ଧ୍ୟାନ କରୁଥିଲେ । ମୂର୍ତ୍ତିର ସୌନ୍ଦର୍ଯ୍ୟ ମନ ମୁଗ୍ଧକର ହୁଏ । କିନ୍ତୁ ଏହା ହେଉଛି ଈଶ୍ୱରଙ୍କର ଅନନ୍ତ ଗୁଣ ସମୂହର ପ୍ରତିବିମ୍ବ ମାତ୍ର, ଛାୟା ସ୍ୱରୂପ । ଏଥିପାଇଁ ପ୍ରତୀକ ଚିହ୍ନ ଅବଲମ୍ବନ କରି ସୌନ୍ଦର୍ଯ୍ୟ ଦ୍ୱାରା ମଙ୍ଗଳ ଗୁଣ ସମୂହର ଚିନ୍ତନ ଭିତରେ ଚିତ୍ତକୁ ସଂଲଗ୍ନ ରଖିବା ଦରକାର । ଏପରି କରିବା ଫଳରେ, ଈଶ୍ୱରଙ୍କ ପାଇଁ ପ୍ରେମର ଉପଲବ୍ଧି ହୋଇ ନିଜ ଗୁଣ ସହିତ ହୃଦୟରେ ସ୍ଥିର ହୋଇଯାଏ ।

*　　　*　　　*

ଆଲମ୍ବନର (ପ୍ରତୀକର) ପରେ-

କେହି କେହି ଧ୍ୟାନ ଯୋଗୀ ଈଶ୍ୱରଙ୍କୁ ଜ୍ୟୋତିର୍ମୟ ଓଁକାର-ସ୍ୱରୂପ କଳ୍ପନା କରି ଉପାସନା କରନ୍ତି ଏବଂ ଏହାର ଯୁକ୍ତି ହିସାବରେ କହନ୍ତି ଯେ, ଈଶ୍ୱରଙ୍କର ବିଶ୍ୱସୃଷ୍ଟି ପାଇଁ ଇଚ୍ଛା ହୋଇଥିଲା । ସେତେବେଳେ ତାଙ୍କ ମଧ୍ୟରେ ଓଁକାର ନାଦ ଧ୍ୱନିତ ହୋଇଥିଲା । ତାପରେ ତାହା

ଭିତରୁ ତିନୋଟି ଛନ୍ଦ ବାହାରି ଆସିଲା ଏବଂ ତା ଭିତରୁ ତିନିଜଣ ଦେବତା ଓ ତିନୋଟି ଜଗତର ସୃଷ୍ଟି ହେଲା । ଏହି ସବୁଗୁଡ଼ିକ ଯୁକ୍ତି ଧ୍ୟାନର ଆଲମ୍ବନ ରୂପେ ଗ୍ରହଣ କରାଗଲେ ମଧ୍ୟ ଈଶ୍ୱରଙ୍କର ପ୍ରକୃତ ସ୍ୱରୂପଠାରୁ ଅନେକଟା ଭିନ୍ନ । ପ୍ରକୃତପକ୍ଷେ ଈଶ୍ୱରଙ୍କ କ୍ଷେତ୍ରରେ ପ୍ରୟୋଗ ଯୋଗ୍ୟ ହୋଇପାରେ ହିଁ ନାହିଁ । ଯେ ସ୍ୱୟଂ ତୃପ୍ତ, ନିତ୍ୟ ପରିପୂର୍ଣ୍ଣ, ଆନନ୍ଦସ୍ୱରୂପ, ତାଙ୍କ ମଧ୍ୟରେ ଛନ୍ଦ କେଉଁଠୁ ଆସିବ ? ନାଦ ବା କି ପ୍ରକାର, କିପରି ଭାବରେ, ସଂଭବପର ?

* * *

ହୃଦୟ ରୂପୀ ଇଟା ଉପରେ ସ୍ଥିତି -

ଈଶ୍ୱର ସବୁ କିଛିର ଉଦ୍‌ଗମ ସ୍ଥଳ । ସବୁ କିଛିର ସାକ୍ଷୀ ସ୍ୱରୂପ । ସମସ୍ତଙ୍କର ପାଳନକାରୀ । ସେ ସର୍ବମୟ ।

ଆନନ୍ଦ ଏବଂ ଜ୍ଞାନ

ଏହି ଦୁଇଟି ତାଙ୍କର ପରିଚୟ ।

କିନ୍ତୁ ଆମପରି ଭକ୍ତଙ୍କ ନିକଟରେ ତାଙ୍କର ଅନ୍ୟ ଏକ ପରିଚୟ ଅଛି ।

ଭଗବାନ ଇଟା ଉପରେ ଠିଆ ହୋଇଛନ୍ତି, ଯାହାଙ୍କୁ ଧ୍ୟାନ କରି ଆମେ ଆମର ହୃଦୟରୂପୀ ଇଟା ଉପରେ ତାହାଙ୍କୁ ସଦା ସର୍ବଦା ଠିଆ କରି ରଖିଛୁ ।

* * *

ଆମେ ଧ୍ୟାନାଦି ପ୍ରୟୋଗଠାରୁ ଭିନ୍ନ -

ଆମେ ଧ୍ୟାନାଦି ନାନା ପ୍ରକାର ସାଧନାର ପ୍ରୟୋଗ କରିଥାଉ । କିନ୍ତୁ ଆମେ ଏହି ସବୁ ପ୍ରୟୋଗର ଆଧାରଭୂତ, ଏ ସବୁର ପ୍ରକାଶଦାତା, ଏହି ସବୁ ପ୍ରୟୋଗଠାରୁ ଭିନ୍ନ ।

* * *

ଜଣେ ଯୋଗୀଙ୍କୁ ଧ୍ୟାନ କରିବାକୁ ଦେଖିଥିଲି ।

ଈଶ୍ୱର ସଚ୍ଚିଦାନନ୍ଦ ସ୍ୱରୂପ । ଆମେ ହେଲୁ ତାପ-ତ୍ରୟ-ମଗ୍ନ, ଈଶ୍ୱର ଶୁଦ୍ଧ ସର୍ବଗୁଣୀ । ଆମେ ତ୍ରିଗୁଣର ମିଶ୍ରଣ । ଈଶ୍ୱର ସର୍ବଗୁଣ ମଣ୍ଡିତ । ଆମେ ସର୍ବଦୋଷ ସଂପନ୍ନ । ଈଶ୍ୱର ଅଖଣ୍ଡ, ଆମେ ଫାଟଧରା ଖଣ୍ଡ ବିଖଣ୍ଡିତ । ଏପରି ପାର୍ଥକ୍ୟ କାହିଁକି ? ଏପ୍ରକାର ସନ୍ଦେହ କୌଣସି ପ୍ରକାରେ ମନରୁ ଦୂର ହୁଏ ନାହିଁ । ଥରେ କୌଣସି ଯୋଗୀ ପୁରୁଷଙ୍କୁ ଧ୍ୟାନରତ ଅବସ୍ଥାରେ ଦେଖିବାକୁ ପାଇଥିଲି । କୌଣସି ଭକ୍ତଙ୍କୁ ନାମ ଜପ କରିବାକୁ ଦେଖିଛି । ଏଥିରେ ଏହାଦ୍ୱାରା ସହଜରେ ମୋର ସନ୍ଦେହ ଦୂର ହୋଇଗଲେ, ମୁଁ ବୁଝି ପାରିଲି ଯେ ସାଧନା ଏବଂ ଭକ୍ତିର ସୁଖ ଅନୁଭବ କରିବାପାଇଁ ଏହି ପ୍ରଭେଦ । ସେତେବେଳେଠାରୁ ତାଙ୍କ ଚରଣରେ ମୋର ବୃତ୍ତି ଗୁଡ଼ିକ ଲୀନ ହୋଇଗଲା ।

* * *

ତୁମ ଧ୍ୟାନରେ ଯେପରି ମଗ୍ନ ରହିବି -

ଅନ୍ୟ ସବୁ ବୃତ୍ତି ପରିତ୍ୟାଗ କରିବା ହେତୁ ଈଶ୍ୱରଙ୍କ ଧ୍ୟାନରେ ମଗ୍ନ ରହିବା ପାଇଁ ବର୍ତ୍ତମାନ ଆଉ କୌଣସି ଅସୁବିଧାର ଅବକାଶ ନାହିଁ । ଆଜି ଦିନଟି ବଡ଼ ସୌଭାଗ୍ୟପୂର୍ଣ୍ଣ । ନାମ ସ୍ମରଣ ସଂଗେ ସଂଗେ ତାର ଅର୍ଥ ମଧ୍ୟ ହୃଦୟଙ୍ଗମ ହେଲା । ମୁହଁରେ ନାମସ୍ମରଣ କରିବାର ଅର୍ଥ ହେଲା ତା ସହିତ ନିଜର ଶାରୀରିକ ଜୀବନ ଓ ମାନସିକ ଚିନ୍ତନ ଈଶ୍ୱରଙ୍କ ଚରଣରେ ସମର୍ପଣ କରିବା, ମନ, ବାକ୍ୟ ଏବଂ ଦେହ, ଏହି ତିନୋଟି ଅଂଗକୁ ଐଶ୍ୱରିକ ପ୍ରେମରେ ପରିପୂର୍ଣ୍ଣ କରିବାକୁ ହେବ । ଆଜି ମୁଁ ଏହି ଭାବନାରେ ବୁଡ଼ି ରହିଛି । ଏଥିପାଇଁ ମୁଁ ଦୃଢ଼ ନିଶ୍ଚୟ ହୋଇ ତାଙ୍କୁ କହୁଛି - ମୋତେ ବର୍ତ୍ତମାନ ତୁମରି ଧ୍ୟାନରେ ମଗ୍ନ ରଖ । ଧ୍ୟାନର ଆଚ୍ଛାଦନରେ ଯେପରି ଆଚ୍ଛାଦିତ ହୋଇ ରହେ -

ହେ ପରମେଶ୍ୱର ! ତୁମେ ନିର୍ଗୁଣ, ନିରାକାର, ଅନିର୍ବଚନୀୟ । ତୁମର ମହିମାକୁ କଳ୍ପନା କରିବା ମୋ ଦ୍ୱାରା କିପରି ସମ୍ଭବ ? ମୋର ଦୁଇଟି ନୟନ ତୁମକୁ କିପରି ଦେଖିପାରିବ ? ମୋର ଭଗ୍ନ ଭାଷାରେ ତୁମର ବର୍ଣ୍ଣନା କିପରି କରି ପାରିବି ?

ଯେଉଁଠି ବେଦ -ପୁରାଣ ନେତି-ନେତି ବୋଲି କହିଛନ୍ତି- ସେଠାରେ ମୋର କି କ୍ଷମତା ? ଭକ୍ତ ହୃଦୟର ଭାବନାରେ ତୁମେ ଅକାରଣରେ ବଶୀଭୂତ ହୋଇ ଆମ ପ୍ରତି ଉଦାରତା ପୂର୍ବକ ସଗୁଣ, ସାକାର, ସୁଲଭ ହୋଇ ପାରିଛି । ବର୍ତ୍ତମାନ ଆମେ ଆମର ହୃଦୟ ଉପରେ ତମର ଧ୍ୟାନର ଆବରଣ ଘୋଡ଼ାଇ ପାରିଚୁ । ଆଖି ପୁରାଇ ତୁମକୁ ଦେଖି ପାରୁଚୁ । ମୁହଁରେ ତୁମର ନାମ କୀର୍ତ୍ତନ କରିପାରୁଛୁ ।

*　　　*　　　*

ଆଜି ଦିନଟି ସୁବର୍ଣ୍ଣମୟ -

ଆଜି ଦିନଟି ନିଃସଂଶୟରେ ସୁବର୍ଣ୍ଣମୟ । କାରଣ ଆଜି ଧର୍ମ-ମେଘରୂପୀ ସମାଧିର ଅମୃତବର୍ଷଣ ହୋଇ ଚାଲିଛି । ଭକ୍ତ ବତ୍ସଳ ଉପାସ୍ୟ ଦେବତା ଇଟା ଉପରେ ଛିଡ଼ା ହୋଇଛନ୍ତି । ସେହି ଦେବତା ମୋତେ ତାଙ୍କର ହୃଦୟର ଅନ୍ତଃସ୍ଥଳରେ ଦର୍ଶନ ନେଉଛନ୍ତି ।

ପୁଣି ସେହିଁ ବ୍ୟାପକ ବିଶ୍ୱରୂପରେ ପ୍ରକଟ ହୋଇ ରହିଛନ୍ତି । ଏପ୍ରକାର ତ୍ରିବିଧ ଦର୍ଶନ ଏକତ୍ର ହେବାପରେ ଆଉ କଣ କିଛି କୃପାର ପ୍ରତୀକ୍ଷାରେ ରହିବାକୁ ହେବ ?

ମନ ଉନ୍ମତ୍ତ ହୋଇ ଉଠେ -

ଯୋଗୀମାନଙ୍କର ଯେଉଁ ସୁଖ ଧ୍ୟାନାବସ୍ଥାରେ ବ୍ରହ୍ମରନ୍ଧ୍ରରେ ଅନୁଭୂତ ହୁଏ । ତାହାକୁ ଆମେ ସାକାର ମୂର୍ତ୍ତିର ଚିନ୍ତନ ଫଳରେ ଏହି ତିନି ଲୋକରେ ଦେଖିବାକୁ ପାଉ । ତାପରେ ଯେତେବେଳେ ଈଶ୍ୱରଙ୍କର ସଗୁଣ ସ୍ୱରୂପ ଆମେ ନିଜେ ଏବଂ ଏହି ବିଶ୍ୱ, ଏହି ତିନୋଟି ଏକରୂପ ବୋଲି ଅନୁଭୂତ ହୁଏ, ସେତେବେଳେ ମନ ଆପେ ଆପେ ଉନ୍ମତ୍ତ ହୋଇ ଉଠେ ।

*　　　*　　　*

ନିର୍ଗୁଣର ଖଟୁଲି ଉପରେ -

ନିର୍ଗୁଣ ଖଟିଆରେ ବିଛଣା ରଖା ହୋଇଛି । ତା ଉପରେ ସଗୁଣର ଶଯ୍ୟା ବିଛା ହୋଇଛି । ତା ଉପରେ ସାକାର ମୂର୍ତ୍ତି ଶୋଇଛନ୍ତି । ଏହା ହେଲା ବିଶ୍ୱର ସ୍ୱରୂପ । ମୋର ମନ ଏହି ମୂର୍ତ୍ତିର ଧ୍ୟାନରେ ବିଭୋର ହୋଇ ଅଛି । ଆଖି ଦୁଇଟି ତାଙ୍କ ଦର୍ଶନରେ ମଗ୍ନ । ନା-ତାଙ୍କ ଦର୍ଶନ ମୋର ନୟନ ଯୁଗଳରେ ଆନନ୍ଦ ରୂପରେ ପ୍ରବେଶ କରୁଛି । ହୃଦୟ ଚାରିପାଖରେ ପ୍ରାଚୀର ଘେରା ଚିନ୍ତନ-ମନ୍ଦିର, ଭିତରେ ଜୀବନର ଗର୍ଭଗୃହ ଏବଂ ତା ଭିତରେ ସେହି ମୂର୍ତ୍ତିର ଅବସ୍ଥାନ । ଏହି ରୂପ ହେଉଛି ନିତ୍ୟାନନ୍ଦ ରୂପ । ବିଶୁଦ୍ଧ ବୃତ୍ତି ଶୂନ୍ୟତା ସେହି ବୈକୁଣ୍ଠକୁ ଯିବାର ବାଟ, ଜ୍ଞାନଦେବ ଯେଉଁ ପଥର ନିରନ୍ତର ପଥିକ । ଏଥିପାଇଁ ସେ ପ୍ରତିଦିନ ବୈକୁଣ୍ଠରେ ବିରାଜ କରନ୍ତି ।

*    *    *

ନିରାକାର ଆକାର ଧାରଣ କରିଛନ୍ତି -

ଆତ୍ମା ଜ୍ୟୋତି ସ୍ୱରୂପ; କିନ୍ତୁ ତାହାର ସମଗ୍ର ଆଲୋକ ଦେହ ରୂପୀ ପର୍ଦ୍ଦାରେ ଆଚ୍ଛାଦିତ । ଏହା ହେଉଛି ଜୀବଦଶା । କିନ୍ତୁ ଉପାସନା ମୂର୍ତ୍ତିର ଚିନ୍ତା ଫଳରେ ଏ ଦଶା ସଂପୂର୍ଣ୍ଣ ବଦଳି ଯାଇଛି । ବର୍ତ୍ତମାନ ଦେହ ତ ଆତ୍ମାର ଜ୍ୟୋତି ପ୍ରକାଶକାରୀ ଦୀପରେ ପରିଣତ ହୋଇଛି । ଏହି ପ୍ରଦୀପର ଆଲୋକରେ ଚାରିଆଡ଼େ ଦୃଷ୍ଟି ପକାଇଲେ, ସବୁ ଦିଗ ଆଲୋକମୟ ହୋଇ ଯାଇଛି ବୋଲି ଦେଖାଯିବ । ପ୍ରତ୍ୟେକଟି ଦେହ ଯେପରି ଆତ୍ମଜ୍ୟୋତିରେ ପ୍ରଜ୍ୱଳିତ ପ୍ରଦୀପ । ତେବେ ପୁଣି କାହା ପାଇଁ ଧ୍ୟାନ କରିବି ? ନ କଲେ ମଧ୍ୟ ଧ୍ୟାନ ଚାଲୁଛି । ନିରାକାର ବସ୍ତୁ ଆକାରରେ ଲୁପ୍ତ ହୋଇଥିଲା । ବର୍ତ୍ତମାନ କିନ୍ତୁ ପୁଣି ତାହା ଆକାର ଲାଭ କରିଛି । ବର୍ତ୍ତମାନ ରଜ୍ଜୁ-ସର୍ପ ଅସ୍ତମିତ ଆଉ ସୁବର୍ଣ୍ଣ କଂକଣର ଆବିର୍ଭାବ ହୋଇଛି । ଏକମାତ୍ର କୃଷ୍ଣମୂର୍ତ୍ତିର ଚିନ୍ତନ ସମଗ୍ର ସୃଷ୍ଟିକୁ କୃଷ୍ଣମୟ କରି ଦେଇଛି । ଜଗତର ସବୁଆଡ଼େ ଯେତେବେଳେ ଗୋଟିଏ ବସ୍ତୁ ବିରାଜମାନ, ଚିତ୍ତ ଯଦି ସେତେବେଳେ କେଉଁଠି ଘୁରିବାକୁ ଯାଏ, ତଥାପି ଏକାଗ୍ରତା ହିଁ ବଜାୟ ରହିଥାଏ । ଚିତ୍ତ ଯଦି ରହିଯାଇ ଧ୍ୟାନକରେ ତାହାହେଲେ ମଧ୍ୟ ତାହା ଏକାଗ୍ରତା, ପୁଣି ଚିତ୍ତର ବିସର୍ଜନ ହୋଇଗଲେ ମଧ୍ୟ ତାହା ହେଉଛି ଏକାଗ୍ରତା ।

*    *    *

ଅନନ୍ତ ରୂପରେ ଅନନ୍ତ ବେଶରେ -

ଯୋଗୀମାନେ ବିଶ୍ୱକୁ ଗୋଟିଏ ପାଖକୁ ଆଡ଼େଇ ଦେଇ ପରମେଶ୍ୱରଙ୍କୁ ଦେଖିବାର ଇଚ୍ଛା କରନ୍ତି । ଜ୍ଞାନ ଦେବ କହନ୍ତି - ମୁଁ ଏହାଠାରୁ ବିପରୀତ ପ୍ରକ୍ରିୟାରେ ବିଶ୍ୱ ସହିତ ଈଶ୍ୱରଙ୍କୁ ଦେଖି ନେଉଛି ।

ଏଥିପାଇଁ ଅନନ୍ତରୂପରେ, ଅନନ୍ତବେଶରେ ତାଙ୍କର ଦର୍ଶନ ମୋତେ ପ୍ରାପ୍ତ ହୋଇଛି, ଏବଂ ଏହା ପ୍ରତି ମୁହୂର୍ତ୍ତରେ ହୋଇ ଚାଲିଛି ।

ଧ୍ୟାନ ! ସଗୁଣ ନିରାକାରର -

ଜ୍ଞାନ ଯୋଗୀର ନିର୍ଗୁଣ-ନିରାକାର ବ୍ରହ୍ମ ଯେପରି ଫୁଲଗଛର ମଞ୍ଜି । ଧ୍ୟାନଯୋଗୀର ସଗୁଣ ନିରାକାର ପରମେଶ୍ୱର ଯେପରି ଫୁଲ ଗଛର କଢ଼ି, ଆମର ଭକ୍ତମାନଙ୍କର ସଗୁଣ ସାକାର ବିଶ୍ୱ ବ୍ୟାପକ ବିଷ୍ଣୁ ଯେପରି ପ୍ରସ୍ଫୁଟିତ ଫୁଲ । ଏହି ପୁଷ୍ପର ସୁଗନ୍ଧରେ ସମଗ୍ର ସୃଷ୍ଟି ସୁରଭିତ ହୋଇ ଉଠିଛି । ତାର ସୌନ୍ଦର୍ଯ୍ୟରେ ସାରା ବିଶ୍ୱ ସୁଷମା ମଣ୍ଡିତ ହୋଇ ଉଠିଛି ।

* * *

ଅରୂପ ଦର୍ପଣରେ ପ୍ରତିଫଳିତ -

* * *

ଜଗତର ଅର୍ଥ ନିଜର ରୂପ ଦେଖିବାର ଦର୍ପଣ । ଆମେ ଯେମିତି ଜଗତ ମଧ୍ୟ ସେହିପରି । ଅରୂପ ଦର୍ପଣରେ ଦେଖୁଛନ୍ତି ଅର୍ଥାତ୍ ଜଗତର ରୂପ ସମୂହ ଲୁପ୍ତ ହୋଇଛି ଏବଂ ଦ୍ରଷ୍ଟାର ଦୃଷ୍ଟି ମଧ୍ୟ ଲୁପ୍ତ ହୋଇଛି । ଦୃଶ୍ୟ ଏବଂ ଦ୍ରଷ୍ଟାକୁ ଅଲଗା କରି କେବଳ ଦର୍ଶନ ହିଁ ଅବଶିଷ୍ଟ ରହିଛି । ତାହା ଯେଉଁଠି ରହିବା କଥା ସେହିଠାରେ ରହିଛି । ତାହାର ଉଦୟ ନାହିଁ ଅସ୍ତ ମଧ୍ୟ ନାହିଁ । ସମାଧି ଏବଂ ଉତ୍ଥାନର ଝମେଲା ନାହିଁ । କିଛି ସମୟ ଆନନ୍ଦ ଏବଂ କିଛି ସମୟ ନିରାନନ୍ଦ ଏପରି ଦ୍ୱୈତ ଅବସ୍ଥା ନାହିଁ; ଜଗତର ଅସଂଖ୍ୟ ଜୀବର ଅସ୍ତିତ୍ୱ ନାହିଁ । କେବଳ ଏକ ବିଠଲ୍ ହିଁ ସବୁଆଡ଼େ ବିରାଜମାନ । ଆଉ ସେ କେବଳ ଅଖଣ୍ଡ ସୁଖ ଏବଂ ସାମ୍ୟର ଅନୁଭବ କରି ଚାଲିଛନ୍ତି ।

* * *

ସମାଧିକୁ ମଧ୍ୟ ଗୋଟିଏ ପାଖରେ ରଖିଦେଇ -

ପଞ୍ଚେନ୍ଦ୍ରିୟର ବୃତ୍ତିଗୁଡ଼ିକୁ ନିରୋଧ କରି ସମାଧିର ସାଧନା କରିବାକୁ ହୁଏ ।

କିନ୍ତୁ ମୁଁ ତ ସମାଧିକୁ ମଧ୍ୟ ପଛରେ ଛାଡ଼ି ଆସିଛି, ଏବଂ ଭଗବାନଙ୍କର ସଗୁଣ ସ୍ୱରୂପରେ, କୃଷ୍ଣ ମୂର୍ତ୍ତିର ଉପାସନାକୁ ବରଣ କରି ନେଇଛି । ସମଗ୍ର ଇନ୍ଦ୍ରିୟ ବୃତ୍ତି ତାହାଙ୍କୁ ସମର୍ପଣ କରି ଦେଇଛି, ଏବଂ ପ୍ରେମ ସ୍ୱରୂପ ଭକ୍ତି ସାଧନା ଆତ୍ମସାଧନା ଆତ୍ମସାତ୍ କରି ନେଇଛି ।

*** *** ***

କୃଷ୍ଣମୟ ଜଗତ —

ପୂର୍ବରୁ ଯେତେବେଳେ ଭଗବାନଙ୍କର ଧ୍ୟାନ କରୁଥିଲି, ତାର ଫଳ ସ୍ୱରୂପ ମନ ଅନ୍ତରାତ୍ମାରେ ଏତେ ଲୀନ ହୋଇ ଯାଉଥିଲା ଯେ, ଅନେକ ଚେଷ୍ଟା କରି ସୁଦ୍ଧା ବାହାରକୁ ଆସି ପାରୁ ନଥିଲା, କିନ୍ତୁ ବର୍ତ୍ତମାନ ସଂପୂର୍ଣ୍ଣ ବିପରୀତ ଅବସ୍ଥା ହୋଇଛି । ଯେତେବେଳଠାରୁ ସାରା ଦୁନିଆରେ କୃଷ୍ଣ ମୂର୍ତ୍ତି ଦୃଶ୍ୟମାନ ହୋଇଛି, ସେତେବେଳଠାରୁ ମନ ଚାରିଆଡ଼େ ବୁଲି ବୁଲି ଫେରି ଆସି ଆଖି ଦୁଇଟିରେ ଯେପରି ସ୍ଥିର ହୋଇଛି । ଯେପରି ଆଖିରେ ପରିଣତ ହୋଇଛି ।

*** *** ***

ନୀଳବର୍ଣ୍ଣର ସାକ୍ଷାତକାର –

ଧ୍ୟାନ ଅବସ୍ଥାରେ ଯୋଗମାୟା ଦ୍ୱାରା ଆଚ୍ଛାଦିତ ଈଶ୍ୱରଙ୍କର ନୀଳବର୍ଣ୍ଣ ରୂପର ସାକ୍ଷାତକାର ହୁଏ । ଏହିପରି ଆକାଶରୂପୀ ଚିହ୍ନ ସାହାଯ୍ୟରେ ତାର ବ୍ୟାପକତା ସଂପର୍କରେ ଧ୍ୟାନ ଧାରଣା ଇତ୍ୟାଦି କରିବା ସମୟରେ ତାର ନୀଳବର୍ଣ୍ଣର ସାକ୍ଷାତକାର ମଧ୍ୟ ହୋଇଥାଏ । ଏହି ଅନୁଭୂତିର ବର୍ଣ୍ଣନା କରିବାକୁ ଯାଇ ଜ୍ଞାନଦେବ କହିଛନ୍ତି, ଈଶ୍ୱରଙ୍କ ସ୍ୱରୂପ କେବେଳ ନୀଳବର୍ଣ୍ଣ ରୂପରେ ହିଁ ଦେଖା ଦେଇଥାଏ । ଆକାଶ ପରି ବ୍ୟାପକ କିନ୍ତୁ ଆକାଶ ପରି ଶୂନ୍ୟ ନୁହେଁ । ପ୍ରୀତି ଦ୍ୱାରା ପରିପୂର୍ଣ୍ଣ । ଭଲ ପାଇବାରେ ପକ୍ଷପାତିତାର କଳ୍ପନା ଆସିପାରେ କିନ୍ତୁ ତାହା ମଧ୍ୟ ନୁହେଁ । ଏହା ସମତ୍ୱଯୁକ୍ତ ଅଭିବ୍ୟକ୍ତି । ଏପରି ଭାବରେ ଏହି ପ୍ରତିଭା ପୂର୍ଣ୍ଣ ଦର୍ଶନରେ ସଂପୂର୍ଣ୍ଣ ସାଧନା ନୀଳରଂଗରେ ରଂଜିତ ହୋଇ ସମଗ୍ର ଆଚରଣକୁ ମଧ୍ୟ ଏହି ରଂଗରେ ରଂଗାଇ ଦିଏ । ଜ୍ଞାନ ଦେବ ଯେପରି ନୀଳବର୍ଣ୍ଣର ପାଠଶାଳାକୁ ସବୁବେଳେ ଧରି ଚାଲିଛନ୍ତି, ଗୋପୀମାନେ ଶ୍ରୀକୃଷ୍ଣଙ୍କର ନୀଳବର୍ଣ୍ଣ ପ୍ରତି ଆକୃଷ୍ଟ ହୋଇ କ୍ରମବଶତଃ ନିଜେ ନିଜେ ଏହି ବର୍ଣ୍ଣ ଧାରଣ କରି ତାଙ୍କ ସଂଗେ ସମରସ ହୋଇ ଯାଇଛନ୍ତି । ସେଥିପାଇଁ ଏଇ ସ୍ଥିତି ।

ନିଜ ମଧ୍ୟରେ ସୃଷ୍ଟିର ମାଧୁର୍ଯ୍ୟ --

ଥରେ ଜ୍ଞାନଦେବ ଏବଂ ଚାଙ୍ଗଦେବ ପରସ୍ପରର ଆଧ୍ୟାତ୍ମିକ ଅନୁଭୂତିର ଅନୁସନ୍ଧାନରେ ଲିପ୍ତ ଥିଲେ । ଜ୍ଞାନଦେବ ଚାଙ୍ଗଦେବଙ୍କୁ ପଚାରିଲେ "ଧ୍ୟାନାବସ୍ଥାରେ ବିଭିନ୍ନ ପ୍ରକାର ଯେଉଁ ଭାବ ବ୍ୟଞ୍ଜକ ଚିତ୍ର ବିଚିତ୍ର ବର୍ଣ୍ଣ ଧାରଣ କରି ନୃତ୍ୟ କରୁଥାଏ, ଯେଉଁ ଆର୍ତ୍ତନାଦ ଶୁଣାଯାଏ, ତୀବ୍ର ଉଜଳ ବିନ୍ଦୁ ରୂପରେ ଯାହା ଭ୍ରୂଯୁଗଳ ମଧ୍ୟରେ ନାଚିବାକୁ ଆରମ୍ଭ କରେ ଏବଂ କିଛି କ୍ଷଣ ପରେ ଶାନ୍ତ ହୋଇ ସମସ୍ତଙ୍କୁ ଦୂର କରିଦିଏ, ଏ ତତ୍ତ୍ୱଟି କ'ଣ ? ଯାହାକୁ ପ୍ରିୟ ଠାରୁ ପ୍ରିୟତର ବୋଲି ମନେ ହୁଏ, ଆକାଶ ଠାରୁ ବିଶାଳ ବୋଲି ପ୍ରତିଭାତ ହୁଏ, ତ୍ରିଭୁବନରେ ଯାହାର ଅତିମାତ୍ରାରେ ଆବଶ୍ୟକତା ରହିଛି, ତଥାପି ଯାହା ଅନୁଭବରେ ନାହିଁ, ଏ ତତ୍ତ୍ୱଟି କଣ ?" ଚାଙ୍ଗଦେବ ଉତ୍ତରରେ କହିଲେ, "ହୁଏତ ଆମ୍ଭେମାନେ ହିଁ ଏହିସବୁ ! ଧ୍ୟାନ ହେଉଛି ଆମ୍ଭମାନଙ୍କର କଳ୍ପନା ମାତ୍ର ! ସୃଷ୍ଟିର ସଂପୂର୍ଣ୍ଣ ମାଧୁର୍ଯ୍ୟ ତ ଆମର ନିଜ ଭିତରେ ନିହିତ ଅଛି ।" ଜ୍ଞାନ ଦେବ କହିଲେ, " ମୋତେ ଖୁବ୍ ଭଲ ଲାଗିଲା, ଯେ ମୋ ମନ କଥା ତୁମେ କହିଲ । ବର୍ତ୍ତମାନ ତୁମେ ଆଉ ମୁଁ ଏକ ହୋଇଗଲୁ ।"

*** *** ***

ରୂପ ଦର୍ଶନର ଅଭାବ ନାହିଁ –

ଧ୍ୟାନ ସମାଧିରେ ମଗ୍ନ ହୋଇଥିବା ଏପରି ଜଣେ ସାଧକଙ୍କୁ ଲକ୍ଷ୍ୟ କରି ଜ୍ଞାନ ଦେବ କହିଛନ୍ତି, "ଦୃଷ୍ଟିର ଆନନ୍ଦ ନିଃସଂଦେହରେ ମନ ଭିତରେ ପୁରି ରହିଛି । ଅନ୍ତର୍ଯ୍ୟାମୀ ଯେତେବେଶୀ ଉଜ୍ଜ୍ୱଳ ହେବେ, ଜଗତ ସେତେ ବେଶୀ ମଂଗଳମୟ ମନେ ହେବ । ଅନ୍ତର ମଧ୍ୟରେ ଆତ୍ମାରାମର ଦର୍ଶନ ହେଲେ ତେବେ ଯାଇ ବାହାରର ଜଗତ ହରିଙ୍କ ରୂପରେ ପୂର୍ଣ୍ଣ ବୋଲି ଦେଖାଯିବ । କେବଳ

ପୂର୍ଣ୍ଣ ନୁହେଁ ପୂର୍ଣ୍ଣ ହୋଇ ଉଛୁଳି ପଡ଼ିବ । ତୁମେ କଣ ବୁଝିପାରିବ ଯେ, ଆଜି ପର୍ଯ୍ୟନ୍ତ ତୁମେ ଯାହା କିଛି କହିଛ, ଆଉ ଆଜିଯାଏ ଯାହା କିଛି ଦୁନିଆରେ କୁହାଯାଇଛି ସେଗୁଡ଼ିକ କିଛି ନ ବୁଝି ଶୁଆ ପକ୍ଷୀ ପରି ଓଁକାର ଜପ ହିଁ କୁହାଯାଇ ଥାଏ । କିନ୍ତୁ ତୁମର ସ୍ଥିତି ବର୍ତ୍ତମାନ ଏପରି ନୁହେଁ । ତୁମେ ଅଖଣ୍ଡ ଅନାହତ ଧ୍ୱନି ଶୁଣୁ ଅଛ । କିନ୍ତୁ ରୂପ ଦର୍ଶନ ତୁମର ଟିକିଏ ବି ହୋଇନାହିଁ । ଦୃଷ୍ଟିକୁ ଅନ୍ତର୍ମୁଖ କରି, କ୍ରିୟାଶୂନ୍ୟ ସମାଧି ଲାଭ କର । ଏହା ମଧ ଯଥେଷ୍ଟ ନୁହେଁ । ଏହାପରେ ଅସଲ କଥା ହେଉଛି, ସମାଧି ମଧ ଲୁପ୍ତ ହେବ ଏବଂ ତାର ପର୍ଯ୍ୟାବସାନ ସହଜ ଭାବରେ ସ୍ଥିତିଶୀଳ ହେବ । ପୁଣି ଦୃଷ୍ଟି ଫେରାଇ ନେଇ ଧାନ ବୃତ୍ତି ସ୍ୱରୂପ ସାପେକ୍ଷ ନିବୃତ୍ତିର ଅବସାନ ଘଟାଇବାକୁ ହେବ । ବସ୍ତୁତଃ ଏହା ହେଉଛି ପ୍ରକୃତ ନିବୃତ୍ତି । ତାପରେ ଆଖି ଖୋଲି ଚିନ୍ତାମୁକ୍ତ ହୋଇ ଦୁନିଆକୁ ଦେଖ, ରୂପ ଦର୍ଶନର କୌଣସି ଅଭାବ ରହିବ ନାହିଁ ।

ହୃଦୟରେ ଅବସ୍ଥିତ ପରମାତ୍ମାଙ୍କ ଧାନ କର --

ଈଶ୍ୱର ଦୂରରେ ନାହାନ୍ତି । ପାଖରେ ବି ନାହାନ୍ତି । ବାହ୍ୟ ଜଗତରେ ତାଙ୍କୁ ଖୋଜିବା ଭୁଲ । ଅନ୍ତଃକରଣର ସର୍ବନିମ୍ନ ସ୍ତରରେ ତାଙ୍କର ଅଧିଷ୍ଠାନ । ଅନ୍ତର୍ବୃତ୍ତି ଦ୍ୱାରା ଦେଖନ୍ତୁ, ତାହାହେଲେ ସୂକ୍ଷ୍ମ ଜୀବଜନ୍ତୁଙ୍କ ମଧରେ ଏବଂ ଅଣ-ପରମାଣୁ ମଧରେ ଈଶ୍ୱରଙ୍କୁ ଦେଖି ପାରିବ । ତା ନ ହେଲେ ବାହ୍ୟ ଦୃଷ୍ଟି ଦ୍ୱାରା ବିଜ୍ଞାନର ବିକାଶ ଦ୍ୱାରା ଯେତେ ତାଙ୍କୁ ଅନୁସନ୍ଧାନ କରିବେ, ତାଙ୍କର ଦେଖା ମିଳିବ ନାହିଁ । ତାଙ୍କୁ ଦେଖିବା ପାଇଁ ଦୃଷ୍ଟି ଶକ୍ତିର କୌଣସି ପ୍ରୟୋଜନ ନାହିଁ । କାରଣ ସେ ଯେ ଦୃଷ୍ଟିର ସ୍ରଷ୍ଟା, ତାହାଙ୍କୁ ବର୍ଣ୍ଣନା କରିବା ପାଇଁ ଭାଷା ଅକ୍ଷମ, କାରଣ ସେ ହେଉଛନ୍ତି ଭାଷାର ବକ୍ତା । ଏଥିପାଇଁ ଜ୍ଞାନଦେବ କହିଛନ୍ତି, "ଆଧାତ୍ମିକ ଚର୍ଚ୍ଚା ଖୁବ୍ ବେଶୀ କରିବ ନାହିଁ" । ଆସନ୍ତୁ ହୃଦୟରେ ଅଧିଷ୍ଠିତ ପରମାତ୍ମାଙ୍କୁ ଶାନ୍ତି ପୂର୍ବକ ଦେଖନ୍ତୁ, ଧାନ କରନ୍ତୁ ।

*** *** ***

ମହାପୂଜାର ଧାନ --

ବିଶ୍ୱରୂପ ସ୍ୱୟମ୍ଭୂ ଜ୍ୟୋତିର୍ଲିଙ୍ଗ ସମ୍ମୁଖରେ ଦେଖା ଯାଉଛନ୍ତି । ଶେଷ ନାରାୟଣଙ୍କ ଆସନ ସ୍ଥାପିତ ହୋଇଛି । ସମୁଦ୍ର ବଳୟ ଅଙ୍କିତ ଏହି ପୃଥିବୀ ଶିବ-ଲିଙ୍ଗର ରୂପ ଧାରଣ କରିଛି । ସ୍ୱର୍ଗ ମୂଳାଧାର ରୂପ ପିଣ୍ଡ । ଏହି ଦିବ୍ୟ ଜ୍ୟୋତିର୍ଲିଙ୍ଗର ପୂଜା ମଧ ଯଥାରୀତି ଶେଷ ହୋଇଛି । ବର୍ଷା ଜଳରେ ତାହାର ସ୍ନାନ ସମାପ୍ତ, ତାରକରୂପୀ ଫୁଲରେ ତାହା ପୂଜିତ, ଚନ୍ଦ୍ର ରୂପ ଫଳ ସମର୍ପିତ ସୂର୍ଯ୍ୟ ରୂପକ ଦୀପରେ ଆରତୀ ସୁସଂପନ୍ନ । ସମଗ୍ର ଜୀବ ଜଗତର ଜୀବଭାବ ରୂପ ନୈବେଦ୍ୟ ତାହାଙ୍କୁ ସମର୍ପଣ କରାଯାଇଛି । ବିରାଟ ରୂପର ଅନ୍ତର୍ଗତ ବ୍ରହ୍ମାନନ୍ଦ ତାହାଙ୍କୁ ବନ୍ଦନା କରିଛି । ଜ୍ଞାନ ଦେବ ନିଜ ହୃଦୟରେ ଏହିପରି ଭାବରେ ମହାପୂଜାର ଧାନ କରିଥାଆନ୍ତି ।

ଚିତ୍ତଃ ଲୀନ ନୁହେଁ, ଅଲୀନ ମଧ ନୁହେଁ, ବରଂ ଅତିଲୀନ --

ଧାନ ଯେତେବେଳେ ଚୂଡ଼ାନ୍ତ ପର୍ଯ୍ୟାୟରେ ସ୍ଥିତି ଲାଭ କରେ ଜୀବର କଳ୍ପନା ଶକ୍ତି ସବୁ ପ୍ରକାର ଲୁପ୍ତ ହୋଇଯାଏ । ପ୍ରାୟ ସ୍ୱରୂପ-ଶୂନ୍ୟତାର ହିଁ ଅନୁଭବ ହୁଏ । ଚିତ୍ତ-ଚତୁଷ୍ଟୟ ଶୂନ୍ୟ ହୋଇ ଯାଏ । ଏହା ପରେ ଯେଉଁ ହୃଦାୟାକାଶ ଜୀବ-ପ୍ରକୃତି, ସେସବୁ ଶୂନ୍ୟ ହୋଇଯାଏ ।

ଚିତ୍ତ-ଚତୁଷ୍ଟୟର ଗୋଟିଏ ଦିଗରେ ବ୍ୟକ୍ତି ସୃଷ୍ଟି ଠିଆ ହୋଇ ରହିଛି । ଜୀବ ପ୍ରକୃତିର ପରେ ଅବ୍ୟକ୍ତ ସୃଷ୍ଟି ଏପରି ଭାବରେ ରହିଛି । ଦୁଇଟିର ଅବସ୍ଥାନ ଧ୍ୟାନ-କକ୍ଷର ବାହାରେ । ଧ୍ୟାନ-ଶକ୍ତି ଦ୍ୱାରା ସେଗୁଡ଼ିକ ବିଲୁପ୍ତ ହୁଅନ୍ତି ନାହିଁ । ଗାଣିତିକ ଭାଷାରେ ଦୁଇଟି ଆନନ୍ଦ ବା ନିଃଶୂନ୍ୟ । ଗୋଟିଏ ହେଲା ବ୍ୟକ୍ତ ବା ନିଃଶୂନ୍ୟ ଅପରଟି ଅବ୍ୟକ୍ତ ବା ଏ ପଟର ନିଃଶୂନ୍ୟ ।

ଏହି ଦୁଇଟି ହିଁ ନିଃଶୂନ୍ୟ (ଶୂନ୍ୟାତୀତ) । ଆଉ ଜୀବର କଳ୍ପନାରେ ସେହି ଚାରି ପାଂଚ ଶୂନ୍ୟ ମିଶି ବିଶ୍ୱ ରୂପର ସୃଷ୍ଟି ହୋଇଛି । ଏସବୁ ଯାହା ସୃଷ୍ଟି ହୋଇଛି, ଏବଂ ସେମାନଙ୍କର ଦ୍ରଷ୍ଟା ସବୁ ଏକ ବ୍ରହ୍ମତତ୍ତ୍ୱ। ସେହିଗୁଡ଼ିକ ଆମର ସମସ୍ତଙ୍କର ନିଜ ବସ୍ତୁ ।

ଶୂନ୍ୟ ଲୁପ୍ତ ହେଲେ ନିଃଶୂନ୍ୟର ଧାରଣା ସହଜରେ ଉପଦ୍ରବମୁକ୍ତ ହୋଇଥାଏ । ତାପରେ ଦର୍ଶନ ଲାଭ ହୁଏ ଯାହା ସେହି ନିଜ ବସ୍ତୁର ଦର୍ଶନ, ଯାହା ହେଲା ଉଭୟାତୀତ । ତାପରେ ଆଉ ଧ୍ୟାନର ଆବଶ୍ୟକତା ନଥାଏ । ଧ୍ୟେୟମୟତାର ଅବସାନ ହେଲା, ନିରଞ୍ଜନତା ଉଦିତ ହେଲା । ଏକେବାରେ ସାଧାରଣ ମଣିଷ ପରି ଦର୍ଶନ ହେବ । ଜ୍ଞାନଦେବ କହନ୍ତି, ଏ ଅବସ୍ଥାର ଅନୁଭବ ମଧ୍ୟ ମୋର ଅଛି । ଆଉ ଅନୁଭବରୁ ସେହି ଜ୍ଞାନ ଲାଭ ହୁଏ । କିନ୍ତୁ ଏହି ଅବସ୍ଥା ବୁଝିବା ପାଇଁ ନିବୃତ୍ତିନାଥ ଗୋଟିଏ ସାଂକେତିକ ଶବ୍ଦ ଖୋଜି ବାହାର କରିଛନ୍ତି । ତାଙ୍କ ଭାଷାରେ ଏହା ହେଲା ଅତିଲୀନ ଅବସ୍ଥା । ସାଧାରଣ ମଣିଷର ମନ ଚାରିଆଡ଼େ ଘୁରିବୁଲେ । ଏହା ମଧ୍ୟ ସବୁ ଆଡ଼କୁ ଯିବ । ତାର ଚିତ୍ତ ଲୀନ ହୋଇ ନାହିଁ । ଏହାର ମଧ୍ୟ ଚିତ୍ତ ଲୀନ ନୁହେଁ । କିନ୍ତୁ ତାହା ଲୀନ ନୁହେଁ ଅର୍ଥାତ୍ ତାହା ହେଲା 'ଅଲୀନ', ଆଉ ଏହା ଲୀନ ନୁହେଁ, ଅର୍ଥାତ୍ ଏ ହେଉଛି 'ଅତିଲୀନ' ।

ଗୋଟିଏ ମୂହୁର୍ତ୍ତ ପାଇଁ ମଧ୍ୟ ଆଢୁଆଳରେ ନାହିଁ --

ମୁଁ ଏହି ତ୍ରିଗୁଣାତ୍ମକ ସଂସାର ରୂପୀ ଗ୍ରାମ ଛାଡ଼ି ଆସିଛି ଏବଂ ଶାନ୍ତିରେ ନିର୍ଗୁଣର ଏକାନ୍ତତାରେ ବସି ଯାଇଛି । ସେଠାରେ ବହୁ ପ୍ରକାର ଧ୍ୟାନ ଚିନ୍ତନ କରିବା ଫଳରେ ଏହି ଦର୍ଶନ ଲାଭ ହୋଇଛି ଯେ ଈଶ୍ୱର ହିଁ ଏହି ସବୁ ରୂପ ଗ୍ରହଣ କରିଛନ୍ତି । ଯାହାକୁ ମୁଁ ତ୍ରିଗୁଣାତ୍ମକ ସଂସାର ବୋଲି ଜାଣିଥିଲି ତାହା ମଧ୍ୟ ତାଙ୍କରି ରୂପ । ସେ ନିରନ୍ତର ମୋ ପାଖରେ ରହିଛନ୍ତି । ତାଙ୍କ ମୋ ଭିତରେ ଗୋଟିଏ ମୁହୂର୍ତ୍ତ ପାଇଁ ଆଢୁଆଳ ନାହିଁ । ବର୍ତ୍ତମାନ କହିବାର କିଛି ନାହିଁ । ତାଙ୍କ ସହିତ ମୋର ସର୍ବାଙ୍ଗୀନ ସାକ୍ଷାତକାର ହୋଇ ଯାଇଛି । ସେହି ତ୍ରିଗୁଣ ବିଶିଷ୍ଟ ନାମ ହିଁ ପବନରେ ମିଳେଇ ଯାଇଛି । ତ୍ରିଗୁଣାତ୍ମକ ମାୟା ଉପରେ ନିର୍ଗୁଣ ଚିନ୍ତନର କଲମ ବସାଇବା ଫଳରେ ତାଠାରୁ ସଗୁଣ ପରମେଶ୍ୱର ଫୁଟି ଉଠିଛନ୍ତି । ଈଶ୍ୱର ନିଜେ ତାଙ୍କର ନିଜ ରୂପ ମୋତେ ଦେଇ ମୋର ହସ୍ତ ଯୁଗଳକୁ ଏପରି ଭାବରେ ଅପୂର୍ବ ସିଦ୍ଧି ଦାନ କରିଛନ୍ତି ।

*** *** ***

ଚନ୍ଦନ ଗଛରେ ଫଳ ଧରିଛି --

ଏହାର ପରବର୍ତ୍ତୀ କାଳରେ ଧ୍ୟାନ ଚିନ୍ତନ ଇତ୍ୟାଦିର ପ୍ରୟୋଗ ଅର୍ଥାତ୍ ଯେଉଁ ବ୍ରହ୍ମ ତତ୍ତ୍ୱର ଉପଲବ୍ଧି ହୋଇଛି ବାରମ୍ବାର ତାର ସାକ୍ଷାତକାର ଲାଭ କରିବାକୁ ହୁଏ । ଯାଠାରୁ ଅଧିକ ନିଷ୍ପତ୍ତି ହେବାର ଆଉ କିଛି ନଥିଲା । ଯାଠାରୁ ଯାହାଙ୍କ କୃପାରୁ ଏତେ ବ୍ରହ୍ମାନୁଭୂତି ହୋଇଛି,

ସେହି ଈଶ୍ୱରଙ୍କର ଏବଂ ଶ୍ରୀ ଗୁରୁଙ୍କର ସ୍ତବଗାନ ସହଜ ଭାବରେ କରୁଥିଲେ, ତାହା ମନ ପାଇଁ ଆନନ୍ଦଦାୟକ ହୁଏ । ଦେହର ବଳିଦାନ ହୋଇଗଲେ ସାଧନା ସମାପ୍ତ ହୁଏ, ସମାଧାନ ହୋଇଗଲା । କାମନା ସହ ମାୟା ନୃତ୍ୟର ବିଲୋପ ହୋଇଗଲେ ପରିପୂର୍ଣ୍ଣ ଆତ୍ମ-ରୂପର ଦର୍ଶନ ଦୃଷ୍ଟି ପଥକୁ ଆସିଲା । ଆତ୍ମ ସ୍ୱରୂପକୁ ନିରାକାର କୁହାଯାଏ । କିନ୍ତୁ ମୋ ନିକଟରେ ତାହା ବିଶ୍ୱାକାର ରୂପରେ ପ୍ରତିଭାତ ହେଉଛି । ମନେକର ଚନ୍ଦନ ଗଛରେ ଫଳ ଧରିଛି, ଅଶ୍ୱତ୍ଥ ଗଛରେ ଫଳ ଧରିଛି । ବର୍ତ୍ତମାନ ସଂସାର ଏବଂ ଦର୍ଶନର ବିଷୟ ଆଲୋଚନା ବନ୍ଦ ରହୁ, କେବଳ ସ୍ୱରୂପାନନ୍ଦ ସାଗରରେ ଅବସ୍ଥାନ କରିବାକୁ ହେବ । ଜ୍ଞାନ ସମୁଦ୍ର ରୂପୀ ପରମାତ୍ମା ସୃଷ୍ଟି ରୂପ ଢେଉ ଦ୍ୱାରା ତରଙ୍ଗାୟିତ ହେଉଛି ।

***     ***     ***

ନିର୍ଗୁଣ ଅବସ୍ଥାରେ ମଧ ସଗୁଣ ସାକାର ଆକର୍ଷଣ କରେ --

ନଶ୍ୱର ଅବିନଶ୍ୱର ବିଚାରଠାରୁ ଈଶ୍ୱରଙ୍କୁ ପୃଥକ କରନ୍ତୁ । ଆଉ କେବଳ ତାଙ୍କର ଧ୍ୟାନ ଚିନ୍ତନ କରୁଥାଆନ୍ତୁ । ଜ୍ଞାନ ମାର୍ଗର ଏହି ପ୍ରକ୍ରିୟା ମଧ ଆମ ପାଇଁ ଅକାମୀ । କାରଣ ସୋଽହମ୍ ସୂତ୍ର ଆମ ହାତକୁ ଆସିଯାଇଛି । ଏଥିପାଇଁ ପୃଥକତ୍ୱର ଆବଶ୍ୟକତା ହିଁ ନାହିଁ । ସମଗ୍ର ବିଚାର ଏବଂ ଚିନ୍ତନ ଆମ ଭିତରେ ଭରି ରହିଛି । କିନ୍ତୁ ଜ୍ଞାନ ଦେବ କହନ୍ତି, ଏପ୍ରକାର ନିର୍ଗୁଣ ଅବସ୍ଥାରେ ମଧ ମୋ ମନରେ ସଗୁଣ-ସାକାର ପ୍ରତି ଆକର୍ଷଣ ରହି ଯାଇଛି ।

## ୯.ଆତ୍ମାନୁଭୂତି

- ମୋର ସ୍ୱଭାବ ଧ୍ୟାନନିଷ୍ଠ ।
- ବିଭିନ୍ନ ପ୍ରକାରର ଅନୁଭୂତି ଶୂନ୍ୟତାର ଅନୁଭବ ।
- ଭରତ ରାମ ପ୍ରାପ୍ତି
- ଜ୍ଞାନ ଦେବଙ୍କର ଅନୁଗ୍ରହ
- ନିର୍ବିକଳ୍ପ ସମାଧି
- ଅଧିରୂଢ଼ ସମାଧି ଯୋଗ
- ଆଲିଙ୍ଗନ
- ସାମୂହିକ ସାକ୍ଷାତକାର
- ପ୍ରାଚୀନ ସନ୍ଥମାନଙ୍କର ସଂପର୍କ

ସବ ମଁହରମ ରହିୟା ପ୍ରଭୁ ଏକୈର ଛଳନା --

## ୬୨. ମୋର ସ୍ୱଭାବ ଧ୍ୟାନନିଷ୍ଠ

ମୋର ସ୍ୱଭାବ ଧ୍ୟାନନିଷ୍ଠ । କିନ୍ତୁ ଧ୍ୟାନ କର୍ମ, ଜ୍ଞାନ, ଭକ୍ତି, ସେବା ଏସବୁ ଭିତରେ ମୁଁ କୌଣସି ପାର୍ଥକ୍ୟ ଦେଖିପାରେ ନାହିଁ । ସବୁ ଏକା କଥା । ସବୁ ହେଉଛି ତାର ବିଭିନ୍ନ ଅଂଶ । ମୋ ନିଜ କଥା ଯଦି କହିବି ତେବେ କହିବାକୁ ହେବ ଯେ ମୁଁ ସର୍ବଦା ଧ୍ୟାନରେ ମଗ୍ନ ରହିବାକୁ ଚାହେଁ । ସାତ ଆଠ ବର୍ଷ ଧରି ମୋର ପଦଯାତ୍ରା ଚାଲୁଛି । ଗୋଟିଏ ଗୋଟିଏ ପ୍ରଦେଶରେ ମାସ ପରେ ମାସ କଟି ଯାଇଛି । ତାପରେ ଏ ପ୍ରଦେଶରୁ ବିଦାୟ ନେଇ ଅନ୍ୟ ପ୍ରଦେଶରେ ପ୍ରବେଶ । ଏ ଯେଉଁ ଖେଳ ଚାଲିଛି ତାହା ମୋର ସ୍ୱଭାବ ସିଦ୍ଧ ନୁହେଁ । କିନ୍ତୁ ଗାନ୍ଧିଜୀଙ୍କର ତିରୋଧାନ ପରେ ମୁଁ ଦେଖିଲି ଯେ ମୋତେ ବ୍ୟାପକ କର୍ମଯୋଗର କ୍ଷେତ୍ରକୁ ଓହ୍ଲାଇ ପଡ଼ିବାକୁ ହେବ । ଏହିପରି ଧ୍ୟାନ ସାଥିରେ ମୋର କର୍ମଯୋଗ ତ ଚାଲୁଥିଲା, କିନ୍ତୁ ତାହା ଥିଲା ବିଶିଷ୍ଟ ଧରଣର କର୍ମଯୋଗ । ତାହା ବ୍ୟାପକ ଭାବରେ କୌଣସି କର୍ମଯୋଗ ନଥିଲା । ଅର୍ଥାତ୍ ସେଥିରେ ଧ୍ୟାନର ମୁଖ୍ୟ ଭୂମିକା ଥିଲା, ଏବଂ କର୍ମଯୋଗ ଥିଲା ଧ୍ୟାନର ଅଂଗ । ବର୍ତ୍ତମାନ ଭୂଦାନ-ଯାତ୍ରା ପାଇଁ, ବିଶାଳ କର୍ମଯୋଗ ପାଇଁ ବାହାରି ପଡ଼ିଛି । କିନ୍ତୁ ଅନ୍ତର ମଧ୍ୟରେ ମୋର ଧ୍ୟାନ ହିଁ ଚାଲୁଛି । ଯେତେବେଳେ ଦିନ ସାରା ମୁଁ କି କାମ କଲି ଏହି ଭାବରେ ନିଜର ବିଚାର କରି ବସେ ସେତେବେଳେ 'ଧ୍ୟାନ କରିଥାଏ', ଏପ୍ରକାର ଉତ୍ତର ମୋ ଭିତରୁ ଆସେ ।

ମୋ ସାମ୍ନାରେ କୌଣସି ଛବି ଅଂକା ହେଉ, କୌଣସି ଭଜନ ବା ଚଢ଼େଇର ସ୍ୱର ଶୁଣାଯାଉ, ସାମ୍ନାରେ ପାହାଡ଼ ବା ଅନ୍ୟ କୌଣସି ଦୃଶ୍ୟ ହେଉ, ସୂର୍ଯ୍ୟୋଦୟର ଦୃଶ୍ୟ ହେଉ ବା ପବନ ବହୁଥାଉ -- ଯାହା କିଛି ହୋଇଥାଉ, ସବୁକିଛି ମୋତେ ଧ୍ୟାନରେ ସାହାଯ୍ୟ କରେ । ଏବଂ ଏଥିପାଇଁ ମୋର ନିତ୍ୟ ନୂତନ ଦୃଷ୍ଟି ଲାଭ ହୁଏ । ମୁଁ ଭାବି ଆଶ୍ଚର୍ଯ୍ୟ ହୁଏ ଯେ ଭଗବାନ କେତେ ରୂପରେ ଜୀବନକୁ ପରିପୂର୍ଣ୍ଣ କରି ନ ରଖିଛନ୍ତି ।

୧୯୧୬ ରୁ ୧୯୨୦ ମସିହାର ମଧ୍ୟବର୍ତ୍ତୀ ସମୟରେ ମୁଁ ସାବରମତୀ ଆଶ୍ରମରେ ଥିଲି । ରାତିରେ ଯେତେବେଳେ ସବୁ ଶାନ୍ତ ହୋଇଯାଉଥିଲା, ସେତେବେଳେ ମୁଁ ମୋ କୋଠରୀ ଭିତରେ ଅନ୍ଧକାର ମଧ୍ୟରେ ଶତରଞ୍ଜି ଉପରେ ବସି ଧ୍ୟାନ କରୁଥିଲି । ଶୀଘ୍ର ଏକାଗ୍ରତା ଆସି ଯାଉଥିଲା । ତାହାଦ୍ୱାରା ମୋତେ ଅନେକ କିଛି ସମାଧାନ ମିଳିଯାଉଥିଲା । କିନ୍ତୁ ପରବର୍ତ୍ତୀ ସମୟରେ ଆଶଂକା ହେଲା ଯେ ଏହା କଣ ବିଶୁଦ୍ଧ ସମାଧି, ନା କୌଣସି ପ୍ରକାର ନିଦ୍ରା ମଧ୍ୟ ହୋଇପାରେ । ଏହା ସମାଧିର ସଂକେତ ମାତ୍ର ନୁହେଁ ତ ? ଏପ୍ରକାର ବିଚାର କରି ତିନି ମାସ ଧରି କରିଥିବା ଏହି ପ୍ରୟୋଗର ଅଭ୍ୟାସ ତ୍ୟାଗ କଲି ଆଉ ରାତ୍ରିର ପରିବର୍ତ୍ତରେ ଭୋର ତିନିଟା ବେଳେ ଉଠି ଧ୍ୟାନ କରିବାକୁ ବସିଲି । ସେଥିରେ ଶୀଘ୍ର ସଫଳତା ଆସିଲା ନାହିଁ, କିନ୍ତୁ ସର୍ବଦା ଚେଷ୍ଟା କରିବା ଫଳରେ ଧିରେ ଧିରେ ଏକାଗ୍ରତାର ଅନୁଭୂତି ହେବାକୁ ଲାଗିଲା । ଏହି ଅଭ୍ୟାସ ମୁଁ ଛଅ ମାସ ପର୍ଯ୍ୟନ୍ତ କରିଥିଲି । ଧ୍ୟାନ ଓ ସମାଧିର ଏହା ହେଲା ମୋର ପ୍ରଥମ ଉପଲବ୍ଧି ।

୧୯୩୭ ମସିହା କଥା । ସେ ସମୟରେ ମୁଁ ନାଲବାଡ଼ୀରେ ରହୁଥିଲି । ଦୈନିକ ଆଠ ଘଣ୍ଟା କରି ସୂତା କଟା ପ୍ରୟୋଗ କରିବା ଫଳରେ ମୁଁ କିଛିଟା ଦୁର୍ବଳ ହୋଇ ପଡ଼ିଥିଲି ଆଉ ଜ୍ୱର ଓ କାଶରେ ଆକ୍ରାନ୍ତ ହୋଇ ପଡ଼ିଥିଲି । ବାପୁଙ୍କ ପାଖକୁ ଖବର ଗଲା । ସେ ସ୍ଥାନ ପରିବର୍ତ୍ତନ ପାଇଁ ପରାମର୍ଶ ଦେଲେ, ଏବଂ ସ୍ୱାସ୍ଥ୍ୟର ଉନ୍ନତି ପାଇଁ ୧୯୩୮ ମାର୍ଚ୍ଚ ୭ ତାରିଖରେ ମୁଁ ପୌନାରରେ ପହଂଚିଲି । ମଟର ଗାଡ଼ିଟି ଯେତେବେଳେ ଧାମ ନଦୀ ଉପରେ ଥିବା ବନ୍ଧ ଉପରେ ପହଂଚିଲା ସେତେବେଳେ ମୁଁ କହି ଉଠିଲି -- ସଂନ୍ୟସ୍ତଂ ମୟା, ସଂନ୍ୟସ୍ତଂମୟା, ସଂନ୍ୟସ୍ତଂ ମୟା । ସବୁ କାମ ଏବଂ ସଂସ୍ଥା ଗୁଡ଼ିକୁ ସଂପୂର୍ଣ୍ଣ ତ୍ୟାଗ କରି ଏବଂ ଏକେବାରେ ନିଶ୍ଚିନ୍ତ ହୋଇ ବଙ୍ଗଳାଟିରେ ପ୍ରବେଶ କଲି । ସେଠାରେ ଘଣ୍ଟା ଘଣ୍ଟା ଧରି ମନକୁ ଶୂନ୍ୟ କରି ପଡ଼ି ରହୁଥିଲି । ଏହା ଥିଲା ମୋର ଶୂନ୍ୟତାର ଅନୁଭବ । ଘଡ଼ିକୁ ଯେପରି ବନ୍ଦ କରି ଦିଆଯାଏ ସେପରି ଭାବରେ ମନକୁ ବନ୍ଦ କରି ରଖି ଦେଇଥିଲି । ଘଣ୍ଟା ଘଣ୍ଟା ଧରି ଶୂନ୍ୟାବସ୍ଥାରେ ରହୁଥିଲି । ବିକାର ଠାରୁ ମୁକ୍ତିର ସାଧନା ତ ପ୍ରଥମରୁ ଥିଲା, ବର୍ତ୍ତମାନ ହେଲା ବିଚାର ମୁକ୍ତିର ପ୍ରଶ୍ନ । ପଶା ଖେଳରେ ବୁଦ୍ଧିର ଖେଳ ଖେଳିବାକୁ ହୁଏ । ଏ ପ୍ରକାର ଖେଳ ମିଛ । କିନ୍ତୁ ସେଥିରେ ବୁଦ୍ଧିର ପ୍ରୟୋଗ କିଛି ମାତ୍ରାରେ ହୁଏ । ସେତିକି ଚିନ୍ତାର ସ୍ଥାନ ବି ମୁଁ ଦେଇ ନଥିଲି । ତାହା ମଧ୍ୟ ଛାଡ଼ି ଦେଲି । ପରିଣାମ ଏତେଦୂର ପର୍ଯ୍ୟନ୍ତ ହେଲା ଯେ ସବୁ କିଛି ଶୂନ୍ୟ ବୋଧ ହେଲା । କେଉଁଠି କିଛି ନାହିଁ ଏପ୍ରକାର ଅନୁଭୂତି ହେବାକୁ ଲାଗିଲା । କିଛି ନାହିଁ ଏ ଅନୁଭବ ଏତେ ହେଲା ଯେ 'ଅଛି' ଜିନିଷଟା କ'ଣ, ତାହା ବୁଝିବା ପାଇଁ ଜାଗରଣ ଅବସ୍ଥାରେ ମଧ୍ୟ ହାତ ଦ୍ୱାରା ସ୍ପର୍ଶ କରି ଅନୁଭବ କରିବାର ଆବଶ୍ୟକତା ପଡୁଥିଲା । ହାତ ଦ୍ୱାରା କୌଣସି ଶକ୍ତ ଜିନିଷ ସ୍ପର୍ଶ କରି ଅନୁଭବ କରୁଥିଲି । ସୃଷ୍ଟି ଲୁପ୍ତ ହେବାର ଏହି ଅନୁଭବ ଥିଲା । ମୁଁ କେବଳ ମାତ୍ର ମୋର ନିଜ ସ୍ଥାନରେ ଅଛି, କେବଳ ଏଇ ଅନୁଭୂତି ଟିକକ ବର୍ତ୍ତମାନ ଥିଲା ।

***      ***      ***

୧୯୩୨ ସାଲରେ ମୁଁ ଧୂଳିଆ ଜେଲରେ ଥିଲି । ସେଠାରେ ଗୀତା ଉପରେ ମୋର ପ୍ରବଚନ ଚାଲୁଥିଲା । ଦ୍ୱାଦଶ ଅଧ୍ୟାୟରେ ସଗୁଣ ନିର୍ଗୁଣ ଭକ୍ତିର ବର୍ଣ୍ଣନା କରିବାକୁ ଯାଇ ଉପମା ସ୍ୱରୂପ ମୁଁ ଲକ୍ଷ୍ମଣ ଓ ଭରତଙ୍କର ଭକ୍ତିର ଉଲ୍ଲେଖ କରିଥିଲି । ଭରତ ଏବଂ ରାମ ଜଣେ ଅନ୍ୟ ଜଣକ ପ୍ରେମରେ ମିଶି ଯାଇଥିଲେ, ଏହାର ଗୋଟିଏ ଶବ୍ଦ ଚିତ୍ର ସେଠାରେ ଟାଣି ନିଆ ଯାଇଛି । ୧୯୩୮ ସାଲରେ ମୁଁ ପରମଧାମରେ ରହିବା ପାଇଁ ଯାଇଥିଲି । ସେଠାରେ କୋଦାଳ ସାହାଯ୍ୟରେ ପ୍ରତିଦିନ କିଛି ସମୟ ମାଟି ଖୋଳିବାର କାର୍ଯ୍ୟକ୍ରମ ଥିଲା । ଗୋଟିଏ ସ୍ଥାନରେ ମାଟି ଖୋଳିବା ବେଳକୁ ପଥର ଦେହରେ ଚୋଟ ବାଜିଲା । କୋଦାଳ ଦ୍ୱାରା ଖୋଳି ଦେଖାଗଲା ଯେ ପଥରଟି ଲମ୍ବା ଆକାରର ସେତିକି ଜମି ଛାଡ଼ି ଆଗକୁ ଖୋଳିବାକୁ ଲାଗିଲି । ଅନ୍ୟମାନେ ସେଇ ପଥର ଟିକୁ ଖୋଳି ବାହାର କଲେ । ତାପରେ ଦେଖାଗଲା, ଭରତ ଆଉ ରାମଙ୍କର ମିଳନ ଦୃଶ୍ୟ ଖୋଦିତ ହୋଇଥିବା ସୁନ୍ଦର ପଥର । ଯେପରି ଭାବରେ ମୁଁ ଗୀତା ପ୍ରବଚନରେ ଶବ୍ଦ ସାହାଯ୍ୟରେ ଚିତ୍ର ଆଂକିଛି ଏହି ଶୀଳା ଚିତ୍ର ଠିକ୍ ସେହି ପ୍ରକାରର ଥିଲା । ମୁଁ ତାହାକୁ ମୋ ଉପରେ ଭଗବାନଙ୍କର

କରୁଣା ସ୍ୱରୂପ ମନେ କରି ଏହି ମୂର୍ତ୍ତିରେ ନିଜର ଶ୍ରଦ୍ଧା ଭକ୍ତି ସବୁ କିଛି ଏକାଗ୍ର ଭାବରେ ଢ଼ାଳି ଦେଲି । ଅନେକ ସନ୍ଥ ପୁରୁଷଙ୍କ ଜୀବନରେ ଏ ପ୍ରକାର ଭଗବତ ଅନୁଗ୍ରହର କାହାଣୀ ମୁଁ ଶୁଣିଛି । ଏହି ମୂର୍ତ୍ତି ଦର୍ଶନରେ ମୁଁ ଅଭିଭୂତ ହୋଇ ପଡ଼ିଲି ।

## ଖ). ବିଭିନ୍ନ ପ୍ରକାରର ଅନୁଭୂତି ସମୂହ

ପରମଧାମରେ ମନର ଏକ ବିଶେଷ ଅବସ୍ଥାରେ ମୋ ଉପରେ ଜ୍ଞାନେଶ୍ୱର ମହାରାଜଙ୍କର ବିଶେଷ ଅନୁଗ୍ରହ ହୋଇଥିଲା । ପରମ୍ ଧାମରେ ମୋର ତିନି ପ୍ରକାର ପ୍ରାପ୍ତି ମିଳିଥିଲା --

୧. ଶୂନ୍ୟ ଚିତ୍ତର ଅନୁଭବ

୨. ଭରତ ରାମ (ଶିଳା) ପ୍ରାପ୍ତି

୩. ଜ୍ଞାନ ଦେବଙ୍କର ଅନୁଗ୍ରହ ଲାଭ

*** *** ***

ତେଲେଙ୍ଗାନାର (୧୮ ଏପ୍ରିଲ ୧୯୫୧)

ପୋଚମ୍ ପଲ୍ଲୀରେ ହରିଜନମାନେ ଭୂମିଦାନ ପ୍ରାର୍ଥନା କରିଥିଲେ ଏବଂ ଏକଶହ ଏକର ଜମି ଦାନରେ ମିଳିଗଲା । ସେହି ରାତିରେ ତିନି-ଚାରି ଘଣ୍ଟା ପାଇଁ ନିଦ ହୋଇଥିଲା । ଏହା କି ପ୍ରକାର ଘଟଣା ଘଟିଗଲା ? ମୁଁ ଭାବିବାକୁ ଲାଗିଲି । ମୋର ଭଗବାନଙ୍କ ପ୍ରତି ଶ୍ରଦ୍ଧା ଅଛି, ତାପରେ ଦ୍ୱିତୀୟ ସ୍ଥାନରେ ଗଣିତ ଶାସ୍ତ୍ର ଉପରେ ମୋର ବିଶ୍ୱାସ । ଏହାପରେ ମୋର ଗଣିତର ହିସାବ ଚାଲିଲା । ଯଦି ଭାରତର ଭୂମିହୀନମାନଙ୍କ ପାଇଁ ଜମି ମାଗିବାକୁ ହୁଏ ତାହା ହେଲେ ଭୂମିହୀନ ମାନଙ୍କୁ ସନ୍ତୁଷ୍ଟ କରିବା ପାଇଁ ପାଂଚ କୋଟି ଏକର ଭୂମିର ପ୍ରୟୋଜନ । ଏତେଗୁଡ଼ିଏ ଜମି କ'ଣ ମାଗିଲେ ମିଳି ପାରିବ ? ପୁଣି ସିଧାସଳଖ ଈଶ୍ୱରଙ୍କ ସହିତ ଭାବ ବିନିମୟ ହେବାକୁ ଲାଗିଲା । ଏଠାରେ ଠିକ୍ ଯେପରି ମଣିଷ ସହିତ ସାମ୍ନା ସାମ୍ନି କଥାବାର୍ତ୍ତା ହୋଇଥାଏ, ସେହିପରି ଭାବରେ କଥାବାର୍ତ୍ତା ହେଲା । ସେ କହିଲେ ଯଦି ଏତେ ଭୟ ହେଉଛି ବା କୌଣସି ପ୍ରକାର ଆଶଂକା ମନରେ ରହୁଛି ତାହାହେଲେ ଅହିଂସା ଇତ୍ୟାଦି ଉପରେ ତୁମର ଯେଉଁ ବିଶ୍ୱାସ ରହିଛି ତାହାକୁ ଦୂରକୁ ଠେଲି ଦେବାକୁ ହେବ । ସେତେବେଳେ ତୁମର ନିଜର ଅହିଂସା ପ୍ରତି ଥିବା ଦାବିକୁ ଛାଡ଼ି ଦେବାକୁ ହେବ । ସୁତରାଂ ଶ୍ରଦ୍ଧା ରଖ ଏବଂ ଦାନ ମାଗିବା ପାଇଁ ପ୍ରସ୍ତୁତ ହୁଅ ।-ଆଉ ଗୋଟିଏ କଥା ମଧ କହିଲେ, ଯେ ଶିଶୁକୁ କ୍ଷୁଧା ଦେଇଛନ୍ତି, ସେ ହିଁ ମାତୃସ୍ତନରେ କ୍ଷୀର ରଖିବାର ବ୍ୟବସ୍ଥା କରିଛନ୍ତି । ସେ ଅସଂପୂର୍ଣ୍ଣ ପରିକଳ୍ପନା କରନ୍ତି ନାହିଁ । ଏଥର ମୋର ସମାଧାନ ହୋଇଗଲା । ତା ପରଦିନ ଠାରୁ ଦାନ ମାଗିବାକୁ ଆରମ୍ଭ କରିଦେଲି । ତେଲେଙ୍ଗାନାର ଏହି ଉପଲବ୍ଧି ଗୋଟିଏ ପ୍ରକାର ଈଶ୍ୱର ସାକ୍ଷାତକାର ହିଁ ଥିଲା । ମଣିଷ ହୃଦୟରେ ସଦିଚ୍ଛା ସୁପ୍ତ ଭାବରେ ଥାଏ ଏବଂ ତାହାକୁ ଜାଗ୍ରତ କରାଯାଇପାରେ -- ଏ ପ୍ରକାର ଶ୍ରଦ୍ଧା ନେଇ ମୁଁ କାମ ଆରମ୍ଭ କଲି ଏବଂ ଭଗବାନ ତାର ଦର୍ଶନ କରାଇଛନ୍ତି ।

ଭୂଦାନ ଯାତ୍ରା କଥା କହିବି । ୧୯୫୨ ମସିହାରେ ଚାଣ୍ଡିଲ (ବିହାର) ରେ ମ୍ୟାଲିଗ୍‌ନ୍ୟାଣ୍ଟ ମ୍ୟାଲେରିଆରେ ଆକ୍ରାନ୍ତ ହେଲି । ଜ୍ୱର ଖୁବ୍‌ ବେଶୀ ଡ଼ିଗ୍ରୀରେ ଥିଲା । ଏତେ ଦୁର୍ବଳ ହୋଇ ପଡ଼ିଥିଲି ଯେ ମୁଁ ପୁଣି ବଞ୍ଚିବି ଏ ଆଶା କାହାରି ନଥିଲା । ଏ ସମୟରେ ଦୁଇ ଆଡୁ ମୋ ମନରେ ଉତ୍ତମ ପ୍ରସ୍ତୁତି ଥିଲା । ଯଦି ଈଶ୍ୱର ମୋତେ ନେଇଯାଆନ୍ତି, ତେବେ ମୁଁ କହି ପାରନ୍ତି ନାହିଁ ଯେ ମୋ ମନରେ ଦୁଃଖ ହେଉଛି । କିନ୍ତୁ ଯେତେବେଳେ ଦିନେ (୧୭, ଡ଼ିସେମ୍ବର, ୧୯୫୭) ମୁଁ ଆଭାସ ପାଇଲି ଯେ ଏଠାରୁ ଯିବାକୁ ହେବ, ଅଥଚ ମୋର ଜ୍ୱରର ତାପମାତ୍ରା ଖୁବ୍‌ ଅଧିକ ଥିଲା, ସେହି ଦିନ ଲୋକମାନଙ୍କୁ ମୁଁ କହିଲି ଯେ ମୋତେ ଟିକିଏ ବସାଅ । ସେମାନେ ସମସ୍ତେ ମିଶି ମୋତେ ଧରି ବସାଇ ଦେଲେ । ମୁଁ ସାଂଗେ ସାଂଗେ ଚିନ୍ତା ମଗ୍ନ ହେଲି । ମୋର ମନେହୁଏ ମୁଁ ପ୍ରାୟ ପଚିଶ ମିନିଟ ବା ଅଧ ଘଣ୍ଟା ପର୍ଯ୍ୟନ୍ତ ଚିନ୍ତା ମଗ୍ନ ହୋଇ ବସିଥିଲି । ଏତିକିବେଳେ ମୋର ଯେଉଁ ଆନନ୍ଦ ଏବଂ ଦର୍ଶନ ହୋଇଥିଲା, ତାହା ଧ୍ୟାନ ଯୋଗର ବହୁ ଅଭିଜ୍ଞତା ଥିବା ସତ୍ୱେ ବି ପୂର୍ବରୁ କେବେ ହୋଇନାହିଁ । ଏକ ସୀମାହୀନ ଅପାର ଆନନ୍ଦ ଲାଭ କଲି, ମନରେ ଅପାର ଶାନ୍ତି ଆସିଲା । ଏପରି ମନେ ହେଉଥିଲା ଯେ, ମୁଁ ଯେପରି ଈଶ୍ୱରଙ୍କ ପାଖରେ ପହଂଚି ଯାଇଛି । ଯେ ଭାବରେ ତାଙ୍କର ପ୍ରତ୍ୟକ୍ଷ ଦର୍ଶନ ଲାଭ କରିଥିଲି, ଆପଣମାନେ ତାକୁ ଆଭାସ କହି ପାରନ୍ତି, ମିଥ୍ୟା କହିପାରନ୍ତି, ଯା କିଛି କହନ୍ତୁ ନା କାହିଁକି, ଶଂକରାଚାର୍ଯ୍ୟ ତ ଜଗତକୁ ମିଥ୍ୟା କହିଥିଲେ । ଏ ଉପଲବ୍ଧି ଦୁନିଆ ବାହାରର କିଛି ନାହିଁ । ଏଥିପାଇଁ ଆପଣମାନେ ମିଥ୍ୟା କହି ପାରନ୍ତି । ଅଧ ଘଣ୍ଟା ପରେ ମୁଁ ଜାଗି ଉଠିଲି ଏବଂ ମୋର ନୂଆ ଜଗତରୁ ବାହାରି ଆସିଲି । ଶାସ୍ତ୍ରରେ ଯାହାକୁ ନିର୍ବିକଳ୍ପ ସମାଧି କହନ୍ତି ଏହା ସେହି ପ୍ରକାର ଅନୁଭୂତି ଥିଲା । ସେ ଅନୁଭବ ଥିଲା ନିର୍ଗୁଣ ସ୍ୱରୂପର ଅନୁଭବ । ତାହାକୁ ଶବ୍ଦ ସାହାଯ୍ୟରେ (ଭାଷା) ପ୍ରକାଶ କରିବା କଷ୍ଟ ।

ବିହାରରେ ମୁଙ୍ଗେର ଜିଲ୍ଲାରେ ପଦଯାତ୍ରା ଚାଲୁଥିଲା । ଉଲାଓ ଗାମରେ ବିଶ୍ରାମ ସ୍ଥାନ ଥିଲା । ଗୋଟିଏ ଶିବ ମନ୍ଦିର ତଳ ମହଲାରେ ସଭା ହେବାର ଥିଲା । ସାଧାରଣତଃ ଶିବାଳୟ ଅବସ୍ଥାନ ତଳ ମହଲାରେ ହୁଏ । ଏବଂ ଉପରେ ଥାଏ ସଭା ଗୃହ । ଏଠାରେ ଓଲଟା ହୋଇଥିଲା । ସଭାଗୃହ ଥିଲା ତଳେ ଏବଂ ଉପରେ ଥିଲା ଶିବାଳୟ । ସଭାରେ ମୋର ବସିବାର ବ୍ୟବସ୍ଥା ଶିବଲିଂଗଙ୍କର ଠିକ୍‌ ତଳେ ଥିଲା । ସେଠାରେ ବସି ମୁଁ ଉପଲବ୍ଧି କରୁଥିଲି ଯେ ଯେପରି ଭଗବାନ ଶିବ ମୋ ଉପରେ ଆରୂଢ଼ ହୋଇଛନ୍ତି । ଆଉ ମୁଁ ହେଉଛି ନନ୍ଦୀ । ଏଥର ଅଥିରୂଢ଼ ସମାଧି ଯୋଗର ନୂତନ ଅର୍ଥ ମୋର ଚିନ୍ତା ମଧ୍ୟରେ ଆସିଲା । ସେ ପର୍ଯ୍ୟନ୍ତ ମୁଁ ତାର ଅର୍ଥ କରୁଥିଲି ଯୋଗାରୂଢ଼, ଯୋଗ ଉପରେ ଅଧିଷ୍ଠିତ । କିନ୍ତୁ ବର୍ତ୍ତମାନ ତାର ଅର୍ଥ ହେଲା ଯେ ଯୋଗ ଯାହା ଉପରେ ଆରୂଢ଼ ହୋଇଛନ୍ତି । ଯେ ଯୋଗର ବାହାନ ହୋଇଛନ୍ତି । ଏଠାରେ ସଗୁଣର ସ୍ପର୍ଶ ଥିଲା ।

ବିହାର ଯାତ୍ରା ବେଳେ ବୈଦ୍ୟନାଥଧାମ ଯାଇଥିଲି । ସେଠାରେ କେତେଜଣ ମିତ୍ର ମୋତେ କହିଲେ, ଆପଣ ହରିଜନମାନଙ୍କୁ ସାଂଗରେ ନେଇ ମନ୍ଦିର ପ୍ରବେଶ କରନ୍ତୁ । ମୁଁ କହିଲି ମନ୍ଦିରର ମାଲିକ ଯଦି ଅନୁମତି ଦେବେ ତେବେ ଯିବି । ମନ୍ଦିର ଦେବତାଙ୍କ ପ୍ରତି ଭକ୍ତି ଓ ଦେବ ପୂଜାରେ ମୋର ଶ୍ରଦ୍ଧା ଅଛି । କିନ୍ତୁ ତା ସତ୍ତ୍ୱେବି ସର୍ବତ୍ର ପରମେଶ୍ୱର ଦର୍ଶନ କରିବାରେ ମୋର ଅଭ୍ୟାସ ଅଛି । ସେଥିପାଇଁ ସେଠାକାର ଲୋକମାନଙ୍କର ସମ୍ମତି ନ ନେଇ ମନ୍ଦିରକୁ ଯିବା

ସଂଭବ ନଥିଲା । ସେମାନେ ମୋତେ କହିଲେ, ଆପଣ ଆସି ପାରନ୍ତି । ସେହି ଅନୁସାରେ ମୁଁ ସଂଗୀ ମାନଙ୍କୁ ନେଇ ମନ୍ଦିର ଦର୍ଶନ ପାଇଁ ଯାଇଥିଲି । ମୋର ସାଥୀମାନଙ୍କ ମଧ୍ୟରେ କେତେଜଣ ହରିଜନ ଥିଲେ । ସେଠାରେ ପହଂଚିବା ମାତ୍ରେ ସେଠାକାର ଲୋକମାନେ ପାଟିକରି ମୋତେ ମାରିବାକୁ ଆରମ୍ଭ କଲେ । ପାଂଚ ଛଅ ମିନିଟ ପର୍ଯ୍ୟନ୍ତ ମୋତେ ସେମାନେ ପିଟିଲେ । ସବୁ ଯାକ ପ୍ରହାର ମୋ ଉପରେ ପଡ଼ିଲା । କେବଳ ମୋ ଉପରେ । କିନ୍ତୁ ମୋର ଅନ୍ୟ ସବୁ ସାଥୀମାନେ ଏହି ପ୍ରହାରକୁ ଶାନ୍ତିପୂର୍ଣ୍ଣ ଭାବରେ ସହ୍ୟ କରି ନେଲେ । ଶେଷ ପର୍ଯ୍ୟନ୍ତ ପରମେଶ୍ୱର ଅଳ୍ପ ବହୁତ ପ୍ରସାଦ କାହାକୁ ନ ଦେଇ ଛାଡ଼ିବେ କିପରି ? ଜଣକର ପ୍ରହାର ମୋର ବାମ କାନରେ ବାଜିଲା । ପ୍ରଥମରୁ କାନ ଦୁର୍ବଳ ଥିଲା । ଏହି ଆଘାତ ଫଳରେ କାନ ଭିତରେ ଏକ ପ୍ରକାର ଶବ୍ଦ ଆରମ୍ଭ ହେଲା । ଚାରି ପାଂଚ ଦିନ ପର୍ଯ୍ୟନ୍ତ ନାକ ଏବଂ କାନରେ ସେହି ଶବ୍ଦ ଚାଲିଲା । ମୁଁ କୌଣସି ଚିକିତ୍ସା କରାଇ ନାହିଁ । ଭାବିଲି ଏହା ପରମେଶ୍ୱରଙ୍କ ପ୍ରହାର । ଏଥିରେ ଔଷଧର କୌଣସି କାମ ନାହିଁ । ତାପରେ ମୁଁ ଯେତେବେଳେ ମୋ ପଦ୍ମା ଶୁଣାକୁ ଫେରି ଆସିଲି, ସେତେବେଳେ ଏତେ ଆନନ୍ଦ ଭିତରେ ଥିଲି ଯେ ଆପଣମାନଙ୍କୁ ତାହା ବୁଝାଇ ପାରିବି ନାହିଁ । ତାହା ଅନିର୍ବଚନୀୟ ଆନନ୍ଦ ଥିଲା । ଈଶ୍ୱର ଦର୍ଶନ ପାଇଁ ମୁଁ ମନ୍ଦିରକୁ ଯାଇଥିଲି । କିନ୍ତୁ ଈଶ୍ୱରଙ୍କର ସ୍ପର୍ଶ ପାଇଲି । ଏହିପରି ଭକ୍ତି ଓ ପ୍ରେମ ପାଇଁ ଏହି ପ୍ରହାର ମୋ ନିକଟରେ ପ୍ରୀତିକର ହୋଇଥିଲା ।

୨୨ ଅଗଷ୍ଟ ୧୯୫୭ । କର୍ଣ୍ଣାଟକରେ ପ୍ରବେଶ କରିବାର ଦୁଇ ଦିନ ପୂର୍ବର କଥା । ମୁଁ ରାତିରେ ମଶାରୀ ଭିତରେ ଶୋଇଥିଲି । ବିଛା କାମୁଡ଼ିଲା ପରି ମନେ ହେଲା । ମୁଁ ବାହାରକୁ ଚାଲି ଆସିଲି । ବିଛଣା ଝାଡ଼ିଲାରୁ ଗୋଟିଏ ଅତ୍ୟନ୍ତ ବିଷାକ୍ତ ବିଛା ବାହାରି ଆସିଲା । ଖୁବ୍ ବିନ୍ଧିଲା । ଯନ୍ତ୍ରଣା ହେଲା । ଏତେ ଯନ୍ତ୍ରଣା ଯେ କୌଣସି ଗୋଟିଏ ଜାଗାରେ ବସି ପାରୁ ନଥାଏ । ଏଠି ସେଠି କେବଳ ବୁଲିବାକୁ ଲାଗିଲି । ଅସହ୍ୟ ଯନ୍ତ୍ରଣା ହେଉଥିଲା । ଏହି ଅବସ୍ଥାରେ ପାଂଚ ଘଣ୍ଟା କଟିଗଲା । ଶେଷରେ ବିଛଣାରେ ଶୋଇ ପଡ଼ିଲି । ଆଖିରୁ ଝର ଝର ହୋଇ ପାଣି ଗଡ଼ିବାକୁ ଲାଗିଲା । ବଲ୍ଲଭଙ୍କର (ଅନ୍ତରଙ୍ଗ ସାଥୀ ବଲ୍ଲଭ ସ୍ୱାମୀ) ଦୁଃଖ ହେଲା - ଯନ୍ତ୍ରଣାରେ ଆଖିରୁ ପାଣି ଗଡ଼ୁଛି । ମୁଁ କହିଲି, ମୋର କୌଣସି କଷ୍ଟ ନାହିଁ, ତୁମେ ସବୁ ଶୋଇବାକୁ ଯାଅ । ମୁଁ ମନେ ମନେ କହୁଥିଲି --

ନାନ୍ୟ ସ୍ପୃହା ରଘୁପତେ ହୃଦୟେ ମଦୀୟେ,
ସତ୍ୟଂ ବଦାମି ଚ ଭବାନ୍ ଅଖିଳାନ୍ତରାତ୍ମା ।
ଭକ୍ତିଂ ପ୍ରଯଚ୍ଛ ରଘୁପୁଂଗବ ନିର୍ଭରାଂମେ,
କାମାଦି-ଦୋଷ-ରହିତଂ କୁରୁ ମାନସଂ ଚ ॥

କିନ୍ତୁ ଦୁଃଖ ଦୂର ହେଉ, ଏହି ଇଚ୍ଛା ତ ଥିଲା । ସତ୍ୟଂ ବଦାମି ଏ କଥା ମୁହଁରେ ଉଚ୍ଚାରଣ କରୁଥିଲି । କିନ୍ତୁ ତାହା 'ମିଛ କହୁଛି' ହିଁ ଥିଲା । ତାହା ଅହଂକାର ଥିଲା । ମୁଁ ମନେ ମନେ ଜୋର କରି କହୁଥିଲି -- କେତେ କ୍ଷଣ ପର୍ଯ୍ୟନ୍ତ ଆଉ କଷ୍ଟ ଦେବ ? ସଂଗେ ସଂଗେ ମୋର ଯନ୍ତ୍ରଣା ସଂପୂର୍ଣ୍ଣ ଦୂର ହୋଇଗଲା । ମୋର ଆଲିଙ୍ଗନର ଉପଲବ୍ଧି ହେଲା । ମୋର ନୟନ ଯୁଗଳରୁ

ଅଶ୍ରୁଧାରା ବହିବାକୁ ଲାଗିଲା । ମୁଁ ଶୋଇ ପଡ଼ିଲି ଏବଂ ଦୁଇ ମିନିଟ ମଧ୍ୟରେ ମୋତେ ନିଦ ଆସିଗଲା । ଏହା ସଗୁଣର ଉପଲବ୍ଧି ଥିଲା ।

ମହାରାଷ୍ଟ୍ରରେ ପଦଯାତ୍ରା ବେଳେ ମୁଁ ପଣ୍ଢରପୁରଠାରେ ପହଂଚିଲି । ସେଠାରେ ବିଠୋବା ମନ୍ଦିରର କର୍ମକର୍ତ୍ତାମାନେ ମନ୍ଦିର ଦର୍ଶନ ଯିବା ପାଇଁ ମୋତେ ନିମନ୍ତ୍ରଣ କରିଥିଲେ । ମୋ ସହିତ ନାନା ଧର୍ମର ଓ ନାନା ଜାତିର ଲୋକ ଥିଲେ । ସେମାନଙ୍କୁ ନେଇ ମୁଁ ବିଠୋବାଙ୍କ ଦର୍ଶନ କଲି । (୨୯ - ୪- ୫୮) ସେ ଦିନ ସେଠାରେ ଯେଉଁ ଦୃଶ୍ୟ ଦେଖିଲି, ତାହା ସାରା ଜୀବନରେ ମଧ୍ୟ ଭୁଲି ପାରିବି ନାହିଁ । ତାର ଅତି ଗଭୀର ଛାପ ମୋ ହୃଦୟରେ ଅଙ୍କିତ ହୋଇ ଯାଇଛି । ବିଠୋବାଙ୍କ ଚରଣ ଯୁଗଳ ନିକଟରେ ମୁଁ ଠିଆ ହୋଇଥିଲି, ସେହି ସମୟରେ ମୋର ଯେଉଁ ଅନୁଭବ ହୋଇଥିଲା, ତାହା ଭାଷାରେ ବର୍ଣ୍ଣନା କରିବା କଷ୍ଟକର । ମୋର ନୟନ ଯୁଗଳରୁ ପ୍ରାୟ ଏକ ଘଣ୍ଟା ପର୍ଯ୍ୟନ୍ତ ଅଶ୍ରୁଧାରା ବହିବାକୁ ଲାଗିଲା । ମୁଁ ଏହି ମୂର୍ତ୍ତି ଦେଖିଲି, ସେଠାରେ ମୋର ଆଖିରେ କୌଣସି ପଥର ଦୃଷ୍ଟିରେ ପଡ଼ିଲା ନାହିଁ । ସେଠାରେ ମୁଁ ସାକ୍ଷାତ ଭଗବାନଙ୍କ ରୂପର ପ୍ରକାଶ ଦେଖିଲି । ଯେତେବେଳେ ସେଠାକୁ ଯିବାକୁ ଆରମ୍ଭ କରିଥିଲି ସେତେବେଳେ କେଉଁମାନଙ୍କୁ ସାଥୀ କରି ନେଇ ଯାଇଥିଲି ? ସେମାନେ ହେଲେ ରାମାନୁଜ, ନମ୍ମଲଓ୍ୱାର, ଜ୍ଞାନ ଦେବ, ଚୈତନ୍ୟ ମହାପ୍ରଭୁ, କବୀର, ତୁଳସୀ ଦାସ, ବାଲ୍ୟକାଳରୁ ଯାହାଙ୍କ ସହିତ ସମୟ ବିତାଇଲି ସେମାନେ ସମସ୍ତେ ମୋର ମନେ ପଡୁଥିଲେ । ଦର୍ଶନ ପରେ ଏହି ମୂର୍ତ୍ତିଙ୍କ ସମ୍ମୁଖରେ ଯେତେବେଳେ ମୁଣ୍ଡ ନୁଆଁଇଲି ସେତେବେଳେ ମୋ ମାଙ୍କୁ ସେଠାରେ ଦେଖିବାକୁ ପାଇଲି । ମୁଁ ସେଠାରେ କାହାକୁ ନ ଦେଖିଛି ? ଯେଉଁ ସବୁ ମଣିଷ ମାନେ ମୋର ପ୍ରିୟ ସେମାନେ ସମସ୍ତେ ମୋତେ ସେଠାରେ ଦେଖା ଦେଲେ । ସେମାନଙ୍କୁ ସମସ୍ତଙ୍କୁ ମୁଁ ସେଠାରେ ପରମ ତୃପ୍ତିର ସହିତ ଦେଖିଛି ।

ଏହାପରେ ଚମ୍ବଲ୍ ଉପତ୍ୟକାରେ ଯା କିଛି ଘଟିଛି (ବିଦ୍ରୋହୀ ଡ଼କାୟତ ମାନଙ୍କର ଆତ୍ମ ସମର୍ପଣ) ତାହା ଈଶ୍ୱରଙ୍କ କୃପାରୁ ହୋଇଛି । ତାର ଷୋଳ ଅଣା ଶ୍ରେୟ ଈଶ୍ୱରଙ୍କର ପ୍ରାପ୍ୟ । ତାହାକୁ ଅହିଂସାର ପ୍ରତ୍ୟକ୍ଷ ଦୃଷ୍ଟାନ୍ତ ମନେ କରାଯାଏ । ମୋର ଏ ପ୍ରକାର ସାମୂହିକ ସାକ୍ଷାତକାର ତିନିଥର ହୋଇଛି । ପ୍ରଥମ ହୋଇଛି ତେଲେଙ୍ଗାନାର ପୋଚମ୍ପଲ୍ଲୀରେ, ଦ୍ୱିତୀୟଥର ବିହାରର ବୈଦ୍ୟନାଥ ଧାମରେ ଏବଂ ତୃତୀୟଥର ଚମ୍ବଲ୍‌ରେ ।

କେହି ମୋତେ ପ୍ରଶ୍ନ କରିଥିଲେ -- ସମ୍ମୁଖରେ ଗୋଟିଏ ପ୍ରଦୀପ ଅଛି ଏକଥା ଯେତେ ଦୃଢ଼ତାର ସହିତ ଆପଣ କହିପାରିବେ, ସେତେ ନିଶ୍ଚୟତାର ସହିତ କ'ଣ ଆପଣ ଈଶ୍ୱରଙ୍କର ଅସ୍ତିତ୍ୱକୁ ମାନି ନେଇ ପାରିବେ ? ମୁଁ ଏହାର ଉତ୍ତରରେ କହିଥିଲି -- ପରମେଶ୍ୱରଙ୍କ ଅସ୍ତିତ୍ୱ ସଂପର୍କରେ ମୁଁ ତ ନିଶ୍ଚିତ । ବରଂ ଏହି ବ୍ୟାପାରରେ ମୁଁ ନିଶ୍ଚିତ ନୁହେଁ ଯେ, ସମ୍ମୁଖରେ ରଖାଯାଇଥିବାର ପ୍ରଦୀପଟିର ଅସ୍ତିତ୍ୱ ଅଛି କି ନାହିଁ । ଏହି ପ୍ରଦୀପଟିର ଅସ୍ତିତ୍ୱ ସଂପର୍କରେ କୌଣସି ଗ୍ୟାରେଣ୍ଟି ମୋ ପକ୍ଷରେ ଦେବା ସଂଭବ ନୁହେଁ । ଈଶ୍ୱର ସାକ୍ଷାତକାରର ପ୍ରତ୍ୟକ୍ଷାନୁଭୂତି ମୋର ତ ଅନେକ ଥର ହୋଇଛି । କିଛିଟା ଶ୍ରଦ୍ଧାବଶତଃ ଏପରି ହୋଇଥାଇ ପାରେ । ଯେପରି

ଆତ୍ମାୟମାନଙ୍କ ସହିତ ମିଳିତ ହୋଇଛି । କିଛିଟା ବହି ପତ୍ରରେ ବିଶ୍ୱାସ ଅଛି ସେ କାରଣରୁ ମଧ୍ୟ ହୋଇପାରେ । କିନ୍ତୁ ସେସବୁ ଉପରେ ମୋର ଶ୍ରଦ୍ଧା ନିର୍ଭର ଶୀଳ ନୁହେଁ. ବରଂ ସମ୍ମୁଖରେ ଈଶ୍ୱର ରହିଛନ୍ତି ତାହା ଆଖିରେ ଦେଖାଯାଏ । ତା ଛଡ଼ା ଯେଉଁ ସବୁ ବିଭିନ୍ନ ଶ୍ରେଣୀର ପ୍ରାଣୀ, ଜୀବ, ମଣିଷ ସମ୍ମୁଖରେ ଦଣ୍ଡାୟମାନ, ଏ ସବୁ ଯାକ ଈଶ୍ୱରଙ୍କର ବହୁ ପ୍ରକାର ସଂକଳ୍ପର ପ୍ରକାଶ ।

ମୁଁ କେବେ କେବେ କହିଥାଏ, ବାପୁଙ୍କ ସହିତ ମୋର କଥାବାର୍ତ୍ତା ହୁଏ । ଯେତେବେଳେ ସେ ବଞ୍ଚିଥିଲେ ସେତେବେଳେ ତାଙ୍କ ସହିତ ଦେଖା କରିବା ପାଇଁ ପାଂଚ ମାଇଲ ବାଟ ମୋତେ ଚାଲି ଯିବାକୁ ହୁଏ । ଦୁଇଘଣ୍ଟା ଲାଗୁଥିଲା । କଷ୍ଟ ହେଉଥିଲା । ବର୍ତ୍ତମାନ ଆଖି ବନ୍ଦ କଲାମାତ୍ରେ ଗୋଟେ ସେକେଣ୍ଡ ମଧ୍ୟରେ ସାକ୍ଷାତକାର ହୋଇଯାଏ । ପ୍ରଶ୍ନ ପଚାରିଲେ ଉତ୍ତର ମିଳିଯାଏ । କୌଣସି ପ୍ରକାର ଅସୁବିଧା ନାହିଁ । ସେତେବେଳେ ଦେହର ବନ୍ଧନ ଥିଲା । ବର୍ତ୍ତମାନ ସେ ମୁକ୍ତ, ବନ୍ଧନହୀନ । ମୁଁ ବର୍ତ୍ତମାନ ପର୍ଯ୍ୟନ୍ତ ବନ୍ଧନରେ ଆବଦ୍ଧ । କିନ୍ତୁ ଯେତେ ଦିନ ପର୍ଯ୍ୟନ୍ତ ଦେହ ଧରି ଅଛି, ତାଙ୍କ ଠାରୁ ପ୍ରେରଣା ମିଳୁଥିବା ମଧ୍ୟରେ ଅନେକ ପ୍ରାଚୀନ ପୁରୁଷଙ୍କର ଯୋଗାଯୋଗ ରହିଥାଏ, ସେ ପ୍ରକାରର କିଛି ବ୍ୟାପକ ସାକ୍ଷାତକାର ମଧ୍ୟ ହୋଇଥାଏ । ପ୍ରାଚୀନ ପୁରୁଷମାନଙ୍କର କଣ୍ଠସ୍ୱର ଆମର ବାୟୁମଣ୍ଡଳରେ ମିଶି ରହିଛି, ଚାରିଆଡ଼େ ପରିପୂର୍ଣ୍ଣ ହୋଇ ରହିଛି । ଯେଉଁ ବ୍ୟକ୍ତି ତାହା ଗ୍ରହଣ କରିବା କ୍ଷମତାର ଅଧିକାରୀ ହେବ, ତାହାକୁ ଏହି ସବୁ ଧ୍ୱନି ସ୍ପର୍ଶ କରିବ ।

ଏ କଥା ମଧ୍ୟ ମୁଁ ଅନେକ ଥର କହିଛି ଯେ. ମୁଁ ଯାତ୍ରା ଆରମ୍ଭ କରୁଛି, ତ ମୋ ଆଗରେ ରାମ ଚାଲୁଛନ୍ତି, ପଞ୍ଚ ପାଣ୍ଡବ ଚାଲୁଛନ୍ତି, ବୁଦ୍ଧ, ମହାବୀର, ଶଂକର, ରାମାନୁଜ, କବୀର, ନାମ ଦେବ — ସମସ୍ତେ ଯାଉଛନ୍ତି । ତାହାଙ୍କ ପଛେ ପଛେ ମୁଁ ଯାଉଛି — ସେମାନଙ୍କ ସାଂଗରେ । ବାବା (ବିନୋବା) ଏକା ନୁହନ୍ତି । ମୁହୂର୍ତ୍ତକ ପାଇଁ କେବେ ବି ଏକାକୀତ୍ୱ ଅନୁଭବ ହୁଏ ନାହିଁ । ନିରନ୍ତର ଏହା ଅନୁଭବ ହୁଏ ଯେ ସେମାନେ ସାଥିରେ ଅଛନ୍ତି ।

ତୁଫାନ୍ ଯାତ୍ରା ସମୟର କଥା । ବେତିୟା (ବିହାର) ଗ୍ରାମ ଥିଲା ଆମର ବିଶ୍ରାମ ସ୍ଥଳ । ଦିନେ ରାତିରେ ସ୍ୱପ୍ନ ଦେଖିଲି, ଜଣେ ସାତ୍ତ୍ୱିକ୍ ଭାବାପନ୍ନ ବିଶିଷ୍ଟ ବ୍ୟକ୍ତି ମୋ ସମ୍ମୁଖରେ ବସି କଥାବାର୍ତ୍ତା କହୁଛନ୍ତି । ବିନୟାଞ୍ଜଳି ଉପରେ ଆଲୋଚନା ହେଉଥିଲା । ସେ ଦୁଇଟି ଭଜନର ଅର୍ଥ ପଚାରିଲେ । କିଛିଟା ସଂଶୟାତ୍ମକ ବିଷୟରେ ପ୍ରଶ୍ନ ପଚାରିଲେ । ମୁଁ ବୁଝି ପାରୁଥିଲି । ସେ ଏକାଗ୍ରତା ସହକାରେ ଶୁଣୁଥିଲେ, ଆଉ ସମ୍ମତି ସୂଚକ ମୁଣ୍ଡ ହଲାଉଥିଲେ । କିଛି କ୍ଷଣ ପରେ ମୋ ମନକୁ ଆସିଲା ଯେ ସେ ମୋ ସହିତ କଁଥା କହୁଥିଲେ, ସେ ତ ସାକ୍ଷାତ ତୁଳସୀ ଦାସ, ତାପରେ ମୋର ନିଦ ଭାଂଗି ଗଲା । ମୁଁ ଭାବିବାକୁ ଲାଗିଲି, ଏ କ'ଣ ହେଲା ? ତାପରେ ମନେ ହେଲା ଆଜି ତୁଳସୀ ଦାସଙ୍କର ଜନ୍ମ ଦିନ । ପ୍ରତ୍ୟେକ ବର୍ଷ ତୁଳସୀ ଜୟନ୍ତୀ ଦିନ ମୁଁ ତୁଳସୀ ରାମାୟଣ ଓ ବିନୟ-ପତ୍ରିକା ଦେଖିଥାଏ ଏବଂ ତୁଳସୀ ଦାସଙ୍କୁ ସ୍ମରଣ କରିଥାଏ । କିନ୍ତୁ ସେ ଦିନ ତୁଳସୀ ଜୟନ୍ତୀ ବିଷୟ ମୋର ମନେ ନଥିଲା । ସେଥି ପାଇଁ ତୁଳସୀ ଦାସ ସ୍ୱୟଂ ଆସି ମୋ ସହିତ କଥା କହିଗଲେ । ସେ ଦିନ ସେ ସବୁ ଭଜନର ନୂଆ ଅର୍ଥ ମୋ ନିକଟରେ ପ୍ରକାଶିତ ହେଲା ।

ଥରେ ଗୋଟିଏ ପ୍ରଶ୍ନ ପଚାରିବା ବେଳେ ମୁଁ ଜ୍ଞାନେଶ୍ୱରୀରୁ ଗୋଟିଏ ମରାଠୀ ଶ୍ଳୋକ (ଓବୀ) ନେଇ ବିଶେଷ ଭାବରେ ବିଶ୍ଳେଷଣ କରୁଥିଲି । ସେହି ରାତିରେ ଶୋଇବା ପରେ ମୋ ସହିତ ଜ୍ଞାନଦେବ ମହାରାଜଙ୍କର କଥାବାର୍ତ୍ତା ହେଲା । ଜ୍ଞାନଦେବ ମହାରାଜ କହିଲେ, 'ବିନ୍ୟା' ଏ କଥା ତୁ ଠିକ୍ ବୁଝିଛୁରେ, 'ବୋଲା ବୁଦ୍ଧିଚୀ ଅଟକ' ଏଇ କଥା ମୁଁ ଯାହା କହିଛି, ତାହା 'ଯତୋ ବାଚୋ ନିବର୍ତ୍ତନ୍ତେ ଅପ୍ରାପ୍ୟ ମନସା ସହ' ଏହି ଉପନିଷଦର ଶ୍ଳୋକ ଉପରେ କହିଛି ଏବଂ ସେଠାରେ 'ବାଚା ମନସ' ଏହା ପରିବର୍ତ୍ତରେ 'ବୋଲା ବୁଦ୍ଧି' ଶବ୍ଦର ବ୍ୟବହାର କରିଛି, କିନ୍ତୁ ସେ କଥା କହିବା ସହଜ ହୋଇଛି ଏହା କୁହାଯାଇ ନ ପାରେ । ଉପନିଷଦର 'ମନସ୍' ମଧ୍ୟରେ ବୁଦ୍ଧି ଅନ୍ତଃସ୍ଥିତ ଭାବ ମାନି ନେବା ପ୍ରୟୋଜନ ଏକଥା କୁହାଯାଇଛି ଏବଂ ଜ୍ଞାନେଶ୍ୱରୀରେ ବୁଦ୍ଧି ମଧ୍ୟରେ 'ମନସ୍'ର ଅନ୍ତଃସ୍ଥ ଭାବ ମାନିବା ଉଚିତ ସେଥିପାଇଁ କୁହାଯାଇଛି । କିନ୍ତୁ ମୁଁ କାହିଁକି ବୁଦ୍ଧିର ଶବ୍ଦର ପ୍ରୟୋଗ କଲି, ତାହା ହେଲା ଉପନିଷଦରେ 'ମନସ୍' କହିଲେ ଯାହା ବୁଝାଏ, ତାପର ଠାରୁ ତୁ ଚିନ୍ତା କରିଯା, ତା ହେଲେ ଧ୍ୟାନ ଚକ୍ଷୁରେ ଦେଖି ପାରିବୁ' । ଏ ପ୍ରକାରରେ କଥାବାର୍ତ୍ତା ହେଲା ।

ମୂର୍ତ୍ତି ଦେଖିବାରେ ମୋର ଶ୍ରଦ୍ଧା ରହିଛି । ମୋର କେତେ ମିତ୍ର ଅଛନ୍ତି ଯେଉଁମାନେ କହନ୍ତି, ଏହା କ'ଣ ଯେ ମୂର୍ତ୍ତିରେ ତୁମର ଶ୍ରଦ୍ଧା ଅଛି ? ଏହା କି ପ୍ରକାର କଥା, କେବଳ ମାତ୍ର ବୋକାମୀ । ମୁଁ କହେ, ମୋର ଏହି ବୋକାମୀ ଯିବାର ନୁହେଁ । ମୋ କ୍ଷେତ୍ରରେ ଏହି ବୋକାମୀ ଭଲ ମଣିଷପଣିଆ ଅଟେ । ମୂର୍ତ୍ତିର ଦର୍ଶନ ହେଲେ ମୋର ଆଖି ଛଳ ଛଳ ହୋଇଯାଏ । ନାମଦେବଙ୍କ ସହିତ ମୂର୍ତ୍ତି ଯେପରି ଭାବରେ କଥା କହୁଥିଲେ, ସେହି ପ୍ରକାର ମୋ ସହିତ ମଧ୍ୟ କହନ୍ତି । ମୋର ଏ ପ୍ରକାର ଅନୁଭୂତି ପ୍ରାପ୍ତ ହୋଇଥାଏ ।

ଲୋକମାନେ ପ୍ରଶ୍ନ କରନ୍ତି, ଆପଣ କ'ଣ ଭଗବାନଙ୍କୁ ଦର୍ଶନ କରିଛନ୍ତି ? ମୁଁ କହେ, ଆଜ୍ଞା, ହଁ । କେବଳ ଦର୍ଶନ ନୁହେଁ, ଭଗବାନଙ୍କ ସହିତ କଥାବାର୍ତ୍ତା ମଧ୍ୟ କରିଥାଏ । ମୋ ସମ୍ମୁଖରେ ଏ ସବୁ କାହାର ଦର୍ଶନ ? ଏମାନେ ସମସ୍ତେ ଭଗବାନ । ପଦଯାତ୍ରା ସମୟରେ ମୁଁ ଏହି ପ୍ରକାର ଦର୍ଶନ କରିଥିଲି । ସହସ୍ରଶୀର୍ଷଃ, ସହସ୍ରପାଦଃ । ଯାହାଙ୍କ ସହିତ କଥା କୁହେ ସେମାନେ ଭଗବାନ । ଏଠାରେ ପରମଧାମରେ ମାଟି ମଧ୍ୟରୁ କେତେ ମୂର୍ତ୍ତି ବାହାରିଛି, ସେ ଗୁଡ଼ିକ ସବୁ ମଧ୍ୟ ଭଗବାନ, ସମ୍ମୁଖରେ ଏହି ସବୁ ଗଛ ଏ ଗୁଡ଼ିକ ମଧ୍ୟ ଭଗବାନ ।

ପରମାତ୍ମାଙ୍କ ସ୍ମରଣ ମଧ୍ୟରେ ବିସ୍ମୃତି ନାହିଁ । ବହୁ ବର୍ଷରୁ ଏହି କଥା ମନରେ ଅଛି ଯେ ଈଶ୍ୱର ମୋ ସହିତ ଅଛନ୍ତି । ଏହା କୌଣସି ଇତିହାସ ବା ଭୂଗୋଳର ବିଷୟବସ୍ତୁର ସ୍ମରଣ ନୁହେଁ । ଏହାକୁ ଜ୍ଞାନ ମଧ୍ୟ କୁହାଯିବ ନାହିଁ, ଏହା ତ ଈଶ୍ୱରଙ୍କର ଅନୁଭୂତି । ଏହାକୁ ଅଭ୍ୟାସ କୁହାଯାଇଛି ।

'ଅଭ୍ୟାସ'ର ଅର୍ଥ କ'ଣ ? ସର୍ବତ୍ର ଏକା ପରାମାତ୍ମା ବିରାଜ କରୁଛନ୍ତି । ଏହି ମାତ୍ର ଅନୁଭବ ।

*****



ଜନ୍ମ : ୧୮.୦୪.୧୯୩୪

ସମାଜ ସେବାରେ ସମର୍ପିତା **ଶାନ୍ତି ଦେବୀ** ହେଉଛନ୍ତି ବିଶିଷ୍ଟ ସର୍ବୋଦୟ ନେତା ତଥା ସମାଜସେବୀ ଶ୍ରୀ ରତନ ଦାସଙ୍କ ପତ୍ନୀ । ଆଦିବାସୀ ଅଧ୍ୟୁଷିତ କୋରାପୁଟ ହେଉଛି ତାଙ୍କର ସେବା-ସାଧନାର ପୀଠ । ୧୯୫୧ ରେ ବିବାହିତ ଜୀବନ ଆରମ୍ଭ କରିବା ପରେ, ସ୍ୱାମୀଙ୍କ ସହ କୋରାପୁଟ ଆସନ୍ତି ଏବଂ ୧୯୫୩ ରେ ସେଠାରେ ଶିଶୁକଲ୍ୟାଣ, ତଥା କୁଷ୍ଠରୋଗୀଙ୍କ ଚିକିତ୍ସାରେ ନିଜକୁ ନିୟୋଜିତ କରନ୍ତି । ୧୯୫୫ ରେ ଆଚାର୍ଯ୍ୟ ବିନୋବାଙ୍କ ଭୂଦାନ ସର୍ବୋଦୟ ଆନ୍ଦୋଳନରେ ଯୋଗ ଦେଇ ତାଙ୍କ ସହିତ ପଦଯାତ୍ରାରେ ସାମିଲ୍ ହେଲେ । ତା'ପରେ ଆଦିବାସୀଙ୍କ କଲ୍ୟାଣ ଏବଂ ଅନାଥ ବାଳିକା, ଅସହାୟା ମହିଳାଙ୍କ ଉନ୍ନତି ପାଇଁ ଉତ୍କଳ ନବଜୀବନ ମଣ୍ଡଳରେ ଯୋଗଦେଇ ତା'ର ଯୁଗ୍ମ ସଂପାଦକ ଭାବରେ କାର୍ଯ୍ୟ କରନ୍ତି । ୧୯୬୪ ରେ ରାୟଗଡ଼ାରେ ପ୍ରତିଷ୍ଠା କରନ୍ତି 'ସେବା ସମାଜ' । ୧୯୭୦ ରେ ଖଦୀ ଗ୍ରାମୋଦ୍ୟୋଗ ବିଦ୍ୟାଳୟ ଗୋପାଳ ୱାଡ଼ିରେ ଅଧ୍ୟାପିକା ଭାବରେ କାର୍ଯ୍ୟ କରନ୍ତି ଏବଂ ପରେ ଓଡ଼ିଶା ଭୂଦାନ ଯଜ୍ଞ ସମିତିର ସଂପାଦିକା ତଥା ରାଜ୍ୟ ସମାଜ କଲ୍ୟାଣ ଉପଦେଷ୍ଟା ପରିଷଦର ସଭ୍ୟା ଭାବରେ ମଧ୍ୟ ଦାୟିତ୍ୱ ନିର୍ବାହ କରନ୍ତି । ୧୯୭୫ ରେ ଓଡ଼ିଶା ନିଶାନିବାରଣ କଂଗ୍ରେସରେ ହୁଅନ୍ତି ସଭାପତି । ୧୯୮୦ ରେ ଖଦୀ ଗ୍ରାମ୍ୟଶିଳ୍ପ କମିଶନରେ ସାର୍ଟିଫିକେସନ୍ କମିଟିର ସଦସ୍ୟା ଭାବରେ କାର୍ଯ୍ୟଭାର ଗ୍ରହଣ କରନ୍ତି । ଏବଂ ଜବରଗୁଡ଼ାରେ ଅନାଥାଶ୍ରମ ପ୍ରତିଷ୍ଠା ସାଙ୍ଗକୁ ଗୁଣପୁରରେ ଧନ୍ଦାମୂଳକ ପୁନର୍ବସତି, ତାଲିମ୍ କେନ୍ଦ୍ର ମଧ୍ୟ ପ୍ରତିଷ୍ଠା କରନ୍ତି । ୧୯୯୦ ରେ ଗୁଣପୁର କଲେଜ ପରିଚାଳନା ସମିତିର ସଭ୍ୟା ଭାବରେ ଏବଂ କୋରାପୁଟ ତଥା ଗଞ୍ଜାମ ଜିଲ୍ଲାର 'ଜୁଭେନାଇଲ୍ କୋର୍ଟର' ସମ୍ମାନନୀୟ ବିଚାରପତି ଭାବରେ ମଧ୍ୟ କାର୍ଯ୍ୟ କରନ୍ତି । ୧୯୯୧ ରେ ଶିଶୁ ତଥା ମହିଳାଙ୍କ କଲ୍ୟାଣ ପାଇଁ **ରାଷ୍ଟ୍ରୀୟ ପୁରସ୍କାର** ଏବଂ ୧୯୯୪ ରେ ଯମୁନାଲାଲ ବାଜାଜ୍ ପୁରସ୍କାର ଲାଭର ଗୌରବ ଅର୍ଜନ କରନ୍ତି ।

**'ସେବା ସମାଜ'** ମାଧ୍ୟମରେ ଶାନ୍ତି ଦେବୀ ଗୁଣପୁର, ରାୟଗଡ଼ା, ଜବରଗୁଡ଼ା ପ୍ରଭୃତି ଅଞ୍ଚଳରେ ଅନାଥ ବାଳିକାମାନଙ୍କ ଆଶ୍ରମ, ଆଦିବାସୀ ଛାତ୍ରୀନିବାସ, ଏବଂ ଗଜପତି, ସୁନ୍ଦରଗଡ଼, ରାୟଗଡ଼ା ଜିଲ୍ଲାରେ ଆଠଟି ଶିଶୁକଲ୍ୟାଣ କେନ୍ଦ୍ର ଏବଂ ଲାଞ୍ଜିଆ ସଉରା ଝିଅମାନଙ୍କ ପାଇଁ ଏକ.ଶିକ୍ଷାକେନ୍ଦ୍ର ସ୍ଥାପନ କରିବା ସହ ଅନୁରୂପ ଅନେକ ସେବା ସଂସ୍ଥାରେ ସକ୍ରିୟ ଭାବେ ନିଜକୁ ସଂଶ୍ଲିଷ୍ଟ କରି ରଖିଛନ୍ତି । ବିନୋବାଜୀଙ୍କ ଜୀବନୀ ଆଧାରିତ ଏକ ପୁସ୍ତକ **'ଅହିଂସାର ଅନ୍ୱେଷଣ'** ହେଉଛି ତାଙ୍କ ସୃଜନଶୀଳ ଜୀବନର ସ୍ୱାକ୍ଷର ।